ଫ· ଚି ସୁ

# କୋଶଳ ଇତିହାସ ।



ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକ ।

ସଂକ୍ଷିପ୍ତ

# କୋଶଳ ଇତିହାସ ।

ପ୍ରଥମଭାଗ—ପାଟଣା ।

ଦ୍ୱିତୀୟଭାଗ—ସମ୍ବଲପୁର ।


ପାଟଣା ଷ୍ଟେଟର ଅବସର ପ୍ରାପ୍ତ ସ୍କୁଲ ଡେପୁଟି

ଇନ୍ସପେକ୍ଟର

ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକଙ୍କ [illegible] ପ୍ରଣୀତ ।



ପ୍ରଥମ ସଂସ୍କରଣ ।





ସନ ୧[illegible]୦୧ ଖ୍ରୀ: ଅ:

ମୂଲ୍ୟ ୫ [illegible] ( ଏକଟଙ୍କା ଚାରଅଣା ମାତ୍ର )



Shreeram Chandra Mullick

# ମୁଖବନ୍ଧ ।

ମୁଁ ଏହି ପାଟଣା ଷ୍ଟେଟର ସ୍କୁଲ ଡେପୁଟି ଇନ୍ସପେକ୍ଟର କାର୍ଯ୍ୟ କରୁଥିବା ସମୟରେ ଏହି ପାଟଣା ରାଜ୍ୟର ଇତିହାସ ଲେଖିବାକୁ ଭୂତପୂର୍ବ ମହାରାଜ ଶ୍ରୀମାନ୍ ପୃଥ୍ୱୀରାଜ ଦେଓ ବାହାଦୂର ଓ ତାହାଙ୍କର ଦେୱାନ୍ ଶ୍ରୀଯୁକ୍ତ ବାଳମୁକୁନ୍ଦ ବାହାଦୂରଙ୍କ ଦ୍ୱାରା ଆଦିଷ୍ଟ ଓ ସେମାନଙ୍କର ଉତ୍ସାହରେ ଉତ୍ସାହିତ ହୋଇ ସନ ୧୯୧୧ ରୁ ଏହି ଇତିହାସ ଲେଖା କାର୍ଯ୍ୟ ଆରମ୍ଭ କରି ସନ ୧୯୩୦ ଇଃ ରେ ଭଗବାନଙ୍କ ଅସୀମ କରୁଣା ବଳରୁ ସମ୍ପୂର୍ଣ୍ଣ କରି ମୁଦ୍ରଣ କାର୍ଯ୍ୟ ନିମନ୍ତେ ପାଟଣା ଷ୍ଟେଟକୁ ଅର୍ପଣ କରିଅଛି ।

ଏହି ମୂଳ ଇତିହାସଟି ପ୍ରକାଣ୍ଡ ହୋଇ ଥିବାରୁ ପାଟଣା ଓ ସମ୍ବଲପୁରର ଛାତ୍ରମାନଙ୍କ ପାଠୋପଯୋଗୀ କରିବାକୁ ତହିଁର ସଂକ୍ଷିପ୍ତ ଇତିହାସ ରଚିତ ହେଲା । କାରଣ ମୁଁ ଏହି ଷ୍ଟେଟର ଡେପୁଟି ଇନ୍ସପେକ୍ଟର କାର୍ଯ୍ୟରେ ନିଯୁକ୍ତ ଥିବା ସମୟରେ କି ପାଟଣା କି ସମ୍ବଲପୁରର ଛାତ୍ର ଓ ଛାତ୍ରୀମାନଙ୍କୁ ବିଶେଷତଃ ପାଟଣାର ଛାତ୍ର ଓ ଛାତ୍ରୀମାନଙ୍କୁ ନିଜର ପୁତ୍ରକନ୍ୟା ତୁଲ୍ୟ ବିଗ୍ଣର କରି ତାହାଙ୍କର ଭବିଷ୍ୟତ ଉନ୍ନତି ନିମନ୍ତେ ନିରନ୍ତର ମନ ପ୍ରାଣ ଢାଲି ଦେଇଥିଲି । ଆଜି ସେହି ଛାତ୍ର ଓ ଛାତ୍ରୀମାନଙ୍କ ମୃଦୁସ୍ମୃତି ଫଳକରେ ସେହି ଅତୀତ ଗୌରବଗାଥାର ରମଣୀୟ ଚିତ୍ର ଅଙ୍କନ କରିବାର ମୋର ଏକମାତ୍ର ଉଦ୍ଦେଶ୍ୟ ।

ଏହି ସମସ୍ତ ଛାତ୍ରମାନେ ବୈଦେଶିକ ଇତିହାସମାନ ପଢ଼ି ଅନେକ ବୈଦେଶିକ ବିଷୟ ଜାଣିଅଛନ୍ତି । ଶିକ୍ଷକମାନେ ମଧ୍ୟ ଗଳ୍ପଚ୍ଛଳରେ ପ୍ରସିଦ୍ଧ ନରପତି ଓ ବିଶିଷ୍ଟ ବ୍ୟକ୍ତିମାନଙ୍କ ଜୀବନୀ ଅଂଶିକଭାବରେ ଶୁଣାଇ ଅଛନ୍ତି । କିନ୍ତୁ ଦେଶୀୟ ନରପତିମାନଙ୍କ ଜୀବନ କାହାଣୀ କିମ୍ବା ସ୍ୱଦେଶୀୟ ଘଟଣା ସମ୍ବନ୍ଧରେ ସେମାନେ କିଛି ଜାଣନ୍ତି ନାହିଁ । ଏହି ହେତୁରୁ ସ୍ୱଦେଶୀୟ ବିବରଣ ପ୍ରତି ସେମାନଙ୍କ ରୁଚି ଥାଉ ବା ନ ଥାଉ ଉପାଦାନ ଅଭାବରେ ସେମାନେ ଏଥିପ୍ରତି ମୂକ ଅଟନ୍ତି । ବାଳକମାନଙ୍କ ପକ୍ଷରେ ଦେଶୀୟ ଘଟଣା ଜାଣି, ଶୁଣି ଓ ଶିକ୍ଷାକର ନିଜକୁ ଚିହ୍ନି ପାରିବା ଏକାନ୍ତ ଅବଶ୍ୟକ । ଛାତ୍ରର ଭାବିବା ଉଚିତ ଯେ ସେ କିଏ ? କେଉଁ ବଂଶରୁ ଜାତ ? ତାହାର ପୂର୍ବପୁରୁଷମାନେ କଣ କରିଥିଲେ ? ସେ ନିଜେ ବର୍ତ୍ତମାନ କଣ କରୁଅଛି ? ଏହି ପାଠଶାଳା ରାଜ୍ୟରେ ତାହାର ଅସ୍ତିତ୍ୱ କାହିଁକି ଅଛି ? ଇତ୍ୟାଦି ଯଦି ସେ ନିଜେ୨ ଏ ସମସ୍ତ ବିଷୟରେ ସମାଲୋଚନା କରି ନିଜକୁ ନିର୍ମାଣ ନ କରେ ତେବେ ତାହାର ଭବିଷ୍ୟତ୍ ଉନ୍ନତି କାହିଁ ! ଶିକ୍ଷାର ମୂଲ୍ୟ ବା କଣ ? କେବଳ ଗୁଙ୍କର ଉଦ୍ଦେଶ୍ୟରେ ଶିକ୍ଷାର ଅବଶ୍ୟକ ହୁଏ ନାହିଁ । ଶିକ୍ଷିତ ହେଲା ମାତ୍ରେ ଦେଶ ବିଦେଶର ଖବର ଜାଣି ବିବିଧ ବିଷୟରେ ସମାଲୋଚନା କରି ତଦନୁଯାୟୀ ନିଜକୁ ଗଠନ କରି ସତ୍ପଥରେ ପ୍ରବର୍ତ୍ତାଇବାର ତଥା ଦେଶର ମଙ୍ଗଳ କାର୍ଯ୍ୟରେ ନିଯୁକ୍ତ କରିବାର ଛାତ୍ରର ଏକମାତ୍ର କର୍ତ୍ତବ୍ୟ ।

ଜର୍ମାନ୍ ବୋଲ, ଇଂଲଣ୍ଡ ବୋଲ, ଫ୍ରାନ୍ସ ବୋଲ, ଅମେରିକା ବୋଲ, ଜାପାନ ବୋଲ ସମସ୍ତ ଦେଶର ଛାତ୍ରମାନେ ପ୍ରାରମ୍ଭରୁ ଦେଶୀୟ ଇତିହାସ ପଢ଼ି ଶିକ୍ଷାର ଅନେକ ବିସ୍ତାର କରି

ସମସ୍ତ ଜଗତର ଶିକ୍ଷିତ ସମାଜରେ ବରେଣ୍ୟ ଅଟନ୍ତି । ପ୍ରକୃତରେ କହିବାକୁ ଗଲେ ଛାତ୍ର ମାନଙ୍କ ଦେଶର ଭବିଷ୍ୟତ୍ ଗୌରବର ଖଣି ଓ ଏକମାତ୍ର ଜନନୀର ଆଶାସ୍ଥଳ । କାରଣ ସେମାନଙ୍କ ହସ୍ତରେ ଦେଶର ମଙ୍ଗଳାମଙ୍ଗଳ ଉନ୍ନତ ବା ଅବନତି ସମ୍ପୂର୍ଣ୍ଣ ଭାବରେ ନିର୍ଭର କରେ । ସେମାନେ କେବଳ ଦେଶର ଭବିଷ୍ୟତ୍ ଅନ୍ଧକାରର ଏକମାତ୍ର ଆଲୋକ ଶିଖା ।

ହେ ପାଟଣା ଓ ସମ୍ବଲପୁର ଛାତ୍ର ବୃନ୍ଦ ! ତୁମ୍ଭର ପୂର୍ବ ପୁରୁଷମାନେ ଏହି ପାଟଣା ଓ ସମ୍ବଲପୁର ରାଜ୍ୟରେ ଯେଉଁ ସବୁ କାର୍ଯ୍ୟ କଳାପ କରି ଯାଇ ଅଛନ୍ତି ସେ ସମ୍ବନ୍ଧରେ ତୁମ୍ଭେ-ମାନେ କେବେ କିଛି ଆଲୋଚନା କରି ଅଛ କି ? ତୁମ୍ଭେ ମାନେ ଆଜି ତୁମ୍ଭମାନଙ୍କର ପୂର୍ବପୁରୁଷମାନଙ୍କର କୀର୍ତ୍ତି ବା ଏହି ପାଟଣା ରାଜ୍ୟର ଓ ସମ୍ବଲପୁର ରାଜ୍ୟର ଗୌରବ ଗରିମା ଆଦି ଶୁଣିଲେ ମାନେ ଆଶ୍ଚର୍ଯ୍ୟ ହେବ । ତୁମ୍ଭମାନଙ୍କୁ ଅସମ୍ଭବ ବୋଲି ଜଣାଯିବ । କିନ୍ତୁ ଏହା ଯେ ଅକ୍ଷରେ୨ ସତ୍ୟ ଏଥିରେ ବିନ୍ଦୁମାତ୍ର ସନ୍ଦେହ ନାହିଁ ।

ପାଟଣା ରାଜ୍ୟ ଅତି ପ୍ରାଚୀନ ରାଜ୍ୟ ଅଟେ । ଏହା ପୂର୍ବ କାଳରେ ଶ୍ରେଷ୍ଠ ସ୍ଥାନ ଅଧିକାର କରି ଥିଲା । ରାଜ ନୀତି, ଧର୍ମ ନୀତି, ସମାଜ ନୀତି, ଶାସନ କୌଶଳ, ରଣ କୌଶଳ ଆଦି ଯେ କୌଣସି ବିଷୟରେ ହେଉ ଅନ୍ୟ ଗଡଜାତ ଏହାର ସଙ୍ଗରେ ସମକକ୍ଷ ହେବ ନାହିଁ । ପୂର୍ବକାଳରେ ଏହି ପାଟଣା ରାଜ୍ୟରେ କେତେ ଧର୍ମବୀର କେତେ ଦାନବୀର, କେତେ କର୍ମ-ବୀର ଜନ୍ମଗ୍ରହଣ କରି ପାଟଣା ରାଜ୍ୟକୁ ଉତ୍କଳ ମଣ୍ଡଳରେ ତଥା ଭାରତବର୍ଷ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳ ମଣି ତୁଲ୍ୟ କରିଥିଲେ । ଏକ ସମୟରେ ଏହି ପାଟଣାର ନରପତିମାନେ

ବାହୁବଳରେ ଓ କୌଶଳ ବଳରେ ଅକ୍ରମାଂଶ ନୃପାଦ୍ର ସମ୍ରାଟ୍ ସିଂହାସନ ଅଧିକାର କରି ସ୍ମରଣୀୟ ହୋଇଅଛନ୍ତି । କିନ୍ତୁ ଦୁଃଖର ବିଷୟ ଏହା ଅଟେ ଯେ ସେମାନଙ୍କ କୀର୍ତ୍ତିମାଳା କାଳର କରାଳ କବଳରେ କବଳିତ । ହାୟ ! ସେମାନଙ୍କର ନାମ ପର୍ଯ୍ୟନ୍ତ ଅମ୍ଭେମାନେ ଏବେ ଜାଣୁନାହୁଁ । ମୁଁ ମଧ୍ୟ ସେ ସମସ୍ତ ନରପତିମାନଙ୍କ ବିଶଦ୍ ବୃତ୍ତାନ୍ତ ତୁମ୍ଭମାନଙ୍କ ହସ୍ତରେ ଅର୍ପଣ କରିପାରିବି ନାହିଁ । ଅସ୍ମମାନଙ୍କର ଉଦାସୀନ୍ତନ ମହାରାଜ ରାଜେନ୍ଦ୍ର ନାରାୟଣଦେବଙ୍କ କୃପା ଦୃଷ୍ଟି ହେଲେ ସେହି କୃତତ୍ତ୍ୱକୌଶଳ ବା ପାଠଶାଳା ଇତିହାସ ଯାହାଙ୍କ ସ୍ନେହରେ ସମର୍ପିତ ହୋଇଅଛି, ତାହାର ମୁଦ୍ରଣ କାର୍ଯ୍ୟ ହୋଇ ତୁମ୍ଭମାନଙ୍କର ହସ୍ତଗତ ହେଲେ ପଢିପାରିବ ଓ ଜାଣିପାରିବ । ତେବେଯାଇ ତୁମ୍ଭମାନଙ୍କର କୋମଳ ସ୍ମୃତି ପଟରେ ଅତୀତ ଗୌରବର ମୂର୍ତ୍ତିମତୀ ଛାୟା ପ୍ରତିବିମ୍ବିତ ହେବ । ଯାହାହେଉ ତହିଁରୁ କେତେକ ବିଷୟ ନେଇ ଏହି ସଂକ୍ଷିପ୍ତ ଇତିହାସ ପ୍ରଣୟନ କରି ତୁମ୍ଭମାନଙ୍କର କଥିତ ସ୍ୱଦେଶୀୟ ବିବରଣ ଅବଗତ ନିମନ୍ତେ ତୁମ୍ଭମାନଙ୍କ ହସ୍ତରେ ଅର୍ପଣ କଲି । ତୁମ୍ଭେମାନେ ଏହା ପଢି କଥଞ୍ଚିତ୍ ଶିକ୍ଷାଲାଭ କଲେ ପରିଶ୍ରମ ସାର୍ଥକ ଜ୍ଞାନ କରିବି । ଅହୁରି ମଧ୍ୟ ତୁମ୍ଭମାନଙ୍କର ଜ୍ଞାନର ବିକାଶ ନିମନ୍ତେ ଏହି ସଂକ୍ଷିପ୍ତ ଇତିହାସ ତୁମ୍ଭମାନଙ୍କ ପକ୍ଷରେ ଉପଯୋଗୀ ହୋଇପାରେ ।

ବର୍ତ୍ତମାନ କେବଳ ଏହି ସଂକ୍ଷିପ୍ତ କୋଶଳ ଇତିହାସର ପ୍ରଥମ ଓ ଦ୍ୱିତୀୟ ଭାଗ ଅର୍ପଣ କଲି । ତୃତୀୟ ଓ ଚତୁର୍ଥ ଭାଗ ଏ ପର୍ଯ୍ୟନ୍ତ ସଂଗ୍ରହ କରିପାରି ନାହିଁ । ସଂଗୃହୀତ ହେଲାରୁ ତୁମ୍ଭମାନଙ୍କ ହସ୍ତରେ ଅର୍ପଣ କରିବି । କରୁଣାମୟ ଭଗବାନଙ୍କ

ଚରଣାରବିନ୍ଦେ ମୋର ଏକାନ୍ତ ଯାଚ୍ଞା ପ୍ରାର୍ଥନା ଯେ ତୁମ୍ଭ-ମାନଙ୍କର କୁତୂହଳ ଶୀଘ୍ର ଦୂରୀଭୂତ ହେବାକୁ ମୋତେ ଦୟାମୟ ସାହାଯ୍ୟ କରନ୍ତୁ ।

ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକ
ବଲାଙ୍ଗିର

ପରବର୍ତ୍ତୀ ଅନୁସନ୍ଧାନ ଦ୍ୱାରା ଅଦ୍ଭୁତ କେତେକ ଐତିହାସିକ
ଘଟନାର ସମ୍ବାଦ ମିଳିଅଛି ଯାହାକି ମହାଭାରତର
ପୂର୍ବ ଯୁଗର ବିଷୟ ଅଟେ । ଏହା ଏହି
ସଂସ୍କରଣରେ ଦିଆଯାଇ ପାରିଲା
ନାହିଁ । ପରବର୍ତ୍ତୀ ସଂସ୍କରଣରେ
ଦିଆଯିବାର ଅଭିଳାଷ
ରହିଲା ।

ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକ ।

# ସୂଚନା ।



ଆମ୍ଭେମାନେ ଶୁଣିଅଛୁଁ ଯେ ଏହି ଭାରତ ବର୍ଷ ମଧ୍ୟରେ ଦକ୍ଷିଣ କୋଶଳ ନାମରେ ଗୋଟିଏ ରାଜ୍ୟଥିଲା । ତହିଁରେ ଜଣେ ରାଜା ଥିଲେ । ସେହି ରାଜ୍ୟ ଅଯୋଧ୍ୟାର ସୂର୍ଯ୍ୟବଂଶୀୟ ରାଜାଙ୍କର ସାମନ୍ତ ରାଜ୍ୟଥିବାରୁ ଅଯୋଧ୍ୟା ରାଜା ଶ୍ରୀରାମଚନ୍ଦ୍ର ତାଙ୍କର ଜ୍ୟେଷ୍ଠପୁତ୍ର କୁଶଙ୍କୁ ତହିଁର ଶାସନକର୍ତ୍ତା କରି-ଦେଇଥିଲେ । ତେବେ ସେହି ଦକ୍ଷିଣ କୋଶଳ ରାଜ୍ୟ କେଉଁ-ଠାରେ ? ଏହା ସ୍ଥିର କରିବାକୁ ଆଧୁନିକ ପ୍ରତ୍ନ-ତତ୍ତ୍ୱ-ବିତ୍ ପଣ୍ଡିତମାନେ ବହୁ ଚେଷ୍ଟାକରି ସୁଦ୍ଧା ଶେଷ ସିଦ୍ଧାନ୍ତରେ ଉପନୀତ ହୋଇ ପାରି ନାହାନ୍ତି । ସମସ୍ତେ କେବଳ ଭିନ୍ନ ୨ ସ୍ଥାନମାନଙ୍କୁ ଏହା ଦକ୍ଷିଣ କୋଶଳ ରାଜ୍ୟ ବୋଲି ସନ୍ଦେହ କରି ସ୍ଥିରକରି ଅଛନ୍ତି । ପ୍ରକୃତ ଦକ୍ଷିଣ କୋଶଳ ରାଜ୍ୟ କାହିଁ ତାହା କେହି ଜାଣନ୍ତି ନାହିଁ । ଐତିହାସିକ ମାନେ କୌଣସି ଗୋଟିଏ ସୂଚନା ନ ପାଇଲେ ତହିଁର ପ୍ରାଚୀନ ତଥ୍ୟ ଆବିଷ୍କାର କରିବାକୁ ସମର୍ଥ ହୋଇ ପାରନ୍ତି ନାହିଁ । ସେମାନଙ୍କର ପ୍ରାଚୀନ ତଥ୍ୟ ଆବିଷ୍କାରର ପ୍ରଧାନ ଅବ-ଲମ୍ବନ ୬ଟି ; ୧-କିମ୍ବଦନ୍ତୀ, ୨-ତମ୍ବାପଟା, ୩-ପ୍ରାଚୀନ ଲେଖକମାନଙ୍କ ମତାମତ, ୪-ପ୍ରାଚୀନ ସଙ୍କେତ, ୫-ଅନୁ-ମାନ ଓ ୬-ଅନୁସନ୍ଧାନ । ଏହି ୬ଟି ସୂତ୍ର ଅବଲମ୍ବନ ନକଲେ ଯେ କୌଣସି ଐତିହାସିକ ଏହା ଅମୁକ ପ୍ରାଚୀନ ରାଜ୍ୟବୋଲି ପ୍ରମାଣ କରି ନ ପାରେ ବା ତହିଁର ଇତିହାସ ସଂଗ୍ରହ କରି ନପାରେ ।

ମୁଁ ସେହି ଛଅଟି ସୂତ୍ରର ଅବଲମ୍ବନରେ ସେହି ଦକ୍ଷିଣ କୋଶଳ ରାଜ୍ୟ ଯେ ଏହି ପାଟଣାରାଜ୍ୟ ଅଟେ ଏହା ସ୍ଥିରକରି ଏହି ରାଜ୍ୟର ଇତିହାସ ଲେଖିବାରେ ଅଗ୍ରସର ହୋଇଅଛି । ଏଥିର ବିସ୍ତାରିତ ପ୍ରମାଣ ମୋର ବୃହତ୍ ପାଟଣା ଇତିହାସରେ ପରିଷ୍କାର ଭାବରେ ଆଲୋଚିତ ହୋଇଅଛି । ସେହି ବୃହତ୍ ପାଟଣା ଇତିହାସର ପାଠକମାନେ ତାହାର ସତ୍ୟାସତ୍ୟ ସମ୍ବନ୍ଧରେ ମନ୍ତବ୍ୟ ପ୍ରକାଶ କରିପାରିବେ । ତେବେ ତହିଁର କିଛିମାତ୍ର ଆଲୋକ ଏଥିରେ ଦିଆଗଲା ।

ଏହି ରାଜ୍ୟ ମଧ୍ୟରେ କଅଁଶିଲ୍ ନାମରେ ଗୋଟିଏ ଗ୍ରାମ ଅଛି, କୋଶଳେଶ୍ୱର ମହାଦେବ ମନ୍ଦିର ଅଛି, କୋଶଳିଆ ମାଳି ନାମରେ ଗୋଟିଏ ମାଳିଜାତି ଅଛନ୍ତି, ଏହାର ନିକଟ-ବର୍ତ୍ତୀ କଳିଙ୍ଗ ରାଜ୍ୟରୁ ଲୋକେ ଆସି କଳିଙ୍ଗା ଜାତି ନାମରେ ଅଭିହିତ ହୋଇ ବାସ କରୁଅଛନ୍ତି । ତୋସରା ନାମରେ ଗୋଟିଏ ଗ୍ରାମଅଛି । ଏହା ତୋସଳାର ଅପଭ୍ରଂଶ ହୋଇ-ଅଛି । ତୋସଳା ଶବ୍ଦଟି ତୋସଳ ଥିଲା ତାହା କାଳକ୍ରମେ ତୋସାଲି ତୋସଳା ଓ ଶେଷରେ ତୋସରା ହୋଇଅଛି । କଅଁଶିଲ ଓ ତୋସରା ଗ୍ରାମ ଦ୍ୱୟ ଦେଖିଲେମାନେ ତହିଁର ପ୍ରାକୃତିକ ଦୃଶ୍ୟରୁ ଜଣାଯିବ ଯେ ଏହା ନିଶ୍ଚୟ ପୂର୍ବର କୋଶଳ ଓ ତୋସଳ ରାଜ୍ୟ ଦ୍ୱୟର ରାଜଧାନୀ ଅଟେ । ପ୍ରତ୍ନ-ତତ୍ତ୍ୱ-ବିତ୍ ମାନେ ଏହି ଦୁଇ ଗ୍ରାମ ଦେଖିଲେମାନେ ନିଶ୍ଚୟ ସେମାନେ ଏସମ୍ବନ୍ଧରେ ସ୍ୱୀକାର କରି ପାରନ୍ତି ।

ଚୀନ ପରିବ୍ରାଜକ ହୁଏନସାଂ ତାଙ୍କର ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କରିଅଛନ୍ତି ଯେ-କୋଶଳରାଜ୍ୟ ଚଳିତାକ୍ର ଅର୍ଥାତ୍ ଚନ୍ଦ୍ରଭଗା ( କୋଣାର୍କ ) ଠାରୁ ୩୧୭ ମାଇଲ୍ ଦୂରରେ ଅଛି ଓ କୃଷ୍ଣାନଦୀ ତୀରସ୍ଥିତ ଧରଣୀ କୋଟା ବା

ଧାନକାକାଡା ଠାରୁ ୨୦୦ ମାଇଲ୍ ଦୂରରେ ଅଛି ଏହି କଅଁଶିଲ୍ ଗ୍ରାମରୁ ସେହି ହିସାବ କେତେକ ଠିକଲାଗେ । ଅତଏବ ଏହି କଅଁଶିଲ୍ ଯେ କୋଶଳ ରାଜ୍ୟର ରାଜଧାନୀ ଓ ଏହି ପାଟଣା ରାଜ୍ୟ ଯେ କୋଶଳରାଜ୍ୟ ଅଟେ ଏଥିରେ ସନ୍ଦେହ ନାହିଁ । ଏହି କଅଁଶିଲ ସମଗ୍ର କୋଶଳ ରାଜ୍ୟର ରାଜଧାନୀ ଥିଲା । ନାମ ଏହାର କୋଶଳ ଥିଲା ; ପୂର୍ବରେ ଏହି କୋଶଳ ନଗରର ପରିଧି ୭ମାଇଲ୍ ଥିଲା ଓ ବହୁଲ ଜାତିର ବହୁ ସଂଖ୍ୟକ ଲୋକ ଏଥିରେ ବାସ କରୁଥିବାରୁ ଏହା ଅତ୍ୟନ୍ତ ଜନାକୀର୍ଣ୍ଣ ହୋଇଥିଲା । ବିଶେଷତଃ ଅନେକ ବଂଶର ଅନେକ ନରପତିମାନେ ବଂଶ ପରମ୍ପରା କ୍ରମେ ଏହି କୋଶଳ ସିଂହାସନରେ ଅଧିରୂଢ଼ ହୋଇ ଏହି କୋଶଳ ଦେଶ ଶାସନ କରିଥିବାରୁ ଏଥିର ଶୋଭା ବହୁ ଗୁଣରେ ବୃଦ୍ଧିପ୍ରାପ୍ତ ହୋଇଥିଲା । ବିଭିନ୍ନ କାଳୀନ ଧର୍ମାବଲମ୍ବୀ ନରପତିମାନେ ସ୍ୱଧର୍ମ ଅନୁଯାୟୀ ମନ୍ଦିରମାନ ନିର୍ମାଣ କରିଥିଲେ ଓ ନଗର-ବାସୀଙ୍କ ଉପକାର ପାଇଁ ଅନେକ ଗୁଡ଼ିଏ ପୁଷ୍କରିଣୀ ଖୋଳାଇ ଥିଲେ ସେହି ନରପତିମାନଙ୍କ ନିର୍ମିତ ଶିବ ମନ୍ଦିର, ବୌଦ୍ଧ ମନ୍ଦିର ଓ ଜଗନ୍ନାଥ ମନ୍ଦିରମାନଙ୍କ ଭଗ୍ନାବଶେଷମାନ ପ୍ରାୟ ୧୦୦ ଗୋଟା ହେବ ଏ ପର୍ଯ୍ୟନ୍ତ ରହିଅଛି । କେତେ ମନ୍ଦିର ବା ଏପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଅଛି । ଏହି କଅଁଶିଲ୍ ନାମକ ୭ ମାଇଲ୍ ପରିଧିର ସମତଳ ମୈଦାନ ଉପରେ ଏପର୍ଯ୍ୟନ୍ତ ୩୨ ଗୋଟି ପୁଷ୍କରିଣୀ ଅଛି ।

ସେହି ପ୍ରକାଣ୍ଡ ଜନାକୀର୍ଣ୍ଣ ନଗରୀ ଅବା ଅଉ ନାହିଁ । କେବଳ ତାହାର ପରିଚୟସୂଚକ ଛୋଟ ୨ ପାଞ୍ଚଖଣ୍ଡ ଗ୍ରାମ ଏପର୍ଯ୍ୟନ୍ତ ରହିଅଛି । ଯଥା, ରାଣୀପୁର, ଝରିଆଲ କଅଁଶିଲ୍, ବାହାବଲ୍, ବାଳ ଖମାର, ଏହି ପାଞ୍ଚଖଣ୍ଡ ଗ୍ରାମ

ପୂର୍ବ କୋଶଳ ନଗରର ପାଞ୍ଚଟି ପଡ଼ା ଅର୍ଥାତ୍ ସାହି ଥିଲା । ରାଣୀପୁର ବା ରାଣୀହଂସ ପୁର ଏହିଠାରେ ମହାରାଣୀଙ୍କ ମହଲ ଥିଲା । ହୀରଅଳ ବା ହୀର ଅଳୟ ମହାରାଜାଙ୍କ ସ୍ନାନୋପଯୋଗୀ ହୀରସମୂହ ଏଠାରେ ଥିଲା । କଉଁଶିଳ ବା କୋଶଳ ଏଠାରେ ମହାରାଜାଙ୍କ ରାଜଧାନୀ ଓ କଚେରି ଥିଲା । ବାହା ବଳ ବା ବାହ୍ୟବଳ ( Reserved Force ) ଏଠାରେ ମହାରାଜାଙ୍କ ରକ୍ଷିତ ( Reserved ) ସୈନ୍ୟ ମାନେ ରହୁଥିଲେ; ବାଲ୍ ଖମାର ( ଧାନଘର) ମହାରାଜାଙ୍କ ଧାନ ସମ୍ପତ୍ତି ସବୁ ଏହି ସ୍ଥାନରେ ରକ୍ଷିତ ହେଉଥିଲା ।

ହୁଏନ୍‌ସାଂ ମଧ୍ୟ କହି ଅଛନ୍ତି ଯେ ଏହି କୋଶଳ ନଗରର ପରିଧି ୭ମାଇଲ୍ ଅଟେ । ଅତଏବ ଯେଉଁ ନଗରର ପରିଧି ୭ମାଇଲ୍ ବ୍ୟାପି ଥିଲା ତାହା ଯେ କିପରି ଗୋଟିଏ ପ୍ରକାଣ୍ଡ ସହର ହୋଇଥିବ ଓ ତହିଁର ଶାସନକର୍ତ୍ତାମାନେ କିପରି କ୍ଷମତାଶାଳୀ ଓ ଧନଶାଳୀ ହୋଇଥିବେ ଅନୁଭବୀ ମାତ୍ରେ ଜାଣି ପାରିବେ । ଅତଏବ ସେପରି ଜଣେ କ୍ଷମତାଶାଳୀ ରାଜାଙ୍କର ରାଣୀହଂସ ପୁର, ହୀର ଅଳୟ, ବିଶ୍ରାଳୟ, ଧନ ଭଣ୍ଡାର, ସୈନ୍ୟ ଅଳୟ ଯେ କିପରି ପୃଥକ୍ ୨ ହୋଇନଥିବ ଏହା ସହଜରେ ଅନୁମେୟ । ଏହି ପୃଥକ୍ ୨ କାର୍ଯ୍ୟ ନିମନ୍ତେ ସେହି ପ୍ରକାଣ୍ଡ ନଗରର ପୃଥକ୍ ୨ ସ୍ଥାନ ପରିଚିତ ହେଉ ଥିବାରୁ କାର୍ଯ୍ୟ ଅନୁସାରେ ସ୍ଥାନ ମାନଙ୍କର ନାମ ହୋଇ ଥିଲା । ସେହି ପ୍ରକାଣ୍ଡ ନଗର କାଳର କରାଳ କବଳରେ କବଳିତ ହେବା ଦିନଠାରୁ ନଗରର ପଡ଼ାମାନଙ୍କର ମଧ୍ୟ କେବଳ ନାମ ମାତ୍ର ରହିଲା । ସେହି ସମୟରେ ଯେଉଁ ଜଣ କେତେ ଲେଖାଏଁ ଲୋକ ପ୍ରତ୍ୟେକ ପଡ଼ାରେ ରହିଥିଲେ କ୍ରମେ ୨ ସେହି ଲୋକମାନେ ସେହି ପଡ଼ାମାନଙ୍କୁ ଗୋଟିଏ ୨

ଗ୍ରୋଟ୨ ଗ୍ରାମ ରୂପରେ ପରିଣତ କରି ସେହି ପୂର୍ବ ପରିଚିତ ପଡ଼ାର ନାମରେ ପରିଚିତ କରିଥିଲେ, ଏହି ନାମ ମାନଙ୍କରେ ଏହି ଗ୍ରୋଟ୨ ଗ୍ରାମମାନ ପରିଣତ ହୋଇ ଏ ପର୍ଯ୍ୟନ୍ତ ରହି ପୂର୍ବ କୋଶଳ ନଗରର ଅସ୍ତିତ୍ୱ ଦିଖାଇ ଦେଉଅଛି ।

କୋଶଳ ରାଜ୍ୟ ପ୍ରାଚୀନ କାଳରେ ଅତି ପ୍ରକାଣ୍ଡ ରାଜ୍ୟ ଥିଲା ଓ ତାହା ଦୁଇ ଭାଗରେ ବିଭକ୍ତ ଥିଲା । ପ୍ରଥମ ଭାଗ ଉତ୍ତର ବା ଅଯୋଧ୍ୟା କୋଶଳ । ଦ୍ୱିତୀୟ ଭାଗ ଦକ୍ଷିଣ ବା କାଶି କୋଶଳ ବା ଜଙ୍ଗଲ ସଙ୍ଗର କୋଶଳ ଅଟେ । ପାଟଣା ସୋନପୁର ସମ୍ବଲପୁର ଖରିଅଡ଼ ବାମଣ୍ଡା ଆଦି ମିଶ୍ରିତ ଜନପଦର ନାମ ଜଙ୍ଗଲ ସଙ୍ଗର କୋଶଳ ରାଜ୍ୟ ଅଟେ । ଅତଏବ ଅସ୍ମମାନଙ୍କର ପାଟଣା ରାଜ୍ୟ ଏହି କୋଶଳ ରାଜ୍ୟ ଅଟେ ଓ ଏହାର ରାଜଧାନୀ ପୂର୍ବ କଥିତ କଅଁଶିଳ ଆଦି ପାଞ୍ଚଖଣ୍ଡ ଗ୍ରାମ ଅଟେ ।

ଏହି ସ୍ଥାନର ସବିଶେଷ ବିବରଣ ସମ୍ବନ୍ଧରେ ମୁଁ ଧୀରେ୨ ବର୍ଣ୍ଣନା କରିବି; ଯାହାକି କମେ୨ ଜଣା ପଡ଼ିବ ।

ଶ୍ରୀ ଶ୍ରୀରାମଚନ୍ଦ୍ର ମଲ୍ଲିକ ।

# ସୂଚୀପତ୍ର ।



ବିଷୟ ପୃଷ୍ଠା

## ପ୍ରଥମ ପରିଚ୍ଛେଦ ।

ଭୌଗଳିକ ବିବରଣ ... ୧

## ଦ୍ୱିତୀୟ ପରିଚ୍ଛେଦ ।

ବୈବସ୍ୱତ ମନୁ ... ୪
ଦେଶ ଗଠନ ଓ ୧ମ ଐର ବଂଶ ବା ମେଘବାହନ ବଂଶ ... ... ୫
ଚନ୍ଦ୍ର ବଂଶୀୟ ବଳି ରାଜା ୭
ସୂର୍ଯ୍ୟବଂଶୀୟ ରାଜାମାନେ ୮
ସୂର୍ଯ୍ୟବଂଶୀୟ କୁଶ ... ୧୧
୨ୟ ଐଳ ବା ଐର ବଂଶୀୟ ଖେତୁଭଦ୍ର ୧୨
ଶ୍ରୁତାୟୁ ଐର ... ... ୧୪
ଶ୍ରୁତାୟୁଙ୍କର ବଂଶଧରମାନେ ... ... ୧୪
ଦେବରକ୍ଷିତ ରାଜା ଓ ତାହାଙ୍କର ବଂଶଧରମାନେ ୧୫
ଗୁହ ବଂଶୀୟ ରାଜା ଓ ତାଙ୍କ ବଂଶଧରମାନେ ... ୧୫
ଶ୍ରାବସ୍ତିର ସୂର୍ଯ୍ୟବଂଶୀୟ ବ୍ରହ୍ମଦତ୍ତ ବା ବ୍ରହ୍ମଦନ୍ତ ଓ ତାଙ୍କର ବଂଶଧରମାନେ ... ... ୧୬
ମଗଧର ଶିଶୁନାଗବଂଶୀୟ ଅଜାତଶତ୍ରୁ ଓ ତାଙ୍କର ବଂଶଧରମାନେ ... ... ୧୭
ମଗଧର ନନ୍ଦ ଓ ତାଙ୍କର ବଂଶଧରମାନେ ... ୧୮
ଦ୍ୱିତୀୟ ଐରବଂଶୀୟ ଜଣେ ଐରରାଜା ୧୯
ମଗଧର ମୌର୍ଯ୍ୟବଂଶୀୟ ଅଶୋକ ... ୨୦
ଶୋଭନ ଦେବ ... ... ୨୩

| ବିଷୟ | | | ପୃଷ୍ଠା |
|---|---|---|---|
| କସ୍ୟ ଐର ବଂଶର ଚୈତ୍ର ଐର | | | ୨୩ |
| ଚୈତ୍ର ଐରଙ୍କ ପୁତ୍ର | | | ୨୪ |
| ଖାରବେଳ ଐର | | | ୨୫ |
| ସାମନ୍ତ ରାଜା ଭୀମ ଦେବ | ... | | ୨୮ |
| ଭୁଦେପଣିର ଅଦ ୫ ଜଣ ଐର ରାଜା | | | ୨୯ |
| ସାମନ୍ତରାଜା ବାବନ ଦେବ | ... | | ୩୦ |
| ସାମନ୍ତ ରାଜା ସୁଲୋଚନେଷ୍ଟ ଦେବ | | | ୩୧ |
| ପ୍ରତାପ ସେନ | ... | | ୩୨ |
| ଶତ୍ରୁ ଘାତୀ | ... | ... | ୩୨ |
| ଦାନ୍ତାର ବା କଣ୍ଡର ଜାତୀୟ ଜଣେ ସାମନ୍ତ ରାଜା | | | ୩୩ |
| ଐର ବଂଶୀୟ ଶ୍ରେଷ୍ଠ ରାଜା ସୁରଥ | | | ୩୪ |
| **ତୃତୀୟ ପରିଚ୍ଛେଦ ।** | | | |
| ସୂର୍ଯ୍ୟବଂଶୀୟ ମାଧବଚନ୍ଦ୍ର ଦେବ ବା ଚନ୍ଦ୍ରଦେବ | | | ୩୫ |
| ବିକ୍ରମାଦିତ୍ୟ ଦେବ | ... | ... | ୩୯ |
| ଚୋଡଙ୍ଗ ଦେବ | ... | ... | ୪୦ |
| ଶାଳାଦିତ୍ୟ | ... | ... | ୪୧ |
| ନୃସିଂହ ଦେବ ଭୋଳ | ... | ... | ୪୧ |
| ଶଙ୍କର ଦେବ ,, | ... | ... | ୪୨ |
| ଗୌତମ ଦେବ ,, | ... | ... | ୪୨ |
| ଇଷ୍ଟ ଦେବ ,, | ... | ... | ୪୨ |
| ସେବକ ଦେବ ,, | ... | ... | ୪୩ |
| ବଜ୍ରନାଭ ଦେବ ,, | ... | ... | ୪୩ |
| ମାନକୃଷ୍ଣ ଦେବ ,, | ... | ... | ୪୩ |
| ଜର୍ମଜିତ୍ ଦେବ ,, | ... | ... | ୪୪ |

ବିଷୟ ପୃଷ୍ଠା

ହାଟକେଶ୍ୱର ଦେବ ଭଞ୍ଜ ... ... ୪୪
ଶାବଭୁବନ ଦେବ ,, ... ... ୪୪
ନିର୍ମଳ ଦେବ ,, ... ... ୪୪
ମହେନ୍ଦ୍ର ଦେବ ,, ... ୪୪

## ଚତୁର୍ଥ ପରିଚ୍ଛେଦ ।

ମଗଧ ସମ୍ରାଟ ସମୁଦ୍ର ଗୁପ୍ତ ... ... ୪୫
ମଗଧ ସମ୍ରାଟ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ... ୪୬
ମଗଧ ସମ୍ରାଟ କୁମାର ଗୁପ୍ତ ... ... ୪୬
ମଗଧ ସମ୍ରାଟ ସ୍କନ୍ଦଗୁପ୍ତ ବିକ୍ରମାଦିତ୍ୟ ୪୬
ଶବର ରାଜା ... ... ୪୭
ରାଜା ଉଦାୟନ କେଶରୀ ବା କୋଶଳଗୁପ୍ତ ... ୪୭
ଇନ୍ଦ୍ରବଳ କେଶରୀ ବା କୋଶଳ ଗୁପ୍ତ ୪୮
ମାଳବରାଜା ଯଶୋଧର୍ମଦେବ ବିକ୍ରମାଦିତ୍ୟ ... ୪୯
ଭବଦେବ ରଣକେଶରୀ ବା କୋଶଳ ଗୁପ୍ତ ... ୪୯
ବାଳାକ ବା ବାଳାତକ ରାଜା ... ... ୪୯
ନାନ୍ନ ଦେବ କେଶରୀ ବା କୋଶଳ ଗୁପ୍ତ ... ୫୦
ଈଶାନ ଦେବ ,, ... ୫୦
ସଦାଶିବ ତିବରଦେବ,, ... ୫୧
ଚନ୍ଦ୍ରଗୁପ୍ତ ,, ୫୧
ହର୍ଷଗୁପ୍ତ ,, ୫୧
ବାଲାର୍ଜୁନ ଶିବଗୁପ୍ତ ,, ... ... ୫୨
କନୋଜ ଓ ମାଳବ ରାଜା ହର୍ଷବର୍ଦ୍ଧନ ବା ଶିଳାଦିତ୍ୟ ୫୨
ଶଶ ବାହନ ... ... ୫୩
ଚାଳୁକ୍ୟ ରାଜା ୨ୟ ପୁଲକେଶୀ ... ... ୫୪
ରଣକେଶରୀ ... ... ୫୫

| ବିଷୟ | ପୃଷ୍ଠା |
|---|---|
| ମହାଭବ ଗୁପ୍ତ ... ... | ୫୫ |
| ଶରଭ ବଂଶୀୟ ରାଜା ଓ ତାଙ୍କର ବଂଶଧରମାନେ | ୫୬ |
| ଶିବ ଗୁପ୍ତ ... ... | ୫୬ |
| ଜନ୍ମେଜୟ ମହାଭବଗୁପ୍ତ ... ... | ୫୭ |
| ଯଯାତି କେଶରୀ ବା ମହାଶିବ ଗୁପ୍ତ ... | ୬୦ |
| ଧୀର୍ଘରାବ ଗୁପ୍ତ ... ... | ୬୧ |
| କାମରୂପ ବା ଅସାମର ରାଜା ହର୍ଷଦେବ ... | ୬୨ |
| ସୋମେଶ୍ୱର ଦେବ ବା କୋଶଳ ଗୁପ୍ତ ... | ୬୩ |
| ମାନ୍ୟ ଖେତର ଧ୍ରୁବଧାର ବର୍ଷ ... | ୬୪ |
| ଅପରବ ଗୁପ୍ତ ... ... | ୬୪ |
| ବିଚିତ୍ର ବୀର୍ଯ୍ୟ ଗୁପ୍ତ | ୬୪ |
| ଅଭିମନ୍ୟୁ ଗୁପ୍ତ ... | ୬୫ |
| ମଗଧ, ଗୌଡ଼, ବଙ୍ଗ ଅଧିପତି ଦେବପାଳ | ୬୫ |
| ଚଣ୍ଡୀହର ଗୁପ୍ତ ... | ୬୬ |
| ଉଦ୍ୟତ କେଶରୀ ବା ଗୁପ୍ତ ... ... | ୬୬ |
| ଲଲାଟେନ୍ଦୁ କେଶରୀ ,, ... ... | ୬୮ |
| ୬ ବା ୭ ଜଣ କେଶରୀ ରାଜା ... ... | ୬୯ |
| କାନ୍ୟକୁବ୍ଜର ଯଶୋବର୍ମ ଦେବ ... | ୬୯ |
| ବଙ୍ଗର ଗାଙ୍ଗେୟଦେବ ଓ ତତ୍ପୁତ୍ର କର୍ଣ୍ଣଦେବ | ୭୦ |
| ଚୋଲରାଜ୍ୟର ପରକେଶରୀବର୍ମା ବା ରାଜେନ୍ଦ୍ର ଚୋଳ | ୭୦ |
| ରଣ ସିଂହ ବା ରଣକେଶରୀ ... ... | ୭୧ |

## ପଞ୍ଚମ ପରିଚ୍ଛେଦ ।

| | |
|---|---|
| ମୁଖ ଲିଙ୍ଗର ଗଙ୍ଗା ବଂଶର ମଧୁକାର୍ଣ୍ଣବ ଓ ୪ର୍ଥ ବଜ୍ରହସ୍ତ | ୭୧ |
| ସ୍ଥାନୀୟ ସାମନ୍ତ ରାଜା କଳ ଶେଖର ବା କୁଳଶେଖର ଦେବ ଗଙ୍ଗ ... ... | ୭୩ |

| ବିଷୟ | ପୃଷ୍ଠା |
|---|---|
| ସ୍ଥାନୀୟ ସାମନ୍ତ ରାଜା ବିଜୟ ଦେବ ଗଙ୍ଗ | ୭୫ |
| ତ୍ରିକଳିଙ୍ଗ ମହାରାଜା ରାଜରାଜ ଦେବ ... | ୭୫ |
| ସ୍ଥାନୀୟ ସାମନ୍ତ ରାଜା ଦଶରଥ ଦେବ ଗଙ୍ଗ | ୭୬ |
| ମହାରାଜା ଗ୍ରୈଳ ଗଙ୍ଗ ବା ଅନନ୍ତ ବର୍ମା | ୭୭ |
| ସ୍ଥାନୀୟ ସାମନ୍ତ ରାଜା ରମେଶ୍ୱର ଦେବ ଗଙ୍ଗ | ୭୮ |
| ସ୍ଥାନୀୟ ସାମନ୍ତ ରାଜା ଭବନାଥ ଦେବ ,, | ୮୧ |
| ସ୍ଥାନୀୟ ସାମନ୍ତ ରାଜା କୃତ୍ତିବାସ ଦେଓ ,, | ୮୩ |
| ରାଣୀ ହେମନ୍ତ କୁମାରୀ ଦେବୀ ,, ... | ୮୩ |
| ଅଠମଲ୍ଲିକ ... ... | ୮୪ |

## ଷଷ୍ଠ ପରିଚ୍ଛେଦ ।

| | |
|---|---|
| ଗ୍ରୈହାନ ବଂଶର ପ୍ରାଥମିକ ବିବରଣ ... | ୮୬ |
| ରତନପୁର ରାଜା ଚେଦ ବା ହୈହୟ ବଂଶୀୟ ୨ୟ ରତ୍ନଦେବ ... ... | ୮୯ |
| ଗ୍ରୈହାନ ବଂଶର ଉତ୍ପତ୍ତି ... ... | ୯୦ |
| ରମାଇ ଦେଓ ... | ୯୪ |
| ମହାଲିଙ୍ଗ ଦେଓ ... ... | ୯୭ |
| ବସ୍ତ୍ରରାଜ ଦେଓ ... ... | ୯୮ |
| ବୈଜଳ ଦେଓ ... ... | ୧୦୫ |
| ଭୋଜରାଜ ଦେଓ. | ୧୦୭ |
| ବୀର ମଲ୍ଲଦେଓ. | ୧୦୭ |
| ପ୍ରଥମ ପ୍ରତାପରୁଦ୍ର ଦେଓ ... ... | ୧୦୮ |
| ଭୂପାଳ ଦେଓ ... ... | ୧୦୮ |
| ନାଗସିଂହ ଦେଓ ... | ୧୦୯ |
| ବିକ୍ରମାଦିତ୍ୟ ଦେଓ ... | ୧୦୯ |
| ଦ୍ୱିତୀୟ ବୈଜଳ ଦେଓ ... ... | ୧୧୦ |

| ବିଷୟ | | | ପୃଷ୍ଠା |
|---|---|---|---|
| ଭଜୁ ହୀରାଧର ଦେଓ | | | ୧୧୧ |
| ନରସିଂହ ଦେଓ | ... | | ୧୧୩ |
| ହମିର ଦେଓ ଓ ତାଙ୍କ ମହାରାଣୀ | | | ୧୧୭ |
| ହୃଦେ ନାରାୟଣ ଦେଓ | ... | | ୧୧୮ |
| ପ୍ରତାପ ଦେଓ | ... | | ୧୨୦ |
| ଦ୍ୱିତୀୟ ବିକ୍ରମାଦିତ୍ୟ ଦେଓ | ... | | ୧୨୧ |
| ମକୁନ୍ଦ ଦେଓ | | | ୧୨୧ |
| ବଳରାମ ଦେଓ | ... | | ୧୨୧ |
| ହୃଦେଶା ଦେଓ | | | ୧୨୨ |
| ରାଜସିଂହ ଦେଓ | | ... | ୧୨୨ |
| ଚନ୍ଦ୍ର ଶେଖର ଦେଓ | ... | ... | ୧୨୩ |
| ପ୍ରଥମ ପୃଥ୍ୱୀରାଜ ଦେଓ | ... | ... | ୧୨୪ |
| ଦ୍ୱିତୀୟ ରାମଚନ୍ଦ୍ର ଦେଓ | | ... | ୧୨୫ |
| ଭୂପାଳ ଦେଓ | | | ୧୩୩ |
| ହୀରା ବଜ୍ରଧର ଦେଓ | | | ୧୪୧ |
| ଶୁର ପ୍ରତାପ ଦେଓ | | ..... .. | ୧୪୬ |
| କୋର୍ଟ ଅଫ୍‌ଓ୍ୟାର୍ଡ଼ | ... | ... | ୧୪୯ |
| ତୃତୀୟ ରାମଚନ୍ଦ୍ର ଦେଓ | ... | ... | ୧୫୨ |
| ଦଳଗଞ୍ଜନ ସିଂହଦେଓ | ... | ... | ୧୫୩ |
| ଦ୍ୱିତୀୟ ପୃଥ୍ୱୀରାଜ ଦେଓ | ... | ... | ୧୫୬ |
| ନାବାଳକ ମହାରାଜା ବ୍ରଜେନ୍ଦ୍ର ନାରାୟଣ ଦେଓଙ୍କ ପକ୍ଷରୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ (କୋର୍ଟ ଅଫ୍‌ଓ୍ୟାର୍ଡ଼) | | | ୧୫୯ |

*

ପାଞ୍ଚଣା ଇତିହାସ ସମାପ୍ତ ।

# ଦ୍ୱିତୀୟଭାଗ ।

## ସମ୍ବଲପୁର ଇତିହାସ ।

ବିଷୟ ପୃଷ୍ଠା

### ପ୍ରଥମ ପରିଚ୍ଛେଦ ।

ସମ୍ବଲପୁର ସହର ... ... ୧୬୧

### ଦ୍ୱିତୀୟ ପରିଚ୍ଛେଦ ।

ଚୌହାନବଂଶ ବଳରାମ ଦେଓ ୧୬୪
ହୃଦେ ନାରାୟଣ ଦେଓ ... ୧୬୮
ବଳଭଦ୍ର ସାଏ ... ୧୭୦
ମଧୁକର ସାଏ ୧୭୨
ବଳିହାର ସିଂହ ୧୭୬
ରତନ ସିଂହ ୧୮୩
ଛତ୍ର ସାଏ ... ୧୮୩
ଅଜିତ ସିଂହ ... ୧୮୫
ଅଭୟ ସିଂହ ୧୮୮
ବଳଭଦ୍ର ସାଏ ୧୯୩
ଜୟନ୍ତ ସିଂହ ... ୧୯୪
ମହାରାଜ ସାଏ ... ୨୦୫
ମହାରାଣୀ ମୋହନକୁମାରୀ ଦେବୀ ... ୨୦୭
ନାରାୟଣ ସିଂହ ... ... ୨୦୯

### ତୃତୀୟ ପରିଚ୍ଛେଦ ।

ଇଷ୍ଟ ଇଣ୍ଡିଆ କୋମ୍ପାନୀ ବା ବ୍ରିଟିଶ ଗଭର୍ଣ୍ଣମେଣ୍ଟ ୨୧୨
ଶାସନସମ୍ପର୍କୀୟ ପରିବର୍ତ୍ତନ... ... ୨୨୦

ସମ୍ବଲପୁର ଇତିହାସ ସମାପ୍ତ ।

କୋଶଲତରଙ୍ଗ ଗ୍ରନ୍ଥମାଳା—୧ନମ୍ବର

ପ୍ର ଥ ମ ଭା ଗ ।



ସଂ ଦ୍ୱି ପ୍ର

# କୋଶଳ ବା ପାଟଣା

# ଇତିହାସ ।



# ସଂକ୍ଷିପ୍ତ କୋଶଳ ବା ପାଟଣା

## ରାଜ୍ୟ ଇତିହାସ ।

---

### ପ୍ରଥମ ପରିଚ୍ଛେଦ ୧ମ

### ଭୌଗୋଳିକ ବିବରଣ ।

**ସୀମା**—ପାଟଣା ରାଜ୍ୟ ୨୦ ୯' ଓ ୨୧ ୪' ଉତ୍ତର ଅକ୍ଷାଂଶ ମଧ୍ୟରେ ଓ ୮୨° ୪୧' ଓ ୮୩° ୪୦' ପୂର୍ବ ଦ୍ରାଘିମା ମଧ୍ୟରେ ଅବସ୍ଥିତ ଏହାର ଉତ୍ତରରେ ସମ୍ବଲପୁର ଜିଲ୍ଲାର ବୁଢ଼ା ସମ୍ବର ଜମିଦାରୀ ଓ ସୋନପୁର ଷ୍ଟେଟ, ପୂର୍ବରେ ସୋନପୁର ଷ୍ଟେଟ ଓ ଖାନ ଖେମଣ୍ଡି, ଦକ୍ଷିଣରେ କଳାହାଣ୍ଡି ଷ୍ଟେଟ ଓ ପଶ୍ଚି-ମରେ ସମ୍ବଲପୁର ଜିଲ୍ଲାର ଖରିଆର ଜମିଦାରୀ ଅଛି । ଏହାର ଉତ୍ତର ସୀମାରେ ଗନ୍ଧମାଦନ ପର୍ବତ ଓ ଅଙ୍ଗନଦୀ ପ୍ରବା-ହିତ ହେଉଅଛି । ପୂର୍ବରେ ନିବୃତ୍ତ ଯୋର ( ଲାଗ୍ବଣୀ ) ଦକ୍ଷିଣରେ ତେଲ ନଦୀ, ପଶ୍ଚିମରେ କାଲନାଲ ଓ ପାଟ ପାଳ ପର୍ବତ ଅଛି । ଏହାର ହାରାହାରି ଦୈର୍ଘ୍ୟ ପ୍ରାୟ ମା ୫୦ଇଲ ଓ ପ୍ରସ୍ଥ ମଧ୍ୟ ତଦ୍ରୂପ ଅଟେ । ଏହାର କ୍ଷେତ୍ର ଫଳ ୨୩୯୯ ବର୍ଗ ମାଇଲ ଅଟେ । ମୋଟ କ୍ଷେତ୍ର ଫଳରୁ ପ୍ରାୟ $\frac{1}{7}$ ଅଂଶ କୃଷି ଆବାଦ ହେଉଅଛି ଓ ଅବଶିଷ୍ଟାଂଶ ଅରଣ୍ୟ ପର୍ବତରେ ପୂର୍ଣ୍ଣ ଅଟେ ।

**ତାପ**—ଅନ୍ୟାନ୍ୟ ଜଙ୍ଗଲ ପର୍ବତ ଶୂନ୍ୟ ରାଜ୍ୟ-ମାନ-ଙ୍କର ପେପର ତାପ ଥାଏ ଏହି ରାଜ୍ୟର ତାପ ମଧ୍ୟ ତଦ୍ରୂପ।

ଅଛେ । ଶୀତ ମାସର ଜଣା କାଳରେ ୪୫ ପାଁ ଓ ମଧ୍ୟାହ୍ନ କାଳରେ କୃଶତ ୮୦ରୁ ଉପରକୁ ତାପ ମାନ ଯନ୍ତ୍ର ଉଠେ । ଗରମ ମାସ ଏପ୍ରିଲ୍ ଠାରୁ ଯୁନ୍ ମାସର ଅର୍ଦ୍ଧେକ ପର୍ଯ୍ୟନ୍ତ ତାପ ମାନ ଯନ୍ତ୍ର କେବେ କେବେ ୧୧୧° ଡିଗ୍ରୀ ପର୍ଯ୍ୟନ୍ତ ଉଠେ ।

ବୃଷ୍ଟି—ଗତ କୋଡିଏ ବର୍ଷର ହାସବ ର ଜଳ ବୃଷ୍ଟି ୫୬-୧୮ ଇଞ୍ଚ ଅଟେ ।

ଜଳବାୟୁ—ଏହି ରାଜ୍ୟର ଖୋଲା ଅଞ୍ଚଳର ସ୍ୱାସ୍ଥ୍ୟ ଭଲ ଓ ଜଙ୍ଗଲ ଅଞ୍ଚଳରେ ସାଧାରଣତଃ ମେଲେରିଅ ଜ୍ୱର ଅଧିକ ଦେଖାଯାଏ ।

ଅରଣ୍ୟ ଜାତ ପ୍ରଦାର୍ଥ—ଅରଣ୍ୟରେ ରେଙ୍ଗାଲ୍,ବଙ୍କା, ଶିଶୁ, ମହୁଲ, କେନ୍ଦୁ, ସାଗୁଆନ ଆଦ ଗଛମାନ ମିଳେ ଓ ମହୁ, ମହଣ ଓ ଲାଖ ମିଳେ । ବାଘ, ଭାଲୁ, ଚିତାବାଘ ଓ ବଣ ପୋଢ଼ ଆଦରେ ମଧ୍ୟ ଅରଣ୍ୟ ପୂର୍ଣ୍ଣ ଅଟେ ।

ଏହି ରାଜ୍ୟର ପଶ୍ଚିମ ଅଂଶ ଉଚ୍ଚ ଥିବାରୁ ନଦୀମାନ ପଶ୍ଚିମରୁ ପୂର୍ବକୁ ପ୍ରବାହିତ ହେଉଅଛି ।

ମନୁଷ୍ୟ—ଏହି ରାଜ୍ୟରେ ଆର୍ଯ୍ୟ ଓ ଅନାର୍ଯ୍ୟ ଉଭୟ ଶ୍ରେଣୀର ଲୋକ ବାସ କରୁ ଅଛନ୍ତି । ପ୍ରାୟ ଅଧିକାଂଶ ଲୋକ କୃଷିଜୀବୀ ଅଟନ୍ତି । ଗତ ୧୯୧୧ ସାଲର ଲୋକ ଗଣନା ସମୟରେ ପୁରୁଷ ଓ ସ୍ତ୍ରୀ ସଂଖ୍ୟା ୪୦୮୭୧୬ ଥିଲା । ବାଳକ ବାଳିକା ମାନଙ୍କ ଶିକ୍ଷା ପାଇଁ ଷ୍ଟେଟରେ ଅନେକ ସ୍ଥଳରେ ଲୋଅର ଓ ଅପର ପ୍ରାଇମେରୀ ଓ ମିଡଲ୍ ସ୍କୁଲ୍ ମାନ ଅଛି, ଏହି ରାଜ୍ୟର ରାଜଧାନୀ ବଲାଙ୍ଗିରରେ,ଗୋଟିଏ ହାଇଇଂଲିଶ ସ୍କୁଲ୍, ଗୋଟିଏ ଗୁରୁ ଟ୍ରେନିଂ ସ୍କୁଲ୍, ଗୋଟିଏ ବାଳିକା ସ୍କୁଲ୍, ଗୋଟିଏ ଗଣ୍ଡାସ୍କୁଲ୍, ଗୋଟିଏ ସଂସ୍କୃତ ସ୍କୁଲ୍ ଅଛି । ଷ୍ଟେଟର

ଉପଯୁକ୍ତ ସ୍ଥାନମାନଙ୍କରେ ମାଇନର ସ୍କୁଲ୍ ମାନ ଅଛି, ରାଜ୍ୟ ଶାସନ ନିମନ୍ତେ ଉକ୍ତ ବିଭାଗ ମାନ ମଧ୍ୟ ଅଛି । ମନୁଷ୍ୟ ମାନଙ୍କ ସ୍ୱାସ୍ଥ୍ୟ ରକ୍ଷା ପାଇଁ ବଲାଙ୍ଗିର, ତିତିଲାଗଡ଼, ପାଟଣା ଗଡ଼, ଟିଟିଲା ଗଡ଼ ଓ ବେଲ୍ ପଡ଼ାରେ ଚିକିତ୍ସାଳୟମାନ ଅଛି ।

**ପ୍ରାଚୀନ ଦୁର୍ଗ**—ପୂର୍ବ କାଳରେ ଏହି ରାଜ୍ୟ ଅନେକ ବଂଶୀୟ ରାଜାମାନଙ୍କ ଦ୍ୱାରା ଶାସିତ ହୋଇ ଅନେକ ଗୁଡ଼ିଏ ଗଡ଼ ତିଆର ହୋଇଥିଲା, ସେ ମଧ୍ୟରୁ ନିମ୍ନ ଲିଖିତ କେତେ ଗୋଟି ଗଡ଼ର ଭଗ୍ନାଂଶମାନ ରହିଅଛି । ଯଥା—ପାଟଣା ଗଡ଼, ଟିଟିଲ ଗଡ଼ ( ଟିଟିଲା ଗଡ଼ ) ରାଏ ବିଜୟ ଗଡ, ଧର୍ମ ଗଡ଼ ( ଧର୍ମଗଡ଼ ), ବୁଢୀଗଡ଼, ଜର ଗୁଡ଼ା ଗଡ ( ଜରସିଂହା ଗଡ଼ ), କିଙ୍ଗାଁ ଗଡ, ସାଲେଭଟା ଗଡ଼, ବଲରାମ ଗଡ଼ ( ବଲାଙ୍ଗିର ), ଭୁବନପୁର ଗଡ଼, ବାବନ ଗଡ, ଭୋକ ଗଡ, ହମିର ଗଡ଼, ଛେଲିଅ ଗଡ଼, ରଜା ରାଣୀ ଗଡ, ଗୋର ଗଡ, ମାଣିକ ଗଡ, ଖରଅଡ଼ ଗଡ, ଖୋଲ ଗଡ଼, ସମଲଇ ଗଡ଼, ( ସମ୍ବଲପୁର ) ବୈଦ୍ୟନାଥ ଗଡ଼, ବଣିଛା ଗଡ, ଧମା ଗଡ଼, ଡୁମା ଗଡ଼, ପଥର ଗଡ଼, ବିଲଇ ଗଡ, କନ୍ଦାର ଗଡ, ଅମ୍ବୁର ଗଡ଼, ଅର୍ଦ୍ଧଣ୍ଡା ଗଡ଼, ଶରଗଡ଼, ରାମ ଗଡ, ( ରାମପୁର ଗଡ ) ଛାରପୁର ଗଡ଼, ଖାରବେଲା ଗଡ, ( ଖରଳ ଗଡ ବା ଖଲ ଗଡ ), ଯାମୁଟ ଗଡ଼ ଇତ୍ୟାଦ ।

**ସ୍ଥାପତ୍ୟ ନିଦର୍ଶନ**—ଏହି ରାଜ୍ୟରେ ଅନେକ ଗୁଡ଼ିଏ ପ୍ରାଚୀନ ମନ୍ଦିର ଅଛି । ସେ ସବୁରୁ ଜଣା ପଡେ ଯେ ପୂର୍ବ କାଳର ଲୋକମାନେ ସ୍ଥାପତ୍ୟ ବିଦ୍ୟାରେ ବିଶେଷ ପାର-ଦର୍ଶୀ ଥିଲେ । ସେହି ମନ୍ଦିରମାନଙ୍କ ଭଗ୍ନ ସ୍ତୂପମାନ ଏ ପର୍ଯ୍ୟନ୍ତ ପଡି ରହିଅଛି । ଯଥା—ସୁର୍ଡା, ହରଭଙ୍ଗା, କୁଟା-ସିଂହା, ଫାସଡ଼, ସାଲେଭଟା, ସାଉନ୍ତ ପୁର, ଦେଗାଁ, ବଡ଼-

ବନ୍ଧ, ସଚ୍ଚନ୍ଦ୍ରଷ୍ଟ,ଚିଟିଲ୍ଲ ଗଡ଼, ସିରଜୁଠା, ସିହଣୀ, ଉଦେପୁର, ବରେକ୍ଷ୍ମର, ହର ଶଂକର, ରାଣୀ ପୁର ଓ ପାଟଣା ଗଡ ।

---

## ୨ୟ ପରିଚ୍ଛେଦ ।

### ବେଦଯୁଗ ବୈବସ୍ୱତ ମନୁ ।

ବୈବସ୍ୱତ ମନୁ ଭାରତବର୍ଷର ସମ୍ରାଟ ଥିଲେ । ତେଣୁ ତାଙ୍କର ରାଜ୍ୟ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ଉଭୟ ଥିଲା । ସମ୍ରାଟ ମନୁ ସରଯୂନଦୀ ତଟରେ ଏକ ଉତ୍ତମ ସ୍ଥାନ ନିର୍ବାଚନ କରି ଅଯୋଧ୍ୟା ନଗର ନିର୍ମାଣ କରାଇଲେ । ମନୁ ସର୍ବ ପ୍ରଥମ ସମ୍ରାଟ ଥିଲେ । ଲୋକମାନଙ୍କର ଶାସନ ସକାଶେ ଗୋଟିଏ ଆଇନ ପ୍ରଣୟନ କରି ପ୍ରଚଳନ କରିଥିଲେ । ସେହି ଆଇନ ମନୁ ସଂହିତା ନାମରେ ପ୍ରଚଳିତ ଅଛି । ଏହି ଅଯୋଧ୍ୟା ନଗର କୋଶଳ ନାମକ ରାଜ୍ୟର ରାଜଧାନୀ ହେଲା । ଏହି କୋଶଳ ରାଜ୍ୟର ସୀମା ଦକ୍ଷିଣରୁ କାଶିପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି କୋଶଳ ରାଜ୍ୟକୁ ଉତ୍ତର କୋଶଳ ବୋଲି-ଯାଉଥିଲା । କାଶିରାଜ୍ୟ ସୁଦ୍ଧା କୋଶଳ ନାମରେ ପରିଚିତ ଥିଲା । ତାହା କାଶି କୋଶଳ ବା ଦକ୍ଷିଣ କୋଶଳ ବୋଲି ଯାଉଥିଲା । ବେଦର ବ୍ରାହ୍ମଣ ଭାଗରେ ବହୁ ସ୍ଥାନରେ କୋଶଳ ରାଜ୍ୟର ନାମ ଉଲ୍ଲେଖ ଅଛି । ଶତପଥ ବ୍ରାହ୍ମଣରେ ୧ । ୪ । ୧ ରେ କୋଶଳ ରାଜ୍ୟର ସୀମାର ପରିଚୟ ମିଳେ । ତହିଁରେ ଲିଖିତ ଅଛି "ସଦାନୀରା ( ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତରେ ଗଣ୍ଡକୀ ) ନଦୀର ଏକ ପାର୍ଶ୍ୱରେ କୋଶଳ ଓ ଅପର ପାର୍ଶ୍ୱରେ ବିଦେହ ରାଜ୍ୟ ଅବସ୍ଥିତ" ।

"କୋଶଳ ଇକ୍ଷ୍ୱାକୁ ବଂଶୀୟ ରାଜାମାନଙ୍କର ରାଜ୍ୟ, ଏହାର ରାଜଧାନୀ ଅଯୋଧ୍ୟା ଥିଲା ।"—ଅଥର୍ବ ବେଦ ( ୨ )

ଭାରତବର୍ଷର ଆର୍ଯ୍ୟାବର୍ତ୍ତ ଅଂଶ ଦାକ୍ଷିଣାତ୍ୟ ଅପେକ୍ଷା ବିଶେଷ ଅବାଦୀ ଥିଲା, ଅଉ ଦାକ୍ଷିଣାତ୍ୟ ଅନାବାଦୀ ବା ଅରଣ୍ୟପୂର୍ଣ୍ଣ ଥିଲା ।



## ବେଦ ଯୁଗ ।

### ଦେଶ ଗଠନ ଓ ୧ମ ସୌର ବଂଶ ବା ମେଘ ବାହନ ବଂଶ ।

ହରି ବଂଶର ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ଯେ ବୈବସ୍ୱତ ମନୁ ଭାରତବର୍ଷର ସମ୍ରାଟ ଥିଲେ । ତାହାଙ୍କର ଦଶଗୋଟି ପୁତ୍ର ଓ ଗୋଟିଏ କନ୍ୟା ଜନ୍ମ ଗ୍ରହଣ କରି ଥିଲେ । ସେମାନଙ୍କର ନାମ ଇକ୍ଷ୍ୱାକୁ, ନାଭାଗ, ଧୃଷ୍ଣୁ, ଶର୍ଯ୍ୟାତି, ନରିଷ୍ୟନ୍ତ, ପ୍ରାଂଶୁ, ନାଭାଗାରିଷ୍ଟ, କରୁଷ; ପୃଷଧ୍ର ଓ ନୃଗ କନ୍ୟାର ନାମ ଇଳା । ଇଳାଙ୍କର ଅନ୍ୟ ନାମ ସୁଦ୍ୟୁମ୍ନ । ସେ ମୁଙ୍ଗୋଲୟା ରାଜା ସୋମଙ୍କ ପୁତ୍ର ବୁଧଙ୍କ ପାଣି ଗ୍ରହଣ କରି ଥିଲେ । ମନୁ ଅପଣା ପୁତ୍ର କନ୍ୟା ମଧ୍ୟରେ ସମଗ୍ର ଭାରତ ସାମ୍ରାଜ୍ୟ ବିଭକ୍ତ କରି ଦେଲେ । ଇଳାଙ୍କର ଭାଇମାନେ ଆର୍ଯ୍ୟାବର୍ତ୍ତର ଅନ୍ୟାନ୍ୟ ଅଂଶରେ ରହିଲେ । ଜ୍ୟେଷ୍ଠ ଇକ୍ଷ୍ୱାକୁ ଉତ୍ତର କୋଶଳ ବା ଅଯୋଧ୍ୟା କୋଶଳରେ ରହିଲେ । ଅର୍ଥାତ୍ ଗଙ୍ଗା ଓ ଗଣ୍ଡକୀ ନଦୀ ମଧ୍ୟସ୍ଥ କୋଶଳ ପ୍ରଦେଶ ପାଇଲେ । ଦ୍ୱିତୀୟ ପୁତ୍ର ନୃଗ ହିମାଳୟ ନିକଟରେ ଉତ୍ତରରେ ଏକ ପ୍ରଦେଶ ପାଇଲେ । ଏମାନେ ଶକ ବା ସିଥିଅନ ନାମରେ ପରିଚିତ । ଅନ୍ୟାନ୍ୟ ମାନେ ଉତ୍ତର ଭାରତରେ ଅନ୍ୟାନ୍ୟ ସ୍ଥାନ ପାଇଲେ । ଇଳା ଗଙ୍ଗା ଯମୁନା ମଧ୍ୟସ୍ଥ ପ୍ରଦେଶ ଅର୍ଥାତ୍ କାଶି କୋଶଳ ( ଦକ୍ଷିଣ କୋଶଳ ) ଓ ଦାକ୍ଷିଣାତ୍ୟରେ

ପୂର୍ବାଞ୍ଚଳ ଭାଗ ପାଇଲେ । ସେ ଏପରି ଦକ୍ଷିଣ କୋଶଳକୁ ମିଶାଇ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ପାଇଲେ । ଏହି ରାଜ୍ୟର ପୂର୍ବରେ ବେହାର, ଉତ୍କଳ ଓ କଳିଙ୍ଗ ( ଗଞ୍ଜାମ ) ର ପୂର୍ବ ସୀମା । ପଶ୍ଚିମରେ ରାୟପୁର, ବିଲାସପୁର, ବସ୍ତର, ମେକଲ ରାଜ୍ୟର ପଶ୍ଚିମ ସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହାର ରାଜଧାନୀ ପ୍ରୟାଗ ନିକଟବର୍ତ୍ତୀ ପ୍ରତିଷ୍ଠାନ ନାମକ ନଗର ଥିଲା । ଇଳାଙ୍କର ଚାରିଗୋଟି ପୁତ୍ର ଥିଲେ । ପୁରୁରବା, ଗୟ, ଉତ୍କଳ, ବିନୀତାଶ୍ୱ ବା ଶମବା-ବିମଳ । ପୁରୁରବାଙ୍କ ବଂଶ ପିତାଙ୍କ ନାମାନୁସାରେ ଚନ୍ଦ୍ରବଂଶ ହେଲା ଓ ମାତାଙ୍କ ନାମାନୁସାରେ ଅନ୍ୟାନ୍ୟ ମାନଙ୍କ ସୌଲ ବଂଶ ହେଲା । ଇଳାଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ରମାନେ ଇଳାଙ୍କ ରାଜ୍ୟ ନିଜ୨ ମଧ୍ୟରେ ବିଭକ୍ତ କଲେ । ପୁରୁରବା ଭାଗି କୋଶଳ ରାଜ୍ୟ ପାଇଲେ । ଗୟ ବେହାର ପ୍ରଦେଶ, ଉତ୍କଳ ଉତ୍କଳ ପ୍ରଦେଶ, ବିନୀତାଶ୍ୱ ଉତ୍କଳର ପଶ୍ଚିମ ଦିଗସ୍ଥ ରାଜ୍ୟ ପାଇଲେ । ଓ ତାକୁ ଦକ୍ଷିଣ କୋଶଳ ବୋଲି ଅଭିହିତ କଲେ । ଉତ୍କଳ ଓ ବିନୀତାଶ୍ୱଙ୍କ ରାଜଧାନୀର ସୀମା ତେଲ ନଦୀ ଥିଲା । ପୂର୍ବରେ ଏହି ରାଜ୍ୟମାନଙ୍କ ନାମ କରଣହୋଇ ନ ଥିବାରୁ ସେମାନେ ନିଜ୨ ନାମାନୁସାରେ ରାଜ୍ୟ ଓ ରାଜଧାନୀମାନଙ୍କୁ ପରିଚିତ କଲେ । ଗୟଙ୍କର ସ୍ଥାପିତ ରାଜ୍ୟର ଓ ରାଜଧାନୀର ନାମ ଗୟା ହେଲା । ଏହି ରାଜ୍ୟକୁ ଅଜି କାଲି ବେହାର ପ୍ରଦେଶ କହନ୍ତି । ଉତ୍କଳ ଓ ବିନୀତାଶ୍ୱ ଦୁହେଁ ଦକ୍ଷିଣକୁ ଅଗ୍ରସର ହେଲେ । ବିନୀତାଶ୍ୱ ମହାନଦୀ କୂଳରେ ଗୋଟିଏ ରାଜ୍ୟ ସ୍ଥାପନ କଲେ । ତାହାର ରାଜଧାନୀ ବିନୀତାଶ୍ୱପୁର ନାମରେ ଗୋଟିଏ ନଗର ସ୍ଥାପନ କଲେ । ଏହା କାଳକ୍ରମେ ବିନୀତା-ପୁର, ବିନୀତା ଓ ଶେଷରେ ବିନିକା ନାମରେ ଅପଭ୍ରଷ୍ଟ,

ହେଲା । ଏହା ସୋନପୁର ଷ୍ଟେଟରେ ଅଛି । ବିନୀତାଶ୍ୱଙ୍କ ଉତ୍କଳ ସେଠାରେ ଛାଡି ଦେଇ ଅଗ୍ରସର ହେଲେ । ଉତ୍କଳ ତେଲ ନଦୀର ଦକ୍ଷିଣ କୂଳବର୍ତ୍ତୀ ଭୂଖଣ୍ଡରେ ରାଜ୍ୟ ସ୍ଥାପନ କଲେ । ରାଜଧାନୀ ମଧ୍ୟ ଉତ୍କଳ ନାମରେ ପରିଚିତ ହେଲା । ଏହା କାଳକ୍ରମେ ଉତ୍କେଲା ନାମରେ ଅପଭ୍ରଷ୍ଟ ହେଲା । ଏହା କଳାହାଣ୍ଡି ଷ୍ଟେଟରେ ଅଛି । ତତ୍ପରେ ଉତ୍କଳ କୌଣସି କେନ୍ଦ୍ର ସ୍ଥଳକୁ ରାଜ୍ୟର ରାଜଧାନୀ ଉଠାଇ ନେଲେ । ପରେ ବିନୀତାଶ୍ୱଙ୍କ ବଂଶଧରମାନେ ବିନୀତାଶ୍ୱ ପୁରକୁ ପାଇ କୋଷଲ ନାମକ ରାଜଧାନୀ ସ୍ଥାପନ କଲେ । ଏହି କୋଷଳ କାଳକ୍ରମେ କୋଷାଳୀ କୋଷଲା ଓ ଶେଷରେ କୋସର ନାମରେ ଅପଭ୍ରଷ୍ଟ ହେଲା ।

ଅସନ୍ତାନତ୍ୱ ହେତୁ ଉତ୍କଳଙ୍କ ବଂଶ ଲୋପ ହେଲା । ବିନୀତାଶ୍ୱଙ୍କ ବଂଶଧର ମାନେ କୋସରରେ ରାଜତ୍ୱ କରିବାକୁ ଲାଗିଲେ । ଏହାଙ୍କର ବଂଶକୁ ଶୈଲ ବା ଶୈର ବଂଶ ବୋଲି କହିଲେ ।



## ଚନ୍ଦ୍ର ବଂଶୀୟ ବଳି ରାଜା ।

ବଳି ରାଜା ଚନ୍ଦ୍ରବଂଶୀୟ ଅଣୁ ବଂଶର ରାଜା ସୁତପାଙ୍କର ପୁତ୍ର ଥିଲେ । ସେ ଆର୍ଯ୍ୟାବର୍ତ୍ତର ସିନ୍ଧୁ ନଦ କୂଳସ୍ଥିତ ପ୍ରଦେଶରେ ରାଜତ୍ୱ କରୁ ଥିଲେ । ସେ ବିଷ୍ଣୁଙ୍କୁ ସମସ୍ତ ରାଜ୍ୟ ଅର୍ପଣ କରି ଆର୍ଯ୍ୟାବର୍ତ୍ତର ପାଦତଳ ବା ପାତାଳ ଦେଶସ୍ଥ ରାଜ୍ୟ ମାନଙ୍କୁ ଅଧିକାର କରି ରାଜତ୍ୱ କଲେ । ତାହାଙ୍କର ଗୋଟି ପୁତ୍ର ଥିଲେ । ଅଙ୍ଗ, ବଙ୍ଗ, ସୁହ୍ମ, ପୁଣ୍ଡ୍ର, କଳିଙ୍ଗ ଓ ଉଡ୍ର । ବଳିଙ୍କ ମୃତ୍ୟୁ ପରେ ସେହି ରାଜ୍ୟ ତାହାଙ୍କର ପୁତ୍ର ମାନଙ୍କ ମଧ୍ୟରେ ବିଭକ୍ତ ହେଲା । ସେମାନେ ନିଜ ନିଜ ଖଣ୍ଡ

ରାଜ୍ୟ ମାନଙ୍କୁ ନିଜର ନାମରେ ପରିଚିତ କଲେ । ଅଙ୍ଗ, ଉତ୍ତର ବଙ୍ଗଦେଶ, ବଙ୍ଗ-ବଙ୍ଗ ଦେଶ, ସୁହ୍ମ-ପଶ୍ଚିମ ବଙ୍ଗଦେଶ, ପୁଣ୍ଡ୍ର-ପାବନା ମହାନଦୀ ପର୍ଯ୍ୟନ୍ତ ଦେଶ, କଳିଙ୍ଗ-କଳିଙ୍ଗ ଦେଶ (ଗଞ୍ଜାମ), ଉଡ୍ର-ଉଡ୍ର ଦେଶ ବା ( ଜୟପୁର ବସ୍ତର ), ରାଜ୍ୟ ପାଇଲେ, କଳିଙ୍ଗ ରାଜା ଉତ୍କଳ ଓ କୋଶଳ ଦେଶକୁ ଜୟ କରି ନିଜ ରାଜ୍ୟ ସଙ୍ଗେ ମିଶାଇ ଶାସନ କରୁଥିଲେ । କୋଶଳ ରାଜା କଳିଙ୍ଗ ରାଜାଙ୍କ ସାମନ୍ତ ରାଜା ପରି ଶାସନ କରୁଥିଲେ ।



## ସୂର୍ଯ୍ୟ ବଂଶୀୟ ରାଜାମାନେ ।

### ବେଦଯୁଗ

ଅଯୋଧ୍ୟାରେ ଇକ୍ଷ୍ୱାକୁ ନାମରେ ଜଣେ ରାଜା ଥିଲେ । ତାହାଙ୍କର କେତେ ପୁରୁଷ ଉତ୍ତାରୁ ସେହି ବଂଶରେ ମାନଧାତା ନାମରେ ଜଣେ ରାଜା ଜନ୍ମ ହେଲେ । ତାଙ୍କ ନାମ ରୁଗ୍ ବେଦରେ ଦୁର୍ଗହ ଓ ପୁରାଣ ମାନଙ୍କରେ ସୁବନ୍ଧୁ ବୋଲି ଅଙ୍କିତ ହୋଇ ଅଛି । "ମାନଧାତା" ତାଙ୍କ ଉପାଧି ଥିଲା । ସେ ଜଣେ କ୍ଷମତାଶାଳୀ ବୀର ପୁରୁଷ ଥିଲେ । ସେ ସୈନ୍ୟ ସାହାଯ୍ୟରେ ସିଂହଳ ଦ୍ୱୀପ ଓ ଅନ୍ୟାନ୍ୟ ଦ୍ୱୀପମାନ ଜୟ କରି ଥିଲେ । ତାଙ୍କ ପରେ ରଘୁ ନାମରେ ଜଣେ ରାଜା ଏହି ସୂର୍ଯ୍ୟ ବଂଶରେ ଜନ୍ମ ଗ୍ରହଣ କଲେ । ସେ ଓଡ଼ିଶା ଓ ସୁହ୍ମ ରାଜ୍ୟ ଜୟ କରି ବଙ୍ଗ ଆକ୍ରମଣ କଲେ । ବଙ୍ଗ ଦେଶରେ ସେ ସମୟରେ ଦ୍ରାବିଡ଼ ରାଜା ରାଜତ୍ୱ କରୁଥିଲେ । ରଘୁ ତାଙ୍କୁ ଜିଣି ହାତୀମାନଙ୍କ ସାହାଯ୍ୟରେ କପିଶା ନଦୀ ପାର ହୋଇ କଳିଙ୍ଗ ଆକ୍ରମଣ କଲେ । କଳିଙ୍ଗ ଜୟ ପରେ କୁମାରିକା

ଅନ୍ତଃପୁରକୁ ପଠାଇଲେ । ସେଠାରୁ ଉତ୍ତର ଦିଗସ୍ଥ ପାଣ୍ଡ୍ୟ କେରଳ, ପଶ୍ଚିମ ଘାଟ, କଙ୍କଣ ଓ ପଶ୍ଚିମ ଦିଗର ଅନ୍ୟାନ୍ୟ ରାଜ୍ୟମାନ ଜିଣି ସିନ୍ଧୁ ନଦ ପାର ହୋଇ ପାରସ୍ୟ ଆକ୍ରମଣ କଲେ । ଅନନ୍ତର ଅଫଗାନିସ୍ଥାନ ହୁଣମାନଙ୍କ ରାଜ୍ୟ ଜୟ କରି ପରିଶେଷରେ ବ୍ରହ୍ମପୁତ୍ର ନଦୀ ପାର ହୋଇ ଆସାମ ଜୟ କରି ବିଶ୍ୱଜିତ ଯଜ୍ଞ କଲେ । ତାଙ୍କର ନାତି ଦଶରଥ ମଧ୍ୟ ସିନ୍ଧୁ ସୌବୀର, ସୌରଷ୍ଟ୍ର, ମତ୍ସ୍ୟ, କାଶି, କୋଶଳ, ମଗଧ, ଅଙ୍ଗ; ବଙ୍ଗ ଆଦି ରାଜ୍ୟ ଜୟ କରି ଥିଲେ । ରାମ, ଲକ୍ଷ୍ମଣ, ଭରଥ, ଶତ୍ରୁଘ୍ନ, ନାମରେ ତାଙ୍କର ଚାରି ପୁତ୍ରଥିଲେ । ରାମ ବର୍ଷ ବନବାସ ସମୟରେ ସିଂହଳର ତାମିଲ ରାଜା ରାବଣ ତାଙ୍କ ପତ୍ନୀ ସୀତାଙ୍କୁ ଚୋରାଇ ନେବାରୁ ତାହା ସଙ୍ଗେ ଲଢ଼ାଇ କରି ତାକୁ ସଂହାର କରି ସୀତାଙ୍କୁ ଉଦ୍ଧାର କଲେ ।

ରାମଙ୍କ ରାଜତ୍ୱ ସମୟରେ ଅଯୋଧ୍ୟାର ସୀମା ଦୁଇ ଭାଗରେ ବିଭକ୍ତ ହୋଇଥିଲା । ପ୍ରଥମ ଭାଗ—ଦୁଇ ଗୋଟି କୋଶଳ ରାଜ୍ୟ ( ଅର୍ଥାତ୍ ଉତ୍ତର କୋଶଳ ଓ କାଶି କୋଶଳ ବା ଦକ୍ଷିଣ କୋଶଳ ) ମଥୁରା, ମଧ୍ୟ ଭାରତ, ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ପୂର୍ବ ଅଫଗାନିସ୍ଥାନ ଓ ଅନ୍ୟାନ୍ୟ କେତେକ ରାଜ୍ୟ ଥିଲା । ଦ୍ୱିତୀୟ ଭାଗ-ବନ୍ଧୁ ବା ମିତ୍ର ରାଜ୍ୟ—ଯଥା: ଅଙ୍ଗ ବଙ୍ଗ, ମତ୍ସ୍ୟ, (ଜୟପୁର) ଶୃଙ୍ଗବେର ପୁର (ଏଲ୍ଲାହାବାଦର ଉତ୍ତର ସ୍ଥିତ ରାଜ୍ୟ ) କାଶି, ସିନ୍ଧୁ, ସୌବିର, ସୌରଷ୍ଟ୍ର ଦାକ୍ଷିଣାତ୍ୟ ଉପକୂଳ, କୋଶଳ, କର୍ଣ୍ଣାଟ୍ୟା ସିଂହଳ ଥିଲା, ଏଣୁ ରାମଚନ୍ଦ୍ର ପୁତ୍ର ଓ ଭ୍ରାତୃପୁତ୍ରମାନଙ୍କ ମଧ୍ୟରେ ସମସ୍ତ ଅଯୋଧ୍ୟା ରାଜ୍ୟ ନିମ୍ନ ମତେ ବିଭକ୍ତ କରିଦେଲେ ।



## ରାମଚନ୍ଦ୍ରଙ୍କ କୁଶ ଓ ଲବ ନାମରେ ଦୁଇଟି ପୁତ୍ର ଥିଲେ ।

କୁଶ—ଦାଶି କୋଶଳ ବୃଦ୍ଧି ପାଇଥିବା ଦକ୍ଷିଣ କୋଶଳ, ଅର୍ଥାତ୍ ଛତିଶ ଗଡ଼, ମେକଳ; ମଧ୍ୟ ପ୍ରଦେଶ, ବେରାର ଆଦି ରାଜ୍ୟମାନ ପାଇଲେ । ଏହାଙ୍କର ସ୍ଥାପିତ ରାଜଧାନୀ କୁଶସ୍ଥଳୀ ବା କୁଶାବତୀ ଥିଲା । ଏହି କୁଶସ୍ଥଳୀ ବା କୁଶାବତୀ ଅଜ କାଲିର ବଅଁଶିଳ ଅଟେ ।

ଲବ—ଉତ୍ତର କୋଶଳ ବା ଅଯୋଧ୍ୟା କୋଶଳ ରାଜ୍ୟ ପାଇଲେ । ଏହାଙ୍କର ରାଜଧାନୀ ଶ୍ରାବସ୍ତୀ ଅଟେ ।

## ଭରତଙ୍କ ଦୁଇପୁତ୍ର ଥିଲେ, ୧ମ ତକ୍ଷ ୨ୟ ପୁଷ୍କର,

ତକ୍ଷ—ଗାନ୍ଧାର ରାଜ୍ୟ ପାଇଲେ । ଏହାଙ୍କର ରାଜଧାନୀ ତକ୍ଷଶିଳା ଅଟେ ।

ପୁଷ୍କର—ପୁଷ୍କର ରାଜ୍ୟ ପାଇଲେ ଏହାଙ୍କର ରାଜଧାନୀ ପୁଷ୍କରବତୀ ଅଟେ ।

## ଲକ୍ଷ୍ମଣଙ୍କର ଦୁଇପୁତ୍ର ଥିଲେ ଅଙ୍ଗଦ ଓ ଚନ୍ଦ୍ରକେତୁ

ଅଙ୍ଗଦ—କାରୁପଦ ରାଜ୍ୟପାଇଲେ ରାଜଧାନୀ ଅଙ୍ଗଦ ଅଟେ

ଚନ୍ଦ୍ରକେତୁ—ମଲ୍ଲଦେଶ ପାଇଲେ । ଏହାଙ୍କ ରାଜଧାନୀ ଚନ୍ଦ୍ରକାନ୍ତ ଅଟେ ।

## ଶତ୍ରୁଘ୍ନଙ୍କ ଦୁଇ ପୁତ୍ର ଥିଲେ ଶତ୍ରୁଘାତି ଓ ସୁବାହୁ

ଶତ୍ରୁଘାତୀ—ବିଦିଶା ରାଜ୍ୟ ପାଇଲେ । ମଧ୍ୟ ଭାରତରେ ଏହା ଭିଲସା ନାମରେ ପରିଚିତ ଅଟେ ।

ସୁବାହୁ—ମଥୁରା ରାଜ୍ୟ ପାଇଲେ । ଏହାଙ୍କ ରାଜଧାନୀ ମଥୁରା ଅଟେ ।

---

## ରାମାୟଣ ଯୁଗ ।

### ସୂର୍ଯ୍ୟ ବଂଶୀୟ କୁଶ ।

ଅନନ୍ତର ମହାରାଜା ରାମଚନ୍ଦ୍ର ସ୍ୱର୍ଗଗାମୀ ହେବାରୁ ସମସ୍ତ ଭାଇମାନେ କୁଶଙ୍କୁ ସମ୍ରାଟ ପଦରେ ଅଭିଷିକ୍ତ କରି ସମସ୍ତେ ତାଙ୍କର ସାମନ୍ତ ରାଜା ପରି ରହିଲେ । ଏଠାରେ କୁଶ ଭାଗ ପାଇ ଥିବା ରାଜ୍ୟ ଦକ୍ଷିଣ କୋଶଳ ଓ ପୂର୍ବ କୋଶଳ ଥିଲା । ପରେ ଏହି ଦୁଇ କୋଶଳ ମହାକୋଶଳ ନାମରେ ପରିଗଣିତହେଲା ।

ଚିନ ପରିବ୍ରାଜକ ହୁଏନ ସାଂ ତାଙ୍କର ଭ୍ରମଣ ବୃତ୍ତାନ୍ତରେ କହିଅଛନ୍ତି ଯେ ମହାକୋଶଳ ରାଜ୍ୟର ଉତ୍ତରରେ ଶ୍ରାବସ୍ତି, ପୂର୍ବରେ ଓଡ଼ିଶା, ଦକ୍ଷିଣରେ ଅନ୍ଧ୍ର କଳିଙ୍ଗ ରାଜ୍ୟ ଓ ପଶ୍ଚିମରେ ମହାରାଷ୍ଟ୍ର ରାଜ୍ୟ ଥିଲା । ତେବେ ମହା କୋଶଳ ରାଜ୍ୟ କହିଲେ ସମଗ୍ର ମଧ୍ୟ ପ୍ରଦେଶ, ବେରାର ଗଣ୍ଡୋୟାନା, ବା ଛତିଶ ଗଡ଼ ପାଟଣା ମେକଳ ( ସୁର ଗୁଜା ) ଅଢ଼ କାଣି କୋଶଳ ଥିଲା ଓ ଏହାର ରାଜଧାନୀ କୁଶସ୍ଥଳୀ ବା କୁଶାବତୀ ଅଟେ । ଯାହାକି ଏହି ପାଟଣା ରାଜ୍ୟରେ ଥିବା ରାଣୀପୁର, ଝରିଏଲ, କଅଁଶିଲ, ବାଲଖମାର,ବାହାବଳ ଆଦି ପାଞ୍ଚଖଣ୍ଡ ଗ୍ରାମ ଅଟେ । ଏ ସମ୍ବନ୍ଧରେ ସୂଚନାରେ ଅମ୍ଭେ ଉଲ୍ଲେଖ କରି ସାରି ଅଛୁଁ । ଏହାକୁଶଙ୍କ ରାଜତ୍ୱ ସମୟରେ ସମଗ୍ର ଭାରତର ସାମ୍ରାଜ୍ୟର ରାଜଧାନୀ ହୋଇଥିଲା । କୁଶଙ୍କ ରାଜତ୍ୱ ସମୟରେ ତୋଷଳା ବା ତୋସରରେ ଶୌର ବଂଶୀୟ ରାଜା ରାଜତ୍ୱ କରୁଥିଲେ ଓ ସେ କୁଶଙ୍କ ସାମନ୍ତ ରାଜା ଥିଲେ ।

କୁଶଙ୍କର ମୃତ୍ୟୁ ପରେ ତାଙ୍କ ବଂଶଧରମାନେ ୬୦ ପୁରୁଷ ପର୍ଯ୍ୟନ୍ତ ଏହି ରାଜ୍ୟ ଶାସନ କରି ଥିଲେ । ପ୍ରତ୍ୟେକ ରାଜା ହାରାହାରି ୨୦ ବର୍ଷ ଲେଖାଏ ରାଜତ୍ୱ କରି ଥିଲେ ଏହି ରାଜ୍ୟ ୧୨୦୦ ବର୍ଷ ପର୍ଯ୍ୟନ୍ତ ସୂର୍ଯ୍ୟ ବଂଶୀୟ ରାଜାଙ୍କ ଅଧୀନରେ

ଥିଲା । ଅତ୍ଏବ ମଧ୍ୟ ଏହି ସମସ୍ତ ମଧ୍ୟରେ ଏହି ରାଜ୍ୟର ଅନେକ ପରିବର୍ତ୍ତନ ଘଟିଥିଲା । ଏହି ୬° ପୁରୁଷ ମଧ୍ୟରେ ଏହି ବଂଶର ସନ୍ତାନ ସଂଖ୍ୟା ଅନେକ ହୋଇ ଏହି ପ୍ରଦେଶ ମଧ୍ୟରେ କ୍ଷୁଦ୍ର ୨ ଖଣ୍ଡ ରାଜ୍ୟମାନ ସ୍ଥାପନ କରି ବସିଥିଲେ । ତେଣୁ ମଧ୍ୟ ପ୍ରଦେଶ ବେରାର ଓଡିଶା ଗଞ୍ଜାମ ଆଦି ପ୍ରଦେଶ ମାନଙ୍କର ସ୍ଥାନେ୨ ଏ ପର୍ଯ୍ୟନ୍ତ ଏହି ସୂର୍ଯ୍ୟବଂଶୀୟମାନେ ବସ କରି ଅଛନ୍ତି । ଉତ୍କଳରେ ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଓ ନାତି ପ୍ରତାପ ରୁଦ୍ର ଦେବ ମହା ଗୌରବ ପୂର୍ଣ୍ଣ ରାଜତ୍ୱ କରିଥିଲେ ।



## ୬ଷ୍ଠ ଐଲ ବା ଐର ବଂଶୀୟ କେତୁଭଦ୍ର ।
## ଖ୍ରୀ: ପୂ: ଅ: ୬୦୦୦ ପୂର୍ବେ

କ୍ରମେ୨ କୁଶ ସ୍ଥଳୀରେ ରାଜତ୍ୱ କରୁଥିବା ସୂର୍ଯ୍ୟବଂଶୀୟ ରାଜା ଅପୁତ୍ରିକ ହେବାରୁ କୁଶସ୍ଥଳୀରେ ସୂର୍ଯ୍ୟବଂଶୀୟ ରାଜାଙ୍କ ଶାସନ ଲୁପ୍ତ ହେଲା । ସୂର୍ଯ୍ୟ ବଂଶୀୟ ରାଜାମାନଙ୍କ ପ୍ରତିଷ୍ଠା ସମୟରେ ଐର ବଂଶୀୟ ରାଜାମାନେ ସେମାନଙ୍କ ସାମନ୍ତ ରାଜା ସ୍ୱରୂପ ତୋଷଳା ରାଜଧାନୀରେ ରାଜତ୍ୱ କରୁଥିଲେ । ଓ କେହି୨ ସେମାନଙ୍କ ମନ୍ତ୍ରୀ କାର୍ଯ୍ୟ ମଧ୍ୟ କରୁଥିଲେ । ଏହି ହେତୁରୁ କେତୁଭଦ୍ର ନାମକ ଜଣେ ଐର ବଂଶୀୟ ସାମନ୍ତ ରାଜା ଯେକି ସୂର୍ଯ୍ୟ ବଂଶୀୟ କୌଣସି ରାଜାଙ୍କ ରାଜତ୍ୱ ସମୟରେ ତାଙ୍କର ମନ୍ତ୍ରୀ କାର୍ଯ୍ୟ କରୁଥିଲେ ଓ ତୋଷଳା ରାଜ୍ୟରେ ବାସ କରୁଥିଲେ ସେ ଏହି ସୁଯୋଗରେ ସ୍ୱାଧୀନତା ଘୋଷଣା କରି ଧୀରେ୨ ଦକ୍ଷିଣ କୋଶଳ ବା ମହାକୋଶଳ ରାଜ୍ୟ ଅଧିକାର କଲେ । ମହା ପରାକ୍ରମଶାଳୀ ସୈନ୍ୟ ସଂଗ୍ରହ କରି ସେମାନଙ୍କ ସାହାଯ୍ୟରେ ଉତ୍କଳ ଓ କଳିଙ୍ଗ ରାଜ୍ୟ

ଅଧିକାର କଲେ ଓ ସେହି ସ୍ଥାନମାନଙ୍କରେ ରାଜଧାନୀ ସ୍ଥାପନ କଲେ । ଉତ୍କଳରେ ଭୁବନେଶ୍ୱର ନିକଟରେ ଏକ ପ୍ରସ୍ତର ନାମକ ରାଜଧାନୀ ଓ କଳିଙ୍ଗରେ ଦନ୍ତପୁର ବା କୋଣାର୍କ ରାଜଧାନୀ ସ୍ଥାପନ କଲେ । ମଧ୍ୟ ପ୍ରଦେଶରେ ଗୁମ୍ଫା ଓ ବେରା ରରେ ଇନ୍ଦ୍ରପ୍ରସ୍ଥ ରାଜଧାନୀ ସ୍ଥାପନ କଲେ । ତାଙ୍କର ସମସାମୟିକ ସୂର୍ଯ୍ୟବଂଶର ରାଜାତାଙ୍କର ସାମନ୍ତ ରାଜା ହେଲେ । ସେ ଅନେକ ଗୁଡ଼ିଏ ଯୁଦ୍ଧ ଜାହାଜ ନିର୍ମାଣ କରି ବଙ୍ଗୋପସାଗର ମଧ୍ୟରେ ଚଳାଇ ସିଂହଳ ଦ୍ୱୀପ ଜୟ କଲେ । ତହିଁରେ ସେ ତାଙ୍କର ଜଣେ ବଂଶୀୟ ଲୋକଙ୍କୁ ସାମନ୍ତ ରାଜା ରୂପରେ ନିଯୁକ୍ତ କଲେ ଓ ଅଧୀନରେ ରଖିଲେ ।

ଅନନ୍ତର ସେ ଉତ୍କଳ ଓ ଚନ୍ଦ୍ରାମର ବନ୍ଦର ମାନଙ୍କରେ ଅନେକ ଜାହାଜ ନିର୍ମାଣ କରି ସୁମାତ୍ରା, ଜାଭା, ବର୍ଣ୍ଣିଓ ଓ ସିଂହଳ ଆଦି ଦ୍ୱୀପମାନଙ୍କରେ ବାଣିଜ୍ୟ କଲେ । ସେ ଜୈନ ଧର୍ମାବଲମ୍ବୀ ରାଜା ଥିଲେ । ଏଣୁ ସେ ଅନେକ ଗୁଡ଼ିଏ ଜୈନ ମନ୍ଦିର ନିର୍ମାଣ କରିଥିଲେ । ସେ ତାଙ୍କର ଅଧିକୃତ ଉତ୍କଳ କୋଶଳ [ ମଧ୍ୟ ପ୍ରଦେଶ ଓ ବେରାର ମିଶି ] ତୋଷଳ ଓ କଳିଙ୍ଗ ଏ ସମସ୍ତ ରାଜ୍ୟକୁ ଏକତ୍ର କରି କଳିଙ୍ଗ ରାଜ୍ୟ ବୋଲି ନାମ ଦେଇଥିଲେ । ସେ କେତେ ବର୍ଷ ପର୍ଯ୍ୟନ୍ତ ଏହି ରାଜ୍ୟ ଶାସନ କରି ପରଲୋକ ଗମନ କଲେ । ତାଙ୍କପରେ ତାଙ୍କ ବଂଶଧରମାନେ ମଧ୍ୟ କେତେ ପୁରୁଷ ପର୍ଯ୍ୟନ୍ତ ସେପରି କ୍ଷମତା ଶାଳୀ ହୋଇ ରାଜତ୍ୱ କରିଥିଲେ । ସେମାନେ କେତୁଭଦ୍ରଙ୍କୁ ନିଜ ବଂଶର ଶ୍ରେଷ୍ଠ ରାଜା ବୋଲି ବିଚାରି ତାଙ୍କର ମୃତମୂର୍ତ୍ତିକୁ ରଥରେ ବସାଇ ରଥଯାତ୍ରା ପରି ଉତ୍ସବ କରୁଥିଲେ । ଏହି ବଂଶ ୩୨ ପୁରୁଷ ପର୍ଯ୍ୟନ୍ତ ରାଜତ୍ୱ କଲା ଉତ୍ତାରୁ ସେହି ପ୍ରକାଣ୍ଡ କଳିଙ୍ଗ ରାଜ୍ୟ ପୁନର୍ବାର ଦୁଇଭାଗରେ ବିଭକ୍ତ ହୋଇଗଲା ।

୧ କୋଶଳ ୨ ତୋସଳ । ତୋସଳ ଅଂଶରେ ତୋସଳ ଉତ୍କଳ କଳିଙ୍ଗ ରାଜ୍ୟ ମିଶି କଳିଙ୍ଗ ନାମ ଧାରଣ କଲା ଓ କୋଶଳ ଅଂଶରେ କୋଶଳ ମଧ୍ୟପ୍ରଦେଶ ବେରାର ରାଜ୍ୟ ମିଶି ଦକ୍ଷିଣ କୋଶଳ ନାମ ହେଲା । ସିଂହଳ ଆଦି ରାଜ୍ୟମାନ କଳିଙ୍ଗରୁ ବିଚ୍ଛିନ୍ନ ହୋଇ ସ୍ୱାଧୀନ ହୋଇଗଲା । କେବଳ ଐର ବଂଶୀୟ ରାଜାଙ୍କ ହସ୍ତରେ ତୋସଳ ଅଂଶଟି ରହିଲା । ଏହାର ରାଜଧାନୀ ତୋସଳୀ ବା ତୋଷଳୀ ଅଟେ । ଦକ୍ଷିଣ କୋଶଳ ରାଜ୍ୟ ଖଣ୍ଡ ୨ ହୋଇ ଅନ୍ୟାନ୍ୟ ରାଜାମାନଙ୍କ ଅଧିକୃତ ହୋଇ ଖଣ୍ଡ ୨ ରାଜ୍ୟ ମାନଙ୍କରେ ପରିଣତ ହୋଇଗଲା ।

---

## ଶ୍ରୁତାୟୁ ଐର ।

### ୧୯୦୦ ବା ୨୦୦୦ ଖ୍ରୀ: ପୂ: ଅ:

ଏହି ଐର ବଂଶରେ ଶ୍ରୁତାୟୁ ନାମକ ଜଣେ ରାଜା କଳିଙ୍ଗ ରାଜ୍ୟର ରାଜା ହୋଇଥିଲେ । ତାଙ୍କର ଗୋଟିଏ ଝିଅ ଥିଲା । ନାମ ଭାନୁମତୀ । ସେ ହସ୍ତିନା ବା ଦିଲ୍ଲିର ରାଜା ଦୁର୍ଯ୍ୟୋଧନଙ୍କୁ ବିବାହ ହୋଇଥିଲେ । କୁରୁ ପାଣ୍ଡବ ମଧ୍ୟରେ ଯୁଦ୍ଧ ହେବାରୁ ଯୁଦ୍ଧରେ କୁରୁଦଳ ପରାଜିତ ହେଲେ । ଶ୍ରୁତାୟୁ ସେହି ଯୁଦ୍ଧରେ ପରଲୋକ ଗମନ କଲେ

## ଶ୍ରୁତାୟୁଙ୍କର ବଂଶଧରମାନେ

### ୧୮୦୦ ଖ୍ରୀ:ପୂ: ଅ:ରୁ ୧୦୦୦ ଖ୍ରୀ:ପୂ:ଅ

ଶ୍ରୁତାୟୁଙ୍କ ପରେ ତାଙ୍କର ବଂଶଧରମାନେ ତୋସଳୀ ରାଜଧାନୀରେ ୩୨ ପୁରୁଷ ପର୍ଯ୍ୟନ୍ତ ରହି କଳିଙ୍ଗ ରାଜ୍ୟ ଶାସନ କରୁଥିଲେ । ସେମାନେ ମଧ୍ୟ କାଳକ୍ରମେ ଦୁର୍ବଳ ହୋଇ ପଡ଼ିବାରୁ ଉତ୍କଳ ଓ କଳିଙ୍ଗ ରାଜ୍ୟ ହରାଇ କେବଳ ତୋସଳ,

ରାଜ୍ୟ ଶାସନ କରିବାକୁ ଲାଗିଲେ । ଶେଷରେ ସେମାନେ ମଧ୍ୟ ଅନ୍ୟ ବିଜୟୀ ରାଜା ଦ୍ୱାରା ପରାସ୍ତ ହୋଇ ସେହି ରାଜାଙ୍କ ସାମନ୍ତ ରାଜା ପରି ହୋଇ ଶାସନ କରୁଥିଲେ ।

## ଦେବରକ୍ଷିତ ରାଜା ଓ ତାହାଙ୍କର ବଂଶଧରମାନେ

### ପ୍ରାୟ ୧୦୦୦ ଖ୍ରୀ:ପୂ:ଅ:

ପୂର୍ବ କଥିତ ବିଜୟୀ ରାଜାଙ୍କ ନାମ ଦେବରକ୍ଷିତ ଅଟେ । ସେ ଶୈବ ବଂଶର ଶେଷ ରାଜାଙ୍କୁ ପରାସ୍ତ କରି ରାଜ୍ୟକୁ ନିଜ ଅଧୀନରେ ରଖିଲେ । ତତ୍‌ପରେ ସେ କୋଶଳ, ଉଡ୍ର, ତାମ୍ରଲିପ୍ତ, ସମୁଦ୍ର ତଟସ୍ଥ ଜନପଦ ସମୂହ ଗୋଟି ୨ କରି ଅଧିକାର କଲେ । ସମସ୍ତ ବିଜିତ ରାଜ୍ୟକୁ କୋଶଳ ନାମ ଦେଲେ ଓ ରାଜଧାନୀ କୁଣ୍ଡଳୀରେ ସ୍ଥାପନ କରିଥିଲେ । ଏହି ଦେବ ରକ୍ଷିତ ରାଜାଙ୍କ ପରେ ତାଙ୍କର ବଂଶଧରମାନେ କେତେ ବର୍ଷ ପର୍ଯ୍ୟନ୍ତ ଏହି ରାଜ୍ୟ ଶାସନ କଲେ ।

---

## ଗୁହ୍ୟ ବଂଶୀୟ ରାଜା ଓ ତାଙ୍କ ପୁତ୍ରମାନେ ।

### ପ୍ରାୟ ୮୦୦ ଖ୍ରୀ:ପୂ:ଅ

ଦେବ ରକ୍ଷିତ ବଂଶୀୟ ରାଜାଙ୍କ କେତେ ପୁରୁଷ ପରେ ଗୁହ ବଂଶର ଜଣେ ରାଜା ଏହି ବଂଶର ଏକ ରାଜାଙ୍କ ସଙ୍ଗରେ ଲଢ଼ାଇ କରି ଜୟ କଲେ ଓ କୋଶଳ ରାଜ୍ୟ ଅଧିକାର କଲେ । ସେହି ଗୁହ ବଂଶର ବିଜୟୀ ରାଜା ସସାଗର ତାମ୍ରଲିପ୍ତ, ଅନ୍ଧ୍ର ରାଜ୍ୟ, ପୌଣ୍ଡ୍ର ରାଜ୍ୟ ଜୟ କଲେ । କୋଶଳ ଓ ତୋଷଳର ରାଜା ତାଙ୍କର ସାମନ୍ତ ରାଜା ହୋଇ ରହିଲେ ।

---

## ଶ୍ରାବସ୍ତିର ସୂର୍ଯ୍ୟବଂଶୀୟ ବ୍ରହ୍ମଦତ୍ତ ବା ବ୍ରହ୍ମଦନ୍ତ ଓ ତାଙ୍କର ଉତ୍ତରାଧିକାରିମାନେ ।

### ପ୍ରାୟ ୫୬୩ ଖ୍ରୀ: ପୂ: ଅ;

ଉତ୍ତର କୋଶଳ ଓ ଦକ୍ଷିଣ କୋଶଳ ନାମରେ କୋଶଳ ଯେଉଁ ଦୁଇ ଅଂଶରେ ବିଭକ୍ତ ହୋଇଥିଲା ତହିଁର ଦକ୍ଷିଣ କୋଶଳକୁ କାଶୀ କୋଶଳ ମଧ୍ୟ କୋହୁଥିଲା । ଏହି କାଶୀ କୋଶଳ ବା ଦକ୍ଷିଣ କୋଶଳ ପଶ୍ଚିମରେ ମଧ୍ୟପ୍ରଦେଶ ବେରାର ଗଣ୍ଡୋୟାନ (ଛତିଶଗଡ଼) ଆଦି ମିଶ୍ରିତ ହୋଇ ଉତ୍ତରାକୁ ବୃଦ୍ଧି ପାଇବାରୁ ସମଗ୍ର ମହା କୋଶଳ ନାମରେ ପରିଚିତ ହୋଇଥିଲା । ଉତ୍ତର କୋଶଳ ଅଯୋଧ୍ୟା ଓ ଶ୍ରାବସ୍ତି ଦୁଇଭାଗରେ ବିଭକ୍ତ ହୋଇଗଲା । ଏହି ଦୁଇଭାଗରେ ସୂର୍ଯ୍ୟ-ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । କିନ୍ତୁ ଅଯୋଧ୍ୟାର ରାଜାମାନଙ୍କ ଅପେକ୍ଷା ଶ୍ରାବସ୍ତିର ରାଜାମାନେ କ୍ଷମତାଶାଳୀ ହୋଇ ଉଠିଲେ । ତେଣୁ ସେହି ଶ୍ରାବସ୍ତିର ରାଜାମାନେ କ୍ରମେ କ୍ରମେ ଅଯୋଧ୍ୟା ଓ ଦକ୍ଷିଣ କୋଶଳ ଅଧିକାର କଲେ । ସେହି ସୂର୍ଯ୍ୟବଂଶରେ ବ୍ରହ୍ମଦତ୍ତ ବା ବ୍ରହ୍ମଦନ୍ତ ନାମରେ ଜଣେ ରାଜା ଥିଲେ । ସେ ଗୁପ୍ତବଂଶୀୟ ରାଜାଙ୍କର ତାମ୍ରଲିପ୍ତ, ପୌଣ୍ଡ୍ର, କୋଶଳ, ଅନ୍ଧ୍ରରାଜ୍ୟମାନ ଓ ଦେଶ ଦକ୍ଷିଣ ରାଜାଙ୍କର ଅଧି-କୃତ ଚମ୍ପାରନ, ଉତ୍କଳ, କଳିଙ୍ଗ, ମଗଧ ଅଧିକାର କଲେ । ସେ ବୌଦ୍ଧଧର୍ମାବଲମ୍ବୀ ରାଜା ଥିଲେ । ସେ ବୁଦ୍ଧ ଦେବଙ୍କର ଗୋଟିଏ ଦାନ୍ତ ନେଇ ଦନ୍ତ ପୁରରେ ସ୍ଥାପନ କରିଥିଲେ ଓ ବୌଦ୍ଧ ଧର୍ମକୁ ରାଜଧର୍ମ କରି ପ୍ରଚାର କରିଥିଲେ । ବ୍ରହ୍ମଦତ୍ତ ତାଙ୍କର ଝିଅ କ୍ଷେମଙ୍କୁ ମଗଧରାଜା ବିମ୍ବିସାରଙ୍କୁ ବିବାହ ଦେଇ କାଶୀରାଜ୍ୟ ଯୌତୁକ ଦେଇଥିଲେ । ବ୍ରହ୍ମଦତ୍ତ ସନ୍ନ୍ୟାସୀ

ହେବାରୁ ତାଙ୍କର ପୁତ୍ର ପ୍ରସେନଜିତ୍ ଶାବସ୍ତିରେ ରାଜା-
ହେଲେ ।

ବିମ୍ବିସାରଙ୍କ ପୁତ୍ର ଅଜାତ ଶତ୍ରୁ ତାଙ୍କର ପିତାମାତାଙ୍କୁ ଅନାହାରରେ ରଖିବାରୁ ପ୍ରସେନ୍‌ଜିତ କାଶୀରାଜ୍ୟ ଜପ୍ତ କଲେ । ତେଣୁ ଅଜାତ ଶତ୍ରୁ ତାଙ୍କସଙ୍ଗେ ଯୁଦ୍ଧକରି ହାର-ଗଲେ । ତଥାପି ପ୍ରସେନଜିତ୍ ତାଙ୍କୁ ନିଜଦୁହିତା ପ୍ରଦାନ କରି କାଶୀରାଜ୍ୟ ପୁନରପି ଯୌତୁକ ଦେଲେ । ପ୍ରସେନ-ଜିତ୍‌ଙ୍କର ପୁତ୍ର ବିରୁଦ୍ଧକ,ସେ ପିତା ପ୍ରସେନଜିତଙ୍କୁ ଅତ୍ୟାଗ୍ରହ କରିବାରୁ ସେ ଅଜାତ ଶତ୍ରୁ ଙ୍କଠାରୁ ଯିବା ମାର୍ଗରେ ମୃତ ହେଲେ । ବିରୁଦ୍ଧକ ରାଜା ହେଲେ ଓ କେତେକ ବର୍ଷ ପରେ ମୃତ ହେଲେ । —✱-✱—

## ମଗଧର ଶିଶୁନାଗବଂଶୀୟ ଅଜାତଶତ୍ରୁ ଓ ତାଙ୍କର ପୁତ୍ରମାନେ ।

ବିରୁଦ୍ଧକଙ୍କ ମୃତ୍ୟୁପରେ ଅଜାତଶତ୍ରୁ କୋଶଳ ଓ ଶାକ୍ୟ ରାଜ୍ୟମାନ ଜପ୍ତ କଲେ । ତେଣୁ ଅଜାତଶତ୍ରୁଙ୍କ ଅଧୀନରେ ମଗଧ, ବଙ୍ଗ: ବୈଶାଳୀ; (ଉତ୍ତର ବିହାର) କପିଳବାସ୍ତୁ ଓ କୋଶଳ ରାଜ୍ୟମାନ ରହିଲା । ସେ ଚମ୍ପାରନକୁ ଅପଣାର ରାଜଧାନୀ କରାଇଲେ । ଅଜାତ ଶତ୍ରୁ ୫୨୩ ଖ୍ରୀ:ପୂ:ଅ:ରେ ମୃତ ହେଲେ ! ଅଜାତଶତ୍ରୁଙ୍କ ପରେ ତାଙ୍କପୁତ୍ର ଦର୍ଶକ ମଗଧ ସିଂହାସନରେ ଅଭିଷିକ୍ତ ହେଲେ ଓ ୪୬୦ଖ୍ରୀ:ପୂ:ଅ: ପର୍ଯ୍ୟନ୍ତ ଶାସନକରି ପରଲୋକ ଗମନ କଲେ । ତାଙ୍କପରେ ତାଙ୍କପୁତ୍ର ଉଦୟାଶ୍ୱ ରାଜା ହେଲେ । ସେ ୪୬୦ ଖ୍ରୀ:ପୂ:ଅ;ରେ କୁସୁମ ପୁର ( ବର୍ତ୍ତମାନର ବାଙ୍କିପୁର ) ନିର୍ମାଣ କଲେ । ଏହି ସମୟରେ ପାଟଳିପୁତ୍ର ଅତିଶୟ ଉନ୍ନତ ଲାଭକଲା । ଉଦୟାଶ୍ୱ

୪୩୧ ଖ୍ରୀ; ପୂ: ଅ: ପର୍ଯ୍ୟନ୍ତ ରାଜତ୍ୱ କଲେ । ତାଙ୍କ ପରେ ତାଙ୍କ ପୁତ୍ର ନନ୍ଦବର୍ଦ୍ଧନ ରାଜା ହେଲେ । ସେ ୪୨୦ ଖ୍ରୀ: ପୂ: ଅ: ପର୍ଯ୍ୟନ୍ତ ରାଜତ୍ୱ କଲେ ଏହି ରାଜାମାନେ ରାଜ୍ୟକୁ ଅତି ଦୃଢ଼ଭାବରେ ରକ୍ଷାକରଥିଲେ । କୌଣସି ରାଜା ଏହାଙ୍କୁ ଆକ୍ରମଣ କରି ନ ଥିଲେ । କିମ୍ବା ଏମାନେ ତାହାକୁ ଆକ୍ରମଣ କରି ନ ଥିଲେ । ମହାନନ୍ଦୀ ୪୦୬ ଖ୍ରୀ: ପୂ: ଅ:ରେ ପରଲୋକ ଗମନକଲେ । ତତ୍ପରେ ତାଙ୍କ ପୁତ୍ର ପିଞ୍ଜମଖ ରାଜା ହେଲେ । ସେ ଜଣେ ଦୁର୍ବଳ ରାଜା ଥିଲେ । ତାଙ୍କର ଜଣେ ଅନ୍ତର ଭାଇ ଥିଲେ । ତାଙ୍କର ନାମ ନନ୍ଦ ଥିଲା । ନନ୍ଦ ମହାନନ୍ଦୀଙ୍କର ରକ୍ଷିତା ସ୍ତ୍ରୀର ପୁତ୍ର । ସେ କେତେକ ସୈନ୍ୟ ସଂଗ୍ରହ କରି ପିଞ୍ଜମଖଙ୍କୁ ଆକ୍ରମଣ କରି ପାଟଳିପୁତ୍ର ନଗର ଦଖଲ କଲେ ଓ ପିଞ୍ଜମଖଙ୍କୁ ଯୁଦ୍ଧରେ ବିନାଶ କରି ମଗଧ ସିଂହାସନ ଅଧିକାରକରି ଅଭିଷିକ୍ତ ହେଲେ । ଏହି ଘଟନା ୪୦୫ ଖ୍ରୀ: ପୂ: ଅ:ରେ ଘଟିଥିଲା । ଅଜାତଶତ୍ରୁ କୋଶଳ ରାଜ୍ୟକୁ ଜୟ କଲା ଦିନରୁ ତାହାଙ୍କର ଉତ୍ତରାଧିକାରୀ ମହାନନ୍ଦୀଙ୍କ ପର୍ଯ୍ୟନ୍ତ ଦକ୍ଷିଣ କୋଶଳ ସେମାନଙ୍କର ଅଧୀନରେ ଥିଲା ।



## ମଗଧର ନନ୍ଦ ଓ ତାଙ୍କର ପୁତ୍ରଗଣ ମାନେ

୪୦୫ ଖ୍ରୀ: ପୂ: ଅ: ରୁ ୩୧୩ ଖ୍ରୀ: ପୂ: ଅ: ପର୍ଯ୍ୟନ୍ତ ।

ନନ୍ଦ ମଗଧ ସିଂହାସନ ପାଇ ସୈନ୍ୟ ବଢ଼ାଇ ପ୍ରବଳ ପରାକ୍ରାନ୍ତ ହେଲେ । ଓ ୧୬ ଜଣ ପରାକ୍ରମୀ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ଅନେକ ସମ୍ପତ୍ତି ଲାଭ କରିଥିଲେ । ତେଣୁ ନନ୍ଦ ମହାପଦ୍ମ ଉପାଧି ଧାରଣ କଲେ । ଏହାଙ୍କର ରାଜତ୍ୱ ସମ-

ୟରେ ଏଲେକଜାଣ୍ଡର ଭାରତକୁ ଆକ୍ରମଣ କଲେ । କିନ୍ତୁ ମଗଧ ପର୍ଯ୍ୟନ୍ତ ଆସି ପାରିଲେ ନାହିଁ ( ୩୨୭ ଖ୍ରୀ: ପୂ: ଅ: ) ସେ ସମୟରେ ମଗଧ ସାମ୍ରାଜ୍ୟର ନାମ ପ୍ରାଶୀ ବା ପ୍ରାଚୀ ଏବଂ ଗଙ୍ଗର ତୀର ବା ଗଙ୍ଗାରାଷ୍ଟ୍ର, ଏକତ୍ର ଥିଲା । ମହାପଦ୍ମନନ୍ଦ ଉଭୟ ରାଜ୍ୟକୁ ଶାସନ କରୁଥିଲେ । କିନ୍ତୁ ତୋଷଳର ବୀର ରାଜା ବିଦ୍ରୋହ କରି ସ୍ୱାଧୀନ ହେଲେ ।



## ଦ୍ୱିତୀୟ ବୀରବଂଶୀୟ ଜଣେ ବୀରରାଜା ।।

## ଚତୁର୍ଥ ଶତାବ୍ଦି ଖ୍ରୀ:ପୂ:

ତୋସଳାର ବୀର ରାଜା ମଗଧ ସମ୍ରାଟ ମହାପଦ୍ମ ନନ୍ଦଙ୍କର ଅଧୀନରେ ଥିଲେ । ସେ ଅନେକ ସୈନ୍ୟ ସଂଗ୍ରହ କରି ନନ୍ଦଙ୍କ ସଙ୍ଗରେ ଯୁଦ୍ଧ କଲେ । ତୁମୂଳ ଯୁଦ୍ଧହେଲା । ଶେଷରେ ନନ୍ଦ ପରାଜିତ ହେଲେ, ଏହି ବୀର ରାଜା ନନ୍ଦଙ୍କ ପ୍ରାଣବିନାଶ ନ କରି ପୀଣାଦ ନାମକ ନଗରରେ କଏଦ କରି ରଖିଲେ । ଏବଂ ସମସ୍ତ କଳିଙ୍ଗରାଜ୍ୟକୁ ଅଧିକାର କରି ପୂର୍ବ ପରି ସ୍ୱାଧୀନ ହେଲେ । କୁଳଳରେ ଏକ ପ୍ରସ୍ତର, ଗଞ୍ଜାମରେ ଦନ୍ତପୁର ବା ପାଟଲି ପୁତ୍ର, ତୋସଳରେ ତୋସଳା ଓ କୋଶଳରେ କୋଶଳ (ଅଧୁନିକ କଂଶିଳ) ରାଜଧାନୀମାନ ସ୍ଥାପନକଲେ; ତାଙ୍କ କେନ୍ଦ୍ର ରାଜଧାନୀ ତୋସଳା ଥିଲା । ଏହି ବୀର ରାଜାଙ୍କର ୬୦୦୦୦ ପଦାତିକ ଓ ୧୦୦୦୦ ଅଶ୍ୱାରୋହୀ ସୈନ୍ୟ ଥିଲେ । ତାଙ୍କର ଉତ୍ତର ପୂର୍ବସୀମା ଗଙ୍ଗା ନଦୀ ପର୍ଯ୍ୟନ୍ତ ଥିଲା । ଏ ସମସ୍ତ ରାଜ୍ୟର ନାମ ଗଙ୍ଗାରାଷ୍ଟ୍ର ବା କଳିଙ୍ଗ ଥିଲା ।



## କଳିଙ୍ଗସେନ ଚତୁର୍ଥଶତାବ୍ଦି ।

ଏହି ନବ ସ୍ୱାଧୀନତା ଲାଭକାରୀ ବୀର ରାଜାଙ୍କ ପରେ ତାଙ୍କର ଉତ୍ତରାଧିକାରୀ କଳିଙ୍ଗସେନ ନାମକ ଜଣେ ଗଙ୍ଗାବଂଶୀ ବା କଳିଙ୍ଗ ରାଜ୍ୟକୁ ଶାସନ କରୁଥିଲେ ।

## ମଗଧର ମୌର୍ଯ୍ୟବଂଶୀୟ ଅଶୋକ ।
### ୩୧୬ ଖ୍ରୀ:ପୂ:ରୁ ୨୮୦ ଖ୍ରୀ: ପୂ:ଅ:ପର୍ଯ୍ୟନ୍ତ

ନନ୍ଦରାଜାଙ୍କର ଅନ୍ତର ପୁତ୍ର ଚନ୍ଦ୍ରଗୁପ୍ତ ତାଙ୍କର ପିତା ଓ ଭାଇମାନଙ୍କୁ ବିନାଶ କରି ମଗଧର ଗାଦୀ ଅଧିକାର କଲେ । ଆଉ ମଗଧର ବିଶାଳ ସୈନ୍ୟ ବଳରେ ପ୍ରାୟ ସମସ୍ତ ଉତ୍ତର ଭାରତବର୍ଷ ଜୟ କଲେ । ତାଙ୍କର ରାଜ୍ୟ ପାରସ୍ୟ ସୀମାରୁ ଓ ହିନ୍ଦୁକୁଶରୁ ବଢ଼ିଥିଲା । ତାଙ୍କର ପରେ ତାଙ୍କ ପୁତ୍ର ବିନ୍ଦୁସାର ମଗଧର ସମ୍ରାଟ ହେଲେ । ସେ ନିଜେ ସମସ୍ତ ରାଜକାର୍ଯ୍ୟ ପ୍ରତିଦୃଷ୍ଟି ଦେଉଥିଲେହେଁ ମନ୍ତ୍ରୀମାନଙ୍କ ଦ୍ୱାରା ରାଜ୍ୟ ପରିଚାଳିତ ହେଉଥିଲା । ରାଧାଗୁପ୍ତ ତାଙ୍କର ପ୍ରଧାନ ମନ୍ତ୍ରୀ ଥିଲେ । ବିନ୍ଦୁସାରଙ୍କ ୧୬ ଗୋଟି ରାଣୀ ଥିଲେ । ସେମାନଙ୍କ ଗର୍ଭରୁ ଏକଶତ ପୁତ୍ର ଜାତ ହୋଇଥିଲେ । ତତ୍ପରେ ସେ ଜଣେ ବ୍ରାହ୍ମଣୀକୁ ବିବାହ କଲେ । ଏହି ବ୍ରାହ୍ମଣୀ ରାଜ ପରିବାର ମଧ୍ୟରେ ଭଣ୍ଡାରୁଣୀ କାର୍ଯ୍ୟ କରୁଥିବାରୁ ଏହାଙ୍କୁ ଭଣ୍ଡାରୁଣୀ ବୋଲି କହୁଥିଲେ । ଏହାଙ୍କର ଗର୍ଭରୁ ଦୁଇଟି ପୁତ୍ର ଜାତ ହେଲେ ଅଶୋକ ଓ ବିତଶୋକ । ଅଶୋକ ଯୁବରାଜ ଥିବା ସମୟରେ ଜଣେ ବନୃ ବ୍ୟବସାୟୀର ଦୁହିତାଙ୍କ ପାଣି ଗ୍ରହଣ କଲେ । ତାଙ୍କର ଗର୍ଭରୁ ମହେନ୍ଦ୍ର ନାମକ ଏକପୁତ୍ର ଓ ସଂଘମିତ୍ରା ନାମ୍ନୀ ଏକ ଦୁହିତା ଜାତ ହେଲେ । ବିନ୍ଦୁସାର ପୀଡ଼ାଗ୍ରସ୍ତ ହେବାରୁ ତାଙ୍କର ପ୍ରଧାନ ମନ୍ତ୍ରୀ ରାଧାଗୁପ୍ତ

ବିନ୍ଦୁସାରଙ୍କ ପ୍ରତିନିଧିରେ ରାଜ୍ୟ ଚଳାଇବାକୁ ଅଶୋକଙ୍କୁ ନିଯୁକ୍ତ କଲେ । ବିନ୍ଦୁସାର ପରଲୋକ ହେବାରୁ ଅଶୋକ ଗାଦୀରେ ଉପବିଷ୍ଟ ହେଲେ । ଦାବିଦାରମାନେ ଯୁଦ୍ଧରେ ଅଶୋକଙ୍କ ଦ୍ୱାରା ପରାଜିତ ହେଲେ । ଏପରି ମଗଧରେ ଅଶୋକଙ୍କ ଅଧିକାର ଅକ୍ଷୁନ୍ନ ରହିଲା । ସେ ପ୍ରଥମରେ ଶୈବ ଧର୍ମାବଲମ୍ବୀ ଥିଲେ । ପରଶେଷରେ ବୌଦ୍ଧ ଧର୍ମ ଗ୍ରହଣ କଲେ । ତାହାଙ୍କର ଅଭିଷେକୋତ୍ସବର ନଅ ବର୍ଷପରେ ସେ ବିଶାଳ ସୈନ୍ୟ ସାମନ୍ତ ପଠାଇ ଦିଗ୍‌ବିଜୟ କରିବାକୁ ଲାଗିଲେ । ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ ସମୟରେ ସମସ୍ତ ଭାରତବର୍ଷ ମଗଧର ଅଧୀନ ଥିଲା । କିନ୍ତୁ କଳିଙ୍ଗ, ଚେର, ଚୋଳ, ପାଣ୍ଡ୍ୟର ରାଜାମାନେ ସ୍ୱାଧୀନ ଥିଲେ । ତେଣୁ ଅଶୋକ କଳିଙ୍ଗସେନ ନାମକ କଳିଙ୍ଗ ରାଜାଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପ୍ରଥମେ ସୈନ୍ୟ ପଠାଇଲେ । କଳିଙ୍ଗସେନ ଯୁଦ୍ଧରେ ପରାସ୍ତ ହେବାରୁ କଳିଙ୍ଗ ରାଜ, ଗଞ୍ଜାମ, ଆଦି ରାଜ୍ୟ ଅଶୋକଙ୍କୁ ସମର୍ପଣ କରି ଦେଇ ତାଙ୍କ ସହ ସନ୍ଧି ସ୍ଥାପନ କଲେ ଓ ସେ ନିଜେ କୋଶଳ ଛାଡିଦେଇ କୋଶଳରେ ଅଶୋକଙ୍କର ସାମନ୍ତ ରାଜା ହୋଇ ରାଜତ୍ୱ କଲେ । ମହାନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ଅଶୋକଙ୍କ ଅଧିକୃତ ହେଲା । ଏହି ଯୁଦ୍ଧପରେ ରାଜା ଅଶୋକ ବୌଦ୍ଧ ଧର୍ମ ଗ୍ରହଣ କଲେ । ଅଧିକୃତ ରାଜ୍ୟର ସ୍ଥାନେ ୨ ବୌଦ୍ଧ ମନ୍ଦିର ମାନ ନିର୍ମାଣ କରାଇ ଥିଲେ । ତାହାଙ୍କର ଆଦେଶରେ କୋଶଳ ରାଜଧାନୀରେ ବୌଦ୍ଧ ମନ୍ଦିର ନିର୍ମିତ ହୋଇଥିଲା । ଏହି ମନ୍ଦିରର ଭଗ୍ନାଂଶ ଏ ପର୍ଯ୍ୟନ୍ତ ଏହି କଅଁଶିଳ ନିକଟସ୍ଥ ରାଣୀପୁର ଗ୍ରାମରେ ରହି ଅଛି । ଓ ସ୍ଥାପିତ ହୋଇଥିବା ବୁଦ୍ଧମୂର୍ତ୍ତି ଭଗ୍ନ ସ୍ତୂପ ଉପରେ ପଡ଼ି ରହିଅଛି । ସାଲେଭଟା ଟିଟିଲାଗଡ଼ ଆଦିର ବୌଦ୍ଧ

ମନ୍ଦିରମାନ ଏହି ସମୟରେ ନିର୍ମିତ ହୋଇଥିଲା । ଚିଟିଲଗଡ଼ର ପର୍ବତ ଗୌହ୍ବରେ ଏହି ସମୟରେ ଖନନ କରାଯାଇଥିଲା । ଅଶୋକ ତାଙ୍କର ପ୍ରକାଣ୍ଡ ରାଜ୍ୟକୁ ପାଞ୍ଚଭାଗରେ ବିଭକ୍ତ କରିଥିଲେ । ଓ ପ୍ରତ୍ୟେକ ଭାଗରେ ଜଣେ ୨ ଶାସନ କର୍ତ୍ତା ନିଯୁକ୍ତ କରିଥିଲେ ।

୧—ମଗଧ ଓ ତହିଁର ନିକଟବର୍ତ୍ତୀ ରାଜ୍ୟମାନ ସମ୍ରାଟଙ୍କ ଦ୍ୱାରା ଶାସିତ ହେଉଥିଲା ।

୨—ପଞ୍ଜାବ, କାଶ୍ମିର, ଅଫଗାନିସ୍ଥାନ, ଅଦ ଉତ୍ତର ପଶ୍ଚିମ ପ୍ରଦେଶମାନ, କାନ୍ଦାହାର, ବେଲୁଚିସ୍ଥାନ, ସିନ୍ଧୁ, ଇତ୍ୟାଦିର ରାଜଧାନୀ ତକ୍ଷଶିଳା ଥିଲା । ଓ ଏହା ଶାସନ କରିବାକୁ ଜଣେ ପ୍ରତିନିଧି ନିଯୁକ୍ତ କରିଥିଲେ ।

୩—ରାଜପୁତନା, ଗୁଜରାଟ, ମାଳବ, କାଠିଓ୍ୱାର, ଅଦପଶ୍ଚିମ ପ୍ରଦେଶମାନଙ୍କର ଶାସନ କର୍ତ୍ତା ପଦରେ ନିଜର ଜଣେ ଭଣଜାଙ୍କୁ ନିଯୁକ୍ତ କରିଥିଲେ ।

୪—କଳିଙ୍ଗ, ଉତ୍କଳ, କୋଶଳ, ତୋସଳ, ଅଦ ପୂର୍ବ ପ୍ରଦେଶ ମାନଙ୍କୁ ଶାସନ କରିବାକୁ ଜଣେ ପ୍ରତିନିଧି ନିଯୁକ୍ତକରି ଥିଲେ ।

୫—ଦାକ୍ଷିଣାତ୍ୟର ବିଦଶା ( ଭିଲ୍‌ସା ) ରାଜ୍ୟ ଜଣେ ପ୍ରତିନିଧି ଦ୍ୱାରା ଶାସିତ ହେଉଥିଲା ।

ସେ ବୌଦ୍ଧ ଧର୍ମର ପ୍ରଚାର ନିମନ୍ତେ ଅନେକ ପ୍ରଚାରକ ନିଯୁକ୍ତ କରି ଦେଶ ବିଦେଶକୁ ପଠାଇଥିଲେ । ଅବଶେଷରେ ସମ୍ରାଟ ଅଶୋକ ତାଙ୍କ ବୃଦ୍ଧ ଜୀବନରେ ସ୍ୱର୍ଣ୍ଣ ଗିରି ନଦୀ କୂଳସ୍ଥିତ ତୋଷଲି ବା ତୋସଳୀ ରାଜଧାନୀରେ ଜୀବନ ଯାପନ କରିଥିଲେ । ସେହିଠାରେ ତାଙ୍କର ଜୀବନ ଦୀପ

ନିର୍ମାପିତ ହେଲା । ଏହି ସ୍ୱର୍ଣ୍ଣ ଶିବନଦୀକୁ ଅଜିକାଲି ସୋନ ଗଡ଼ ନଦୀ ବୋଲି କହୁ ଅଛନ୍ତି ଓ ତୋସଲା ରାଜଧାନୀ ଓଡ଼ାସର ଅଟେ ।

---

## ଶୋଭନ ଦେବ

### ପ୍ରାୟ ୨୪୦ ରୁ ୨୨୦ ଖ୍ରୀ: ପୂ: ଅ:

ଶୋଭନ ଦେବ କଳିଙ୍ଗ ରାଜ୍ୟରେ ଅଶୋକଙ୍କର ପକ୍ଷରୁ ଓଡ଼ଶାର ଶାସନ କର୍ତ୍ତା ବା ସାମନ୍ତ ରାଜା ନିଯୁକ୍ତ ହୋଇ ଥିଲେ । ସେ ସୂର୍ଯ୍ୟ ବଂଶୀୟ ଥିଲେ ତେଣୁ ସେ ଜଗନ୍ନାଥଙ୍କ ଉପାସକ ଥିଲେ ଓ ଅଶୋକଙ୍କ ମୃତ୍ୟୁପରେ ତାଙ୍କର ଉତ୍ତରାଧିକାରୀ ମାନଙ୍କର ଅଧୀନରେ ରହିଥିଲେ ।

---

## ଗୁପ୍ତ ଐର ବଂଶର ଚୈତ୍ର ଐର

### ଖ୍ରୀ: ପୂ: ଅ: ୨୨୦ ରୁ ଖ୍ରୀ: ପୂ: ଅ: ୨୦୦

ଅଶୋକଙ୍କ ମୃତ୍ୟୁ ପରେ ତାଙ୍କର ପ୍ରକାଣ୍ଡ ସାମ୍ରାଜ୍ୟ ତାଙ୍କର ପୁତ୍ରମାନଙ୍କ ମଧ୍ୟରେ ବିଭକ୍ତ ହେଲା । ସେମାନେ ପିତାଙ୍କପରି କ୍ଷମତାଶାଳୀ ନ ଥିଲେ ତେଣୁକରି ଅଶୋକଙ୍କ ବିଜିତ ରାଜ୍ୟମାନ ଧୀରେ ୨ ସ୍ୱାଧୀନ ହେବାକୁ ଲାଗିଲା ଏ ସମୟରେ ଚୈତ୍ର ନାମକ ଐରରାଜା ତୋସଲା ରାଜଧାନୀ ତ୍ୟାଗକରି କୋଶଳ ରାଜଧାନୀରେ ରହିଥିଲେ । ଏହି ମତରେ ସେ ତାଙ୍କର ପୂର୍ବ ଅଧିକୃତ ରାଜ୍ୟମାନ ଉଦ୍ଧାର କରିବାକୁ ଚେଷ୍ଟାକଲେ । ଓ ତାଙ୍କର ଭ୍ରାତୃରାଜ୍ୟ ସିଂହଳ ରାଜାଙ୍କୁ ସାହାଯ୍ୟ ମାଗିଲେ । ସେ ବକ୍ରବାହୁ ନାମକ ସେନାପତି ଅଧୀନରେ କେତେ ଯୁଦ୍ଧଜାହାଜ ପଠାଇଲେ । ଚୈତ୍ର

ଖାର ସ୍ଥଳପଥରେ କୋଶଳ ରାଜ୍ୟରୁ ତୋସଳା ରାଜଧାନୀକୁ ଆକ୍ରମଣ କଲେ । ପୁଣି ତେଲନଦୀ ଓ ମହାନଦୀ ପଥରେ ଚତୁର୍ଥରେ ସୈନ୍ୟପଠାଇ କଟକକୁ ଆକ୍ରମଣ କଲେ, ରକ୍ତବାହୁ ସେନାପତି ଚିଲିକାରେ ଯୁଦ୍ଧ ଆରମ୍ଭ କଲେ । ସମୁଦ୍ରରେ ଯୁଦ୍ଧ ଭୟଙ୍କର ଭାବରେ ବାଧିଲା । ଶେଷରେ ଖାର ରାଜା ଜୟୀ ହେଲେ । କିନ୍ତୁ ରକ୍ତବାହୁ ସେନାପତି ଜଳଯୁଦ୍ଧରେ ମାରା ଗଲେ । ଶୋଭନଦେବ ପରାଜିତ ହୋଇ ଜଗନ୍ନାଥଙ୍କୁ ନେଇ ସୋନପୁର ଜଙ୍ଗଲରେ ଲୁଚିଗଲେ । ଏହି ପ୍ରକାରରେ ଖାରରାଜା ଅଶୋକଙ୍କର ମୃତ୍ୟୁର ୧୬ବର୍ଷ ପରେ ପୁନରପି କଳିଙ୍ଗରାଜ୍ୟକୁ ଉଦ୍ଧାର କରି ରାଜାହେଲେ । ଏହି ରକ୍ତବାହୁ ସମ୍ପର୍କର ଯୁଦ୍ଧକୁ ଯବନମାନେ କରିଥିଲେ ଓ ୧୪୬ ବର୍ଷ ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରିଥିଲେ ବୋଲି ଯାହା ଓଡ଼ିଶାର ଇତିହାସରେ ଲେଖାଯାଇଅଛି ତାହା ଯବନ ନୁହେଁ କିନ୍ତୁ ଯଚ୍ଛନ ଅଟେ କାରଣ ଖାରବେଳ ଆଦି ଜୈନ ରାଜାମାନେ ପୂର୍ବକ୍ତ ପର୍ଯ୍ୟନ୍ତ ୧୪୬ ବର୍ଷ ରାଜତ୍ୱ କଲେ । କଳିଙ୍ଗ ସ୍ୱାଧୀନ ହେଲାପରେ କଳିଙ୍ଗରେ ଏକଚକ୍ରପୁର, ଗଞ୍ଜାମରେ ଦନ୍ତପୁର, ତୋସଳରେ ତୋସଳା, ମଧ୍ୟପ୍ରଦେଶ ମିଶ୍ରିତ କୋଶଳରେ ଉଅଁଳ ଓ ଗୁହାରେ ରାଜଧାନୀ ସ୍ଥାପନକରି ପୂର୍ବପରି ଶାସନ କରିବାକୁ ଲାଗିଲେ । ପ୍ରାୟ ୨୦୦ ଖ୍ରୀ: ପୂ: ଅବ୍ଦରେ ଚୈତ୍ର ଖାର ପରଲୋକ ଗମନ କଲେ ।



## ଚୈତ୍ରପୁତ୍ର ପ୍ରାୟ ୨୦୦ ଖ୍ରୀ:ପୂ:ଅ:ରୁ ୧୭୩ ଖ୍ରୀ:ପୂ:ଅ: ପର୍ଯ୍ୟନ୍ତ

ଚୈତ୍ରଙ୍କ ପରେ ତାଙ୍କପୁତ୍ର ରାଜାହେଲେ । ସେ ତୋସ-ଳାରେ ଗୋଟିଏ ଗଡ ନିର୍ମାଣ କରି ଅପୂର୍ଣ୍ଣ ଅବସ୍ଥାରେ ମଲେ ।

ସେହି ଗଡ଼ର ନିର୍ମାଣ କାର୍ଯ୍ୟ ତାଙ୍କ ପୁତ୍ର ଖାରବେଳଙ୍କ ଦ୍ୱାରା ସମାପ୍ତ ହେଲା । ସେ ଗଡ଼ର ନାମ ଖାରବେଳ ଗଡ ବୋଲି କହନ୍ତି । ଏହାକୁ ଆଜକାଲି ଖରଳ ଗଡ଼, ଖଲିଗଡ଼ ବୋଲି କହନ୍ତି । ଏହି ଗଡ଼ର ଅସ୍ତିତ୍ୱ ଏହି ପାଟଣା ଷ୍ଟେଟର ସ୍ୱର୍ଗୀୟ ସୁପରିଣ୍ଟେଣ୍ଡେଣ୍ଟ ସାହେବ ମିଷ୍ଟର ଇ. ଏସ୍, ବଲ୍ଡ଼ୁ ଯ୍ବଇନଙ୍କ ଦ୍ୱାରା ଅବିଷ୍କୃତ ହୋଇଅଛି ।



## ଖାରବେଳ ବୀର ।

### ୧୭୩—୧୪୩ ଖ୍ରୀ:ପୂ:ଅ

ଚୈତ୍ର ରାଜାଙ୍କ ବୃଦ୍ଧ ରୋଗାକ୍ରାନ୍ତ ଥିବାରୁ ତାଙ୍କର ପୁତ୍ର ଖାରବେଳ ୧୫ବର୍ଷ ବୟସରୁ ରାଜ୍ୟଶାସନ କାର୍ଯ୍ୟରେ ନିଯୁକ୍ତ ହୋଇ ଥିଲେ । ପିତାଙ୍କ ମୃତ୍ୟୁ ପରେ ସେ ୨୪ବର୍ଷ ବୟସରେ ସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ ବୀର ବଂଶର ଶ୍ରେଷ୍ଠ ରାଜାଥିଲେ । ସେ ମୂଷିକବା ମୋସଲ ଦେଶ, ଅନ୍ଧ୍ରରାଜ୍ୟ ପାଣ୍ଡ୍ୟ,ଭୋଜକ ଓରାଷ୍ଟ୍ରିକ ରାଜ୍ୟ ଜୟକରି କୋଶଳ ଓ ତୋଷଳ ମିଶ୍ରିତ କଳିଙ୍ଗ ରାଜ୍ୟସଙ୍ଗେ ଯୁକ୍ତ କରିଥିଲେ । ଏହିପରି ଖାରବେଳ କଳିଙ୍ଗ ରାଜ୍ୟର ସୀମା ପଶ୍ଚିମରେ ଆରବ ସାଗର ବା ବମ୍ବାଇ ପର୍ଯନ୍ତ ବଢାଇ ଥିଲେ । ସିନ୍ଧୁ ନଦୀର ପଶ୍ଚିମରେ ପ୍ରାଚୀନ ବଜୀର ରାଜ୍ୟ ଥିଲା । ଖାରବେଳ ସେହି ରାଜାଙ୍କ ସଙ୍ଗେ ଲଢ଼ାଇ କରି ଜୟ କଲେ ଓ ତାଙ୍କର ଝିଅ ଧୃସୀଙ୍କ ପାଣି ଗ୍ରହଣ କଲେ ।

ଅନନ୍ତର ମହାରାଜା ଖାରବେଳ ସମସ୍ତ ଭାରତର ଏକ-ଛତ୍ର ସମ୍ରାଟ ହେବା ଅଭିପ୍ରାୟରେ ବିଶାଳ ବାହିନୀ ସଂଗ୍ରହ କରି ଯୁଦ୍ଧ ଅଭିଯାନ କଲେ । 'ଉତ୍ତର ପଥ' ଉତ୍ତର ପଶ୍ଚିମ ସୀମାନ୍ତ ରାଜ୍ୟମାନ ଜୟ କରି ମଧ୍ୟ ଭାରତ ଦେଇ ପଞ୍ଜାବ

ଆକ୍ରମଣ କଲେ । ଏପରି 'ଜବ୍ବର ପଥର' ସମସ୍ତ ରାଜ୍ୟମାନ ତାଙ୍କର ଅଧିକୃତ ହେଲା । ତହିଁ ଉତ୍ତାରୁ ହିମାଳୟର ତଳେ ତଳେ ଗଙ୍ଗା ନଦୀର କୂଳେ କୂଳେ ପାଟଳିପୁତ୍ର ନଗରକୁ ଆସିବାର ଚେଷ୍ଟା କଲେ । ସେ ହାତୀମାନଙ୍କ ସାହାଯ୍ୟରେ ଗଙ୍ଗାନଦୀ ପାର ହୋଇ ପାଟଳି ପୁତ୍ରକୁ ଆସି ପାଟଳି ପୁତ୍ର ଅବରୋଧ କଲେ । ସେ ସମୟରେ ମଗଧରେ ପୁଷ୍ପମିତ୍ର ନାମକ ରାଜା ମଗଧର ରାଜଧାନୀ ପାଟଳି ପୁତ୍ର ନଗରରେ ରାଜତ୍ୱ କରୁଥିଲେ । ସେହି ପୁଷ୍ପମିତ୍ରଙ୍କ ସଙ୍ଗରେ ଖାରବେଳଙ୍କ ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ମଗଧ ରାଜା ପରାଜିତ ହେଲେ । ରାଜା ଖାରବେଳ ଏହି ସ୍ଥାନରୁ ଅନେକ ଧନ ରତ୍ନ ଲାଭ କଲେ । ମଗଧ ରାଜା ଯେଉଁ ସବୁ ଜୈନ ମୂର୍ତ୍ତିମାନ ନେଇ ରଖିଥିଲେ ସେ ସେଠାରୁ ସେ ସବୁ ଆଣି ଖଣ୍ଡଗିରିରେ ସ୍ଥାପନ କଲେ । ଏହି ଅଭିଯାନରେ ପଞ୍ଜାବ ଠାରୁ ମଗଧ ପର୍ଯ୍ୟନ୍ତ ସମସ୍ତ ରାଜ୍ୟ କଳିଙ୍ଗ ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ରାଜା ଖାରବେଳ ପାଣ୍ଡ୍ୟ ରାଜାଙ୍କୁ ଜୟକରି ଅନେକ ମଣି ରତ୍ନ ପାଇଥିଲେ । ଏହିପରି ଖାରବେଳ ସମସ୍ତ ଭାରତର ଏକଚ୍ଛତ୍ର ସମ୍ରାଟ ହେଲେ ।

ଖାରବେଳ ରାଜା ଜୈନ ଧର୍ମାବଲମ୍ବୀ ଥିଲେ । କିନ୍ତୁ ହିନ୍ଦୁ ଧର୍ମର ମତ ଅନୁସାରେ ସେ ବ୍ରାହ୍ମଣ ମାନଙ୍କୁ ସାମ୍ରାଜ୍ୟ ବିଜୟ ଉପଲକ୍ଷେ ସୁବର୍ଣ୍ଣର ଗଛ ତିଆରି କରି ଦାନ କରିଥିଲେ । କେତେ ଜଣ ବ୍ରାହ୍ମଣଙ୍କୁ ଗ୍ରାମ, ଧନ, ସମ୍ପତ୍ତି ମଧ୍ୟ ଦାନ କରିଥିଲେ । ମଗଧ ରାଜା ନନ୍ଦ ଦେଶର ଉପକାର ନିମନ୍ତେ ଗୋଟିଏ କେନାଲ ଖୋଳାଇ ଥିଲେ । କିନ୍ତୁ ସେ ରାଜଧାନୀ ପର୍ଯ୍ୟନ୍ତ ଆଣି ପାରି ନ ଥିଲେ ବୋଲି ମହାରାଜ ଖାରବେଳ ସେହି କେନାଲକୁ ରାଜଧାନୀ ପର୍ଯ୍ୟନ୍ତ ଖୋଳାଇ ଦେଇଥିଲେ ।

ଇତିହାସ ବାଣିଜ୍ୟ ବ୍ୟବସାୟ ସୁନ୍ଦର ରୂପେ ଚଳୁଥିଲା । ମହାରାଜା ଖାରବେଳଙ୍କ ଅନେକ ସମ୍ପତ୍ତି ଥିଲା । ସେସବୁ ରଖିବା ନିମନ୍ତେ ଝୋସଳା ଗଡ ମଧ୍ୟରେ ଅନେକ ଦୁର୍ଗ ନିର୍ମାଣ କରାଇଲେ । ସେ ସବୁ ଦୁର୍ଗ ଅନେକାନେକ କାରୁକାର୍ଯ୍ୟରେ ପୂର୍ଣ୍ଣ ଥିଲା । ରାଜା ଅନୁସାରୀ-ହୃସାଦ୍, ଅଧିକାର କରି ଶେଷରେ ଯୁଦ୍ଧ କାର୍ଯ୍ୟରୁ ନିବୃତ୍ତ ହୋଇ ପ୍ରଜାମାନଙ୍କର ଶ୍ରୀବୃଦ୍ଧି କରିବାକୁ ଲାଗିଲେ । ସେ ଝୋସଳା ଗଡ ରାଜଧାନୀ ମଧ୍ୟରେ ସୁନ୍ଦର ଦୁର୍ଗ ତିଆରି କରାଇ ତାହାର ଚତୁର୍ଦ୍ଦିଗରେ ଗଡ଼ ନିର୍ମାଣ କରାଇଥିଲେ । ଝୋସଳା ଦୁର୍ଗର ଉତ୍ତରରେ ତେଲ୍ ନଦୀ କୂଳରେ ବୈଦ୍ୟନାଥ ଗଡ଼ ତେଲନଦୀର ମୁହାଣ ନିକଟରେ ଅସୁର ଗଡ, ମହାନଦୀ କୂଳରେ ସୋନପୁର ଗଡ, ଧର୍ମାଗଡ, ହୁମାଗଡ଼, ପଶ୍ଚିମରେ ଜରଗୁଡା ଗଡ଼ ( ଜରସିଂହା ଗଡ଼ ), ବୁଢ଼ିଗଡ଼, ଦକ୍ଷିଣରେ ନବଳା ଓ ମଦନପୁର ତେ ପୂର୍ବରେ ପାମୁଠ ଗଡ ତିଆରି କରାଇ ଥିଲେ । ତାହାର ଭଗ୍ନାଂଶମାନ ଏପର୍ଯ୍ୟନ୍ତ ରହିଅଛି । 'ବଦ୍ୟ ଧରଦାସ' ନାମରେ କେତେକ ଧର୍ମ ମନ୍ଦିର ବା ମଠ ନିର୍ମାଣ କରାଇଥିଲେ ।

ମହାରାଜା ଖାରବେଳ ଭୂମିର କର ନିମନ୍ତେ ସୁନା ଓ ଧାନ ଗ୍ରହଣ କରୁଥିଲେ । ସେ ସବୁ ଝୋସଳା ଦୁର୍ଗ ନିକଟରେ ଗୋଟିଏ ସ୍ଥାନରେ ଗଚ୍ଛିତ କରି ରଖୁ ଥିଲେ । ସେହି ସ୍ଥାନକୁ ଧାନ ଘର ନାମ ଦେଇ ଥିଲେ । ଏ ପର୍ଯ୍ୟନ୍ତ ସେହି ସ୍ଥାନକୁ ଧନଘର ବା ଧାନଘର ବୋଲି କହି ଥାଉ ଅଛନ୍ତି । ଗଡ଼ ନିକଟରେ ସମରାଳୟମାନ ସ୍ଥାପିତ ହୋଇଥିଲା । ପଦାତିକ ସୈନ୍ୟମାନେ ପେଡଁ ସମରାଳୟରେ ବାସ କରୁଥିଲେ ତାହାକୁ ଅଜି କାଲି ମଧ୍ୟ ପାଇକ ସମରା ବୋଲି କହି ଥାଉ ଅଛନ୍ତି । ସୈନ୍ୟ ଛଳାରେ ତାଙ୍କର

ଅନ୍ୟାନ୍ୟ ସୈନ୍ୟମାନେ ବାସ କରୁ ଥିଲେ । ଏହାର ଅଧିନାୟକ ନାମ ସୈନ୍ଧ୍ୱ ଅଟେ । ତାହାଙ୍କର ଅଭ ଗୋଟିଏ ସମଗ୍ରଳସ୍ଥ ଥିଲା ତହିଁରେ ଯୁଦ୍ଧ ସାମଗ୍ରୀ ସବୁ ରକ୍ଷିତ ହେଉ ଥିଲା । ଏହାକୁ ଆଜି କାଲି ଝାଉସମର ବୋଲି କହନ୍ତି । ତୋସଳା ରାଜଧାନୀ ମଧ୍ୟରେ ଗୋଟିଏ ଗୁମ୍ଫୁଜ ନିର୍ମାଣ କରିଥିଲେ ତହିଁରେ ତୋପ ରଖି ଶତ୍ରୁମାନଙ୍କୁ ବିନାଶ କରୁ ଥିଲେ । ତେଣୁ ଏହି ତୋସଳା ବା ତୋସରକୁ ଗୁମ୍ଫୁଜ ଗଡ ବା ଗୁମାଗଡ଼ ବୋଲି ଆଜି କାଲି ମଧ୍ୟ କେହି କହନ୍ତି ।

ସେହି ଗୁମ୍ଫୁଜର ଭଗ୍ନାଂଶ ଏ ପର୍ଯ୍ୟନ୍ତ ଏଠାରେ ରହିଅଛି । ତୋସଳା ଦୁର୍ଗ ନିକଟରେ ଗୋଟିଏ ସ୍ଥାନରେ ଭୂୟାଁ ସୈନ୍ୟ ମାନେ ବାସ କରୁଥିଲେ । ତେଣୁ ଆଜି କାଲି ମଧ୍ୟ ସେହି ଗ୍ରାମକୁ ଭୂୟାଁ ପଡା ବୋଲି କହି ଆସୁ ଅଛନ୍ତି । ଏହି ପର ସମ୍ରାଟ ଖାରବେଳ ସମସ୍ତ ଭାରତ ବର୍ଷର ଏକଛତ୍ର ସମ୍ରାଟ ହୋଇ ୩୦ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ । ପରେ ସେ ବାନପ୍ରସ୍ଥ ଧର୍ମ ଅବଲମ୍ବନ କରି ମଞ୍ଚ ପୁରୀରେ ରାଣୀହଂସପୁର ବା ରାଣୀ ପୁର ନିର୍ମାଣ କରି ତହିଁରେ ବାସ କଲେ । ଏପରି ଭାବରେ ମହାରାଜା ଖାର-ବେଳ ଏହି ମାଟିରେ ଜନ୍ମ ହୋଇ ଏହି ମାଟିରେ ମିଶି ଗଲେ ।



## ସାମନ୍ତ ରାଜା ଭୀମ ଦେବ ।

### ଖ୍ରୀ: ପୂ: ଅ: ୨ୟ ଶତାବ୍ଦିର ୨ୟ ପାଦରେ

ସୂର୍ଯ୍ୟ ବଂଶୀୟ ଭୀମ ଦେବ ପୂର୍ବ କୋଶଳର ଉତ୍ତର ଅଂଶରେ ଅର୍ଥାତ୍ ବର୍ତ୍ତମାନର ବରଗଡ଼ ବୁଢ଼ା ସମ୍ବର ଅଞ୍ଚ-

ଳରେ ରାଜତ୍ୱ କରୁଥିଲେ । ଏହି ଉତ୍ତର ଅଞ୍ଚଳ ଖାରବେଳଙ୍କ ଅଧିକୃତ ଥିବାରୁ ସେ ତାଙ୍କ ସାମନ୍ତ ରାଜା ହୋଇ ରହିଥିଲେ । ସେ ପୂର୍ବରେ କୋଶଳ ଓ ଉତ୍କଳର ଉତ୍ତରାଞ୍ଚଳରେ ଶାସନ କର୍ତ୍ତା ବା ସାମନ୍ତ ରାଜା ହୋଇଥିଲେ । ଖାରବେଳଙ୍କର ସାମ୍ରାଜ୍ୟ ଗଠନ ହେତୁ ଉତ୍କଳର ଉତ୍ତରାଞ୍ଚଳକୁ ତ୍ୟାଗ ଦେଇ କୋଶଳର ଉତ୍ତରାଞ୍ଚଳରେ ରହିଲେ । ଗନ୍ଧ ମାଦନ ପର୍ବତ ତାଙ୍କର ରାଜ୍ୟର ସୀମାରେ ଥିଲା । ଗନ୍ଧ ମାଦନ ପର୍ବତରେ ଭୀମଶୀଳା ଗୃହ ନାମରେ ଏକ ଗୁହା ଅଛି । ଭୀମ ଦେବ ସମୟ ସମୟରେ ଶତ୍ରୁର ଭୟରେ ଏହି ଗୁହାରେ ଯାଇ ରହୁଥିଲେ । ତେଣୁ ତାକୁ ଭୀମ ଶିଳା ଗୃହ ବୋଲି ଯାଏ ।



## କୁଦେପଶିର ଆଦି ୫ ଜଣ ଐର ରାଜା

### ୧୪୩ ଖ୍ରୀ: ପୂ: ଅ: ରୁ ୬୮ ଖ୍ରୀ: ପୂ: ଅ:

କୁଦେପଶିର ଖାରବେଳଙ୍କ ପରେ ସମ୍ରାଟ ହେଲେ । ସେ ପରାକ୍ରମଶାଳୀ ନ ଥିଲେ ତେଣୁ ଭାରତର ଅନ୍ୟାନ୍ୟ ଅଂଶର ରାଜାମାନେ ସ୍ୱାଧୀନ ହେଲେ । କେବଳ କଳିଙ୍ଗ କୋଶଳର ପୂର୍ବ ସୀମାରେ ରହିଲା । ତାଙ୍କପରେ ତାଙ୍କର ଆଉ ୪ ଜଣ ଉତ୍ତରାଧିକାରୀ ଏହି ରାଜ୍ୟକୁ ଶାସନ କଲେ । ଏହି ଐର ରାଜା ମାନେ କଳିଙ୍ଗ ରାଜ୍ୟ ଅର୍ଥାତ୍ ଉତ୍କଳ ଗଞ୍ଜାମ କୋଶଳ ମଧ୍ୟସ୍ଥ ଦେଶ ଓ ବେରରଶାସନ କରୁଥିଲେ ।



## ସାମନ୍ତ ରାଜା ବାବନ ଦେବ ।

### ୧୪୩ ଖ୍ରୀ: ପୂ: ଅ: ରୁ ୧୬୫ ଖ୍ରୀ: ପୂ: ଅ:

ସମ୍ରାଟ ଖାରବେଳ ପଶ୍ଚିମ ଦିଗରେ ଦିଗବିଜୟ କରୁଥିବା ସମୟରେ ସେ କୁଳର ପଶ୍ଚିମ ଦିଗସ୍ଥ ଏକ ସୂର୍ଯ୍ୟ ବଂଶୀୟ ରାଜାଙ୍କୁ ପରାସ୍ତ କରିଥିଲେ । ସେ ସ୍ୱରାଜ୍ୟରୁ ବିଚ୍ୟୁତ ହୋଇ ଅନେକ ସୈନ୍ୟ ଧରି ଆସି ଗନ୍ଧମାଦନ ପର୍ବତର ସର୍ବୋଚ୍ଚ ଶୃଙ୍ଗରେ ଗୋଟିଏ ସୁଦୃଢ଼ ଗଡ ନିର୍ମାଣ କରି ତହିଁରେ ବାସ କଲେ । ସେ କ୍ରମେ୨ ତହିଁର ନିକଟବର୍ତ୍ତୀ ଗ୍ରାମ ମାନଙ୍କୁ ଅଧିକାର କଲେ ଓ ଧୀରେ୨ ଅଧିକୃତ ଜନପଦ ମାନଙ୍କର ପରିଧି ବୃଦ୍ଧି କରିବାକୁ ଲାଗିଲେ । ସେହି ରାଜ୍ୟ ଶେଷରେ କୋଶଳ ଦେଶ ନାମରେ ପରିଚିତ ହେଲା । ତାହାଙ୍କର ନିର୍ମିତ ଗଡ଼ଟି ଆଜିକାଲି ପାଟଣା ଷ୍ଟେଟର ଟପୋଗ୍ରାଫି ନକ୍ସାରେ 'Ruined fort' ନାମରେ ଚିହ୍ନିତ ହୋଇଅଛି । ଏଥିରେ ପ୍ରଜା ଇଟା ସୁଦ୍ଧା ଲଗାଇ ଥିଲେ । ସେହି ଗଡ ଥିବା ଶୃଙ୍ଗର ଦକ୍ଷିଣ ଦିଗରେ ଗୋଟିଏ ପଥରର କାନ୍ଥ ନିର୍ମାଣ କରାଇ ଥିଲେ । ତହିଁରେ ବନ୍ଧୁକ ରଖି ଶତ୍ରୁଙ୍କୁ ବିନାଶ କରୁଥିଲେ । ଗଡବାସୀମାନଙ୍କ ଜଳ କଷ୍ଟ ଦୂର କରିବାକୁ ସେହି ଗଡ଼ ମଧ୍ୟରେ "ଅଡ଼କଟା" ନାମରେ ଗୋଟିଏ ଜଳାଶୟ ନିର୍ମାଣ କରିଥିଲେ ।

ଏହି ରାଜା ଧୀରେ୨ ରାଜ୍ୟ ବୃଦ୍ଧି କରୁ ଥିବାର ଦେଖି ତୋସଳୀ ରାଜଧାନୀରୁ କଳିଙ୍ଗ ରାଜା ସୈନ୍ୟ ସାମନ୍ତ ନେଇ ତାଙ୍କ ସହିତରେ ଯୁଦ୍ଧ ଆରମ୍ଭ କଲେ । ଅନେକ ଚେଷ୍ଟା କରି ସୁଦ୍ଧା ସେ ଦୁର୍ଗ ମଧ୍ୟରେ ପ୍ରବେଶ କରି ପାରିଲେ ନାହିଁ । ପରିଶେଷରେ କଳିଙ୍ଗ ରାଜା ନିରୁପାୟ ହୋଇ ତାଙ୍କ ସହିତ ସନ୍ଧିକରି ନିଜ ଦୁହିତା ସୁଲୋଚନାଙ୍କୁ ତାଙ୍କ ସହିତ ବିବାହ

କର ଦେବେ । ତାହାଙ୍କ ଗର୍ଭରୁ ଗୋଟିଏ କୁମାର ଜନ୍ମ-ଗ୍ରହଣ କଲା । କୁମାରଙ୍କ ଏକୋଇଶିଯ଼ା ବଧ୍ ପୂର୍ବରୁ ପୂର୍ବ-ବର୍ଣ୍ଣିତ ଭୀମଦେବ ନାମକ ସୂର୍ଯ୍ୟବଂଶୀଯ଼ ରାଜା ତାଙ୍କୁ ଚୋରାଇ ନେଇଗଲେ । ଏହି ଭୀମ ଦେବ କୋଶଳର ଉତ୍ତରାଞ୍ଚଳ ଅର୍ଥାତ୍ ବୃନ୍ଦାସମ୍ବର ଓ ବରଗଡ଼ ଅଞ୍ଚଳର ରାଜା ଥିଲେ । ତାଙ୍କର ପୁତ୍ରାଦ ନଥିବାରୁ ଏହି ଶିଶୁକୁ ଚୋରାଇ ନେଇ ନିଜରାଜ୍ୟରେ ରଖିଲେ । ଗନ୍ଧମାଦନ ପର୍ବତ ତାଙ୍କ ରାଜ୍ୟର ସୀମା ମଧ୍ୟରେ ଥିଲା । ତେଣୁ ସେ ପୂର୍ବରେ ସେଠାରେ ଗୋଟିଏ ଗୁମ୍ଫା (ଗହ୍ୱର) ତଯ଼ାର କରିଥିଲେ । ତାହାର ନାମ ଭୀମଶିଳା ଗୃହ ଥିଲା । ସେ ପ୍ରଥମରେ ଅପହୃତ ଶିଶୁକୁ ଏହି ଗୁମ୍ଫା ମଧ୍ୟରେ ଲୁଚାଇ ରଖିଥିଲେ । ପରେ ତାଙ୍କୁ ନିଜ ରାଜ୍ୟକୁ ନେଇଗଲେ ।

ବାବନ ରାଜା ସେହି ଶିଶୁକୁ ଅନେକ ତଲାସ କଲେ କିନ୍ତୁ ପାଇଲେ ନାହିଁ । ହତାଶ ହୋଇ ରହିଲେ । ସେ ୧୨୫ ଖ୍ରୀ:ପୂ:ରେ ପରଲୋକ ଗମନ କଲେ । ଏହି ରାଜ୍ୟ ଅରାଜକ ହେଲା ।

---

## ସାମନ୍ତ ରାଜା ସୁଲୋଚନେଯ଼ ଦେବ ।

### ୧୨୫—୧୦୭ ଖ୍ରୀ: ପୂ: ଅ:

ଭୀମ ଦେବଙ୍କ ମୃତ୍ୟୁ ପରେ ସୁଲୋଚନେଯ଼ ଦେବ କୋଶଳର ଉତ୍ତରାଞ୍ଚଳର ରାଜା ହେଲେ । କିନ୍ତୁ ବାବନ ଦେବଙ୍କ ରାଜ୍ୟର ପ୍ରଜାମାନେ ଏହି ସୁଲୋଚନେଯ଼ ଦେବଙ୍କୁ ନିଜ ରାଜ୍ୟର ଯୁବରାଜ ବୋଲି ପରିଚଯ଼ ପାଇ ତାଙ୍କୁ ନେଇ ନିଜ ରାଜ୍ୟରେ ଅଭିଷେକ କଲେ । ଏପରି ସୁଲୋଚନେଯ଼ ଦେବ ବାବନ ଦେବ ଓ ଭୀମଦେବଙ୍କ ରାଜ୍ୟ ଏକତ୍ର କରି

ଶାସନ କରିବାକୁ ଲାଗିଲେ । ତାଙ୍କର ଦୁଇଟି ପୁତ୍ର ଥିଲେ । ସେମାନଙ୍କ ନାମ ପ୍ରତାପସେନ ଓ ଶତ୍ରୁଘାତୀ ଅଟେ । ସେ ଖ୍ରୀ: ପୂ: ଅ: ୧୦୭ ରେ ପରଲୋକ ଗମନ କଲେ ।

## ପ୍ରତାପ ସେନ ।

### ୧୦୭—୮୯ ଖ୍ରୀ: ପୂ: ଅ:

ସୁଲୋଚନେଶ୍ୱ ଦେବଙ୍କ ପରେ ତାଙ୍କ ପୁତ୍ର ପ୍ରତାପ ସେନ ପିତୃ ସିଂହାସନ ଅଧିକାର କଲେ । ସେ ବାବନ ଗଡ଼ ଓ ରାଣୀପୁର ଉଭୟ ସ୍ଥାନରେ ରହି ରାଜତ୍ୱ କରୁଥିଲେ । କିନ୍ତୁ ଅଧିକାଂଶ ସମୟ ସେ ରାଣୀପୁରରେ ରହୁ ଥିଲେ । କାରଣ ବାବନ ଗଡ଼ ଅତି ଦୁରାରୋହ ଥିଲା । ସେ ୮୯—ଖ୍ରୀ:ପୂ: ରେ ପରଲୋକ ଗମନ କଲେ ।



## ଶତ୍ରୁଘାତୀ ।

### ୮୯—ଖ୍ରୀ: ପୂ: ଅ: ର ୭୧—ଖ୍ରୀ: ପୂ: ଅ:

ପ୍ରତାପ ସେନଙ୍କ ମୃତ୍ୟୁପରେ ତାଙ୍କର ପୁତ୍ର ନଥିବାରୁ ଭ୍ରାତା ଶତ୍ରୁଘାତୀ କୋଶଳ ରାଜ୍ୟର ରାଜା ହେଲେ । ଏହି ରାଜା ବାବନ ଗଡ଼ ବର୍ଜ୍ଜି ଜଙ୍ଗଲ ଆଣି ପର୍ବତତଳ ଦେଶରେ ସ୍ଥାପନ କଲେ ଓ ସେହି ଗ୍ରାମକୁ ବାବନୀ ନାମରେ ପରିଚିତ କଲେ । ଏହାକୁ ଆଜିକାଲି ବ୍ରାହ୍ମଣୀ ବୋଲି କହୁ ଅଛନ୍ତି । ଏହି ରାଜା ପାଟଣା ଗଡ଼ ରାଜଧାନୀ ସ୍ଥାପନ କଲେ । ଅପୁତ୍ରିକ ଅବସ୍ଥାରେ ସେ ପରଲୋକ ଗମନ କରିବାରୁ ରାଜ୍ୟ ପୁନର୍ବାର ଅରାଜକ ହେଲା ।



## କାନ୍ତାର ବା କଣ୍ଡରାଜାତୀୟ ଜଣେ ସାମନ୍ତରାଜା ।

ରାଜା ଶତ୍ରୁଘାତୀଙ୍କ ପରେ କୋଶଳ ରାଜ୍ୟ ଜଣେ କାନ୍ତାର ବା କଣ୍ଡର ଜାତୀୟ ରାଜାଙ୍କ ଦ୍ୱାରା ଶାସିତ ହେଲା । କଣ୍ଡର ଅର୍ଥ ମାହାର । ଏହି ରାଜା ମାହାର ଜାତୀୟ ଅଟନ୍ତି । ସେ ନରପତି ପଦରେ କୋଶଳ ରାଜ ସିଂହାସନରେ ଅଭିଷିକ୍ତ ହୋଇ ଥିଲେ ସୁଦ୍ଧା ନିଜର ବ୍ୟବସାୟ ପରିତ୍ୟାଗ କରି ନଥିଲେ । ସେ ବାଉଁଶର ଟୋପା କୁଲା ତିଆରି କରି ତହିଁରେ ଜୀବିକା ନିର୍ବାହ କରୁଥିଲେ । ସେ ଯାଦୁ ବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ ।

ରାଜ୍ୟର ଲୋକମାନେ ତାଙ୍କୁ କେବଳ ଟୋପା କୁଲ ବୁଣା କାର୍ଯ୍ୟରେ ରତ ଥିବାର ଦେଖି ସିଂହାସନରୁ ଅନ୍ତର କରିବାର ଉଦ୍ୟୋଗ କଲେ । ଏହା ଦେଖି ତାଙ୍କର ଜଣେ ଗୁପ୍ତଚର ତାଙ୍କୁ ଆସି କହିଲା କେତେ ଜଣ ଲୋକ ଆପଣଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁ ଅଛନ୍ତି । ଏହା ଶୁଣି ରାଜା ଖଣ୍ଡିଏ ମୁଠିଏ ଧରି ତାଙ୍କର ବାଉଁଶ କାଠ କଟୁରିରେ ମନ୍ତ୍ରଟିଏ କାଟି ଦେବା ମାତ୍ରେ ଯେତେ ଷଡ଼ଯନ୍ତ୍ର କାରୀମାନେ ମରିବାକୁ ଲାଗିଲେ । ଏହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ କେହି ତାହାଙ୍କର ବିରୁଦ୍ଧରେ ଚଳିବାକୁ ସାହାସ କଲେ ନାହିଁ । ପରେ ଷଡ଼ଯନ୍ତ୍ର କାରୀଙ୍କ ବନ୍ଧୁ ବାନ୍ଧବମାନେ ତାଙ୍କୁ କ୍ଷମା ପ୍ରାର୍ଥନା କରିବାରୁ ରାଜା ସେମାନଙ୍କୁ ବଞ୍ଚାଇ ଦେଲେ ।

ତାଙ୍କର ରାଣୀଙ୍କ ନାମ ପଦ୍ମାବତୀ । ସେ ଜଣେ ଶୁଦ୍ଧାଚାରିଣୀ ଓ ସିଦ୍ଧିପ୍ରାପ୍ତା ରମଣୀ ଥିଲେ । ସେ ଲଘିମା ସିଦ୍ଧି ବଳରେ ପଦ୍ମପତ୍ର ଉପରେ ଗୋଡ଼ ପକାଇ ଜଳକଳଶ ପୁଷ୍କରିଣୀ ମଧ୍ୟରୁ ଆଣି ପାରୁଥିଲେ । ଦିନେ କଣ୍ଡର ରାଜା ଲୋକମାନଙ୍କ ଠାରୁ କଡ଼ାଏ ଲେଖାଏଁ କଉଡ଼ି କର ଅସୁଲ କରିବାର

ପ୍ରସ୍ତାବ କଲେ । ପ୍ରଜାମାନେ ସମସ୍ତେ ଏହି ପ୍ରସ୍ତାବକୁ ଆନନ୍ଦରେ ଗ୍ରହଣ କରି ଗୋଟିଏ ୨ ସ୍ତୂପାର କରାଇ ଦେଲେ । ସେହି ବୌଦ୍ଧ ସଙ୍ଘ ଗ୍ରହଣ କଲେ ।

ଅନ୍ୟଦିନ ରାଣୀ ପୂର୍ବପରି ପାଣି ଆଣିବା ସମୟରେ ଦେଉଳ ଉପରେ ଯାଇ ପାରିଲେ ନାହିଁ । ତାଙ୍କର ପାଦ ଜଳ ମଧ୍ୟକୁ ପଶିଗଲା । ଏହା ଦେଖି ସେ ତତ୍‌କ୍ଷଣାତ୍ ପୃଷ୍ଠବର୍ତ୍ତୀନୀ ଫେରିଆସି ରାଜାଙ୍କୁ କହିଲେ "ତୁମ୍ଭେ କଣ ଅନ୍ୟାୟ କରିଅଛ"? ରାଜା ସେହି ବୌଦ୍ଧ ଅଧିକୃତ କରିଥିବା କଥା କହିବାରୁ ରାଣୀ ଅତ୍ୟନ୍ତ ଦୁଃଖିତା ହୋଇ ସେହି ବୌଦ୍ଧମାନ ଫେରାଇ ଦେବାକୁ କହିଲେ । ରାଜା ଏଥିରେ ସ୍ୱୀକୃତ ହୋଇ ଅଧିକୃତ କରିଥିବା ବୌଦ୍ଧ ପ୍ରଜାମାନଙ୍କୁ ଫେରାଇ ଦେବାରୁ ରାଣୀ ପୂର୍ବେ ପଦ୍ମପତ୍ର ଉପରେ ଗତାଗତ କରି ପାରିଲେ ।

ଏହି ରାଜା ଅପତ୍ୟହୀନ ହୋଇ ପରଲୋକ ଗମନ କଲେ । ଏଣୁ କରି କୋଶଳ ରାଜା ଏହି ରାଜ୍ୟର ଶାସନ ଭାର ଜଣେ ଶାସନ କର୍ତ୍ତାଙ୍କ ହସ୍ତରେ ଅର୍ପଣ କଲେ ।

---

## ଐର ବଂଶୀୟ ଶେଷ ରାଜା ସୁରଥ ।

### ୭୮ ଖ୍ରୀଃ ପୂଃ ଅଃ—୫୪ ଖ୍ରୀଃ ପୂଃ ଅଃ

ମହାରାଜା ସୁରଥ କଳିଙ୍ଗର କୋଶଳା ରାଜଧାନୀରେ ରହି ଉତ୍କଳ, କଳିଙ୍ଗ, କୋଶଳ, କୋଶଳ ଓ ମଧ୍ୟ ପ୍ରଦେଶ ଶାସନ କରୁଥିଲେ । ସମ୍ରାଟ ଖାରବେଳଙ୍କ ଉତ୍ତାରୁ ତାଙ୍କ ବଂଶ ଧୀରେ ୨ ଦୁର୍ବଳ ହେଲା । ତେଣୁ ତାଙ୍କ ବଂଶର ଶେଷ ରାଜା ଏହି ସୁରଥଙ୍କ ସଙ୍ଗରେ ଅନ୍ଧ୍ରମାନେ ଯୁଦ୍ଧ କଲେ । ପ୍ରଥମରେ ଦାକ୍ଷିଣାତ୍ୟର ଶୈଳ ରାଜ୍ୟ ଅଧିକାର କଲେ । ଅନ୍ଧ୍ର ରାଜା ମଧ୍ୟ ଏହି ସୁଯୋଗରେ ସୁରଥଙ୍କୁ ଆକ୍ରମଣ କଲେ

ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧହେଲା । କିନ୍ତୁ ରାଜା ସୁରଥ ଯୁଦ୍ଧ କ୍ଷେତ୍ରରୁ ଲଙ୍ଘି ବାହାରି ଆସି ନିଜ ରାଜଧାନୀ ମଧ୍ୟରେ ରହିଲେ । ତାଙ୍କ ସଙ୍ଗେ ୨ ଅନ୍ଧ୍ରରାଜା ଗୋଡ଼ାଇ ଆସିଲେ । ଏ ସମୟରେ ମାଧବଚନ୍ଦ୍ର ନାମରେ ଜଣେ ସୂର୍ଯ୍ୟବଂଶୀୟ ବ୍ୟକ୍ତି ଏହାଙ୍କ ମନ୍ତ୍ରୀ ଓ ସେନାପତି କାର୍ଯ୍ୟ କରୁଥିଲେ । ସେ ରାଜାଙ୍କର ଦୁର୍ବଳତା ଦେଖି ଶତ ବାହାନ ନାମକ ଅନ୍ଧ୍ର ରାଜାଙ୍କୁ ଅନେକ ଧନ ସମ୍ପତ୍ତି ହସ୍ତୀ ଅଶ୍ୱ ଦେଇ ତୁମ୍ଭଙ୍କୁ ରାଜା ରୂପରେ ଗ୍ରହଣ କଲୁଁ ବୋଲି କହିବାରୁ ଅନ୍ଧ୍ରରାଜା ରାଜଧାନୀ ଆକ୍ରମଣ କରି ସୁରଥ ରାଜାଙ୍କୁ ତଡ଼ିଦେଇ ଫେରିଗଲେ । ରାଜା ସୁରଥ ଏକାକୀ ମୃଗୟା ଉଦ୍ଦେଶ୍ୟରେ ଅରଣ୍ୟକୁ ବାହାରି ଗଲେ । ଆଉ ଫେରିଲେ ନାହିଁ । ଏହି ଦିନଠାରୁ କୋଶଳ ରାଜ୍ୟରୁ ବୀର ବଂଶୀୟ ଶାସନ ଲୁପ୍ତ ହେଲା । ଅନ୍ଧ୍ରରାଜା ଏହି ରାଜ୍ୟର ଶାସନ କର୍ତ୍ତା ଓ ସାମନ୍ତ ରାଜା ରୂପରେ [illegible] ମନ୍ତ୍ରୀ ମାଧବ ଚନ୍ଦ୍ରଙ୍କୁ ନିଯୁକ୍ତ କରିଦେଲେ ।



## ତୃତୀୟ ପରିଚ୍ଛେଦ

### ସୂର୍ଯ୍ୟ ବଂଶୀୟ ମାଧବଚନ୍ଦ୍ରଙ୍କର ରାଜତ୍ୱ ଦେବା

ପ୍ରାୟ ୫୪ ଖ୍ରୀ : ପୂ : ଅ : [illegible]

ରାଜା ମାଧବଚନ୍ଦ୍ର କଳିଙ୍ଗ ସିଂହାସନରେ ଅଭିଷିକ୍ତ ହେଲେ । ସେ ଚୌସଳାରୁ କଳିଙ୍ଗର କେନ୍ଦ୍ର ରାଜଧାନୀ ଉଠାଇ ନେଇ କୋଶଳରେ ଗୋଟିଏ ନୂତନ ରାଜଧାନୀ ସ୍ଥାପନ କଲେ । କିଛି ଦିନପରେ ସେହି ନୂତନ ରାଜଧାନୀ ପତ୍ତନ ନାମରେ ପରିଚିତ କଲେ ଓ ଗଡ଼ର ଅଧିଷ୍ଠାତ୍ରୀ ଦେବୀରୂପେ ପତ୍ତନେଶ୍ୱରୀ ଦେବୀଙ୍କୁ ସ୍ଥାପନ କଲେ । କ୍ରମେ କ୍ରମେ ସେହି ପତ୍ତନ ନାମ ପାଟଣା ନାମରେ ଓ ପତ୍ତନେଶ୍ୱରୀ ଦେବୀଙ୍କ ନାମ ପାଟଣେଶ୍ୱରୀଦେବୀ

ନାମରେ ଅପଭ୍ରଷ୍ଟ ହେଲା । ଏହି ପାଟଣା ଗଡ଼ରେ ପୂର୍ବ କଥିତ ଚନ୍ଦ୍ରସିଂ ରାଜାଙ୍କ ସ୍ଥାପିତ ଢାମଚଣ୍ଡୀ ମନ୍ଦିର ଥିଲା ।

ତେଣୁ କରି ପାଟଣା ଗଡ଼ବାସୀମାନେ ବିଶେଷ ଭାବରେ ଯାଦୁ ବିଦ୍ୟାରେ ପାରଦର୍ଶୀଥିଲେ । ରାଜା ମାଧବଚନ୍ଦ୍ର ମଧ୍ୟ ଏହି ଯାଦୁ ବିଦ୍ୟାକୁ ଆଦର କରୁଥିଲେ । ସେହି ସମୟରେ ଏହି ପାଟଣା ଗଡ଼ର ୭ଜଣ କୁମାରୀ ଏହି ବିଦ୍ୟାରେ ସୁନିପୁଣା ଥିବାରୁ ଏହାକୁ କୁମାରୀ ପାଟଣା ମଧ୍ୟ କୁହା ଯାଉଥିଲା । ଆଜିକାଲି ମଧ୍ୟ ଯାଦୁକର ମାନେ ଏମାନଙ୍କୁ ସ୍ମରଣ କରି ଥାନ୍ତି । ସେମାନଙ୍କ ନାମ ଯଥା:—୧ ମଦନା ବା ଜ୍ଞାନଦେଇ ମାଳୁଣୀ ୨ ନିତାଇ ଧୋବଣୀ ୩ ଲହୁକୁଟି ଲହୁରୁଣୀ ୪ ଶୁକୁଟି ଚମାରୁଣୀ ୫ ପଟ୍ଟପିନ୍ଧୀ ସହୁରୁଣୀ ୬ ଗାଙ୍ଗୀ ଗଉଡୁଣୀ ୭ ଶୁଆ ତେଲିଣୀ ଏମାନେ ସମସ୍ତେ ଜଣେ ଦକ୍ଷିଣ ଦେଶବାସୀ ଧନ୍ବନ୍ତରୀ ନାମକ ବ୍ରାହ୍ମଣଠାରୁ ଶିକ୍ଷା କରିଥିଲେ ।

କଳିଙ୍ଗ ରାଜ୍ୟ ମଧ୍ୟ ପ୍ରଦେଶର ଶେଷ ପର୍ଯ୍ୟନ୍ତ ବ୍ୟାପିଥିଲା ସେହି ସୀମାକୁ ଲାଗିକରି ବେୟର-ରାଜ୍ୟଥିଲା । ଏହି ବେୟର ରାଜ୍ୟର ରାଜକୁମାରୀ 'ଶଶୀରେଖା' ସେହି ରାଜ୍ୟର ମନ୍ତ୍ରୀଙ୍କର ପୁତ୍ର 'ଅହି ମାଣିକ୍ୟ' କୁମାରଙ୍କ ଗୁରୁ ଗୃହରେ ବିବାହ ହୋଇ ଏହି ରାଜ୍ୟକୁ ବାହାରି ଆସିଥିଲେ । କୁମାର ରାଜ ନନ୍ଦିନୀଙ୍କୁ କୌଣସି ଗୋଟିଏ ନିରୁପିତ ସ୍ଥଳରେ ରଖି ଦେଇ ବଜାରକୁ ସୌଦା କିଣିବାକୁ ଗଲେ । ଆବଶ୍ୟକୀୟ ଜିନିସ କିଣିଲା ପରେ କୁମାର କୁମାରୀଙ୍କ ପାଇଁ ଫୁଲ କିଣିବା ଉଦ୍ଦେଶ୍ୟରେ ଜଣେ ମାଳୁଣୀ ନିକଟକୁ ଗଲେ । ସେହି ମାଳୁଣୀର ନାମ ମଦନା ବା ଜ୍ଞାନଦେଇ ମାଳୁଣୀ ଅଟେ । ସେ କୁମାରଙ୍କ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ତାଙ୍କୁ ଛଳନା କରି ଘରକୁ ନେଇଗଲା । ସେଠାରେ ତାଙ୍କୁ

ମନ୍ତ୍ରସିଦ୍ଧ ଫୁଲ ସୁଙ୍ଘାଇ ଦିବସରେ ମେଣ୍ଢା ଓ ରାତରେ ମନୁଷ୍ୟ କରି ସହବାସ କରିବାକୁ ଲାଗିଲା । ଅଜ୍ଞ ଛାଡି ଦେଲା ନାହିଁ । ଏଣେ ରାଜକୁମାରୀ କୁମାରଙ୍କ ପ୍ରତ୍ୟାଗମନ ନ ଦେଖି ବ୍ୟାକୁଳ ହେଲେ । ସେ ପୁରୁଷ ବେଶରେ ଶଶୀଧର ନାମ ନେଇ ମାଧବ ଚନ୍ଦ୍ର ରାଜାଙ୍କଠାରେ ସାକ୍ଷାତ କରି ତାଙ୍କ ଠାରେ ଚାକିରି କରିବାକୁ ମନସ୍ଥ କଲେ । ରାଜା ତାଙ୍କୁ ସୈନ୍ୟ ବିଭାଗରେ ନିଯୁକ୍ତ କଲେ ।

ସେହି ପାଟଣା ଗଡରେ ଗୋଟିଏ ଗଣ୍ଡାର ଉପଦ୍ରୁ ଥିଲା । ସେ ଅନେକ ଲୋକଙ୍କୁ ମାରି ପକାଉ ଥିବାରୁ ରାଜା ଘୋଷଣା କରି ଥିଲେ ଯେ ଯେଉଁ ବ୍ୟକ୍ତି ଗଣ୍ଡାକୁ ମାରିବ ସେ ତାଙ୍କୁ ତାହାଙ୍କର ଦୁହିତାଙ୍କୁ ବିବାହ କରି ଦେବେ । ଶଶୀରେଖା ପୁରୁଷ ବେଶ ଗ୍ରହଣ କଲା ଦିନଠାରୁ ନିଜକୁ ଶଶୀଧର ନାମରେ ପରିଚିତ କରୁଥିଲେ । ସେ ଏହି ସମ୍ବାଦ ଶୁଣି ଅରଣ୍ୟକୁ ଯାଇ ଗଣ୍ଡାକୁ ମାରିବାରୁ ରାଜା ତାଙ୍କୁ ନିଜ ଦୁହିତାଙ୍କ ସହ ବିବାହ କରି ଦେଲେ । ମଧୁଶଯ୍ୟା ରାତ୍ରିରେ ଶଶୀଧର ରାଜ ନନ୍ଦିନୀଙ୍କୁ କହିଲେ ମୋର ଗୋଟିଏ ବ୍ରତ ଅଛି । ତାହା ଉଦ୍‌ଯାପିତ ନ ହେବା ପର୍ଯ୍ୟନ୍ତ ରମଣୀ ଅଙ୍ଗ ସ୍ପର୍ଶ କରିବି ନାହିଁ । ଅଜ୍ଞ କିଛି ଦିନପରେ ବ୍ରତ ଉଦ୍‌ଯାପନ କରାଯିବ । ତୁମ୍ଭେ ତୁମ୍ଭର ପିତାଙ୍କୁ କହିବ ମୋ ପାଇଁ ଗୋଟିଏ ମନ୍ଦିର ଶୀଘ୍ର ତିଆରି କରାଇ ଦେବେ । ମନ୍ଦିର ପ୍ରତିଷ୍ଠା ନିମନ୍ତେ ନାଟ ତାମାସା ହେବ । ଦେଶବିଦେଶରୁ ଲୋକମାନେ ଦେଖିବାକୁ ଆସିବେ । ଶେଷଦିନ ବ୍ରତ ଉଦ୍‌ଯାପିତ ହେବ । ଏହା ଶୁଣି କୁମାରୀ ରାଜାଙ୍କୁ କହିବାରୁ ସେହି ସମସ୍ତ ବିଷୟର ବନ୍ଦୋବସ୍ତ ହେଲା । ଦିନେ ରାତ୍ରିରେ ଅନ୍ଧ ମାଣିକ୍ୟ ମନ୍ଦିରା

ମାଲୁଣୀ ସଙ୍ଗରେ ନାଟ ଦେଖିବାକୁ ଆସି କାନ୍ଥରେ ନିଜର ଠିକଣା ଲେଖି ବାହାର ଗଲେ । ଅନ୍ୟ ଦିନ ପ୍ରାତଃରେ ଶଶୀଧର ଅସି ସମସ୍ତ ବିଷୟ ଅବଗତ ହୋଇ ବ୍ରତ ଉଦ୍‌ଯାପନ ଉପଲକ୍ଷରେ ଅନେକ ମେଣ୍ଢା ମଗାଇଲେ । ସେ ସଙ୍ଗେ ମଦନା ମାଲୁଣୀର ମେଣ୍ଢା ମଧ୍ୟ ରଜାଙ୍କ ହୁକୁମରେ ଅଣାଗଲା । ଶଶୀଧର ମଦନା ମାଲୁଣୀକୁ ନାନା ପ୍ରକାରର ଭୟ ଦେଖାଇବାରୁ ସେ ମେଣ୍ଢାକୁ ମନୁଷ୍ୟ କରି ଦେଲା । ଶଶୀଧର ଆନନ୍ଦରେ ତାଙ୍କୁ ଲଭିକରି ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତ ବିଷୟ ରଜାଙ୍କ କହିଲେ । ରଜା ଆନନ୍ଦ ହୋଇ ନିଜ ଦୁହିତାଙ୍କୁ କୁମାରଙ୍କ ସହିତ ବିବାହ କରି ଦେଲେ । ଏହିପରି କେସରି ରାଜ୍ୟର ଭୋଜବଂଶ ସଙ୍ଗରେ ପାଟଣା ରାଜ୍ୟର ସୂର୍ଯ୍ୟବଂଶର ସମ୍ବନ୍ଧ ରହିଲା ।

ସେଠାରେ କେତେଦିନ ରହି କୁମାର କୁମାରୀ ପାଟଣା ରାଜ ନନ୍ଦନଙ୍କ ସହିତ ନିଜ ରାଜ୍ୟକୁ ଫେରିଗଲେ । ମହାରାଜା ମାଧବଚନ୍ଦ୍ର ପ୍ରାୟ ୧୮ ବର୍ଷ ପର୍ଯ୍ୟନ୍ତ କୋଶଳ ବା ପାଟଣା ରାଜ୍ୟରେ ରଜା ହୋଇଥିଲେ । ଏହି ସମୟରେ ଅନ୍ଧ୍ରମାନେ ତାଙ୍କୁ ପୁନର୍ବାର ଆକ୍ରମଣ କଲେ । ଯୁଦ୍ଧ ତୁମୁଳ ଭାବରେ ହେଲା । ରଜା ମାଧବଚନ୍ଦ୍ର ଉଜ୍ଜୟିନୀ ରଜା ବିକ୍ରମାଦିତ୍ୟଙ୍କୁ ସାହାଯ୍ୟ ପାଇଁ ଅନୁରୋଧ କଲେ । ଯୁଦ୍ଧରେ ମାଧବଚନ୍ଦ୍ର ନିହତ ହେଲେ । ବିକ୍ରମାଦିତ୍ୟ ଅନ୍ଧ୍ରମାନଙ୍କୁ ଅନେକାନେକ ଧନରତ୍ନ ଦେଇ ଫେରାଇ ଦେଇ କଳିଙ୍ଗ ରାଜ୍ୟକୁ ଉଜ୍ଜୟିନୀ (ମାଳବ) ସଙ୍ଗରେ ମିଶାଇ ଶାସନ କରିବାକୁ ଲାଗିଲେ ।

— — ❖ — —

## ବିକ୍ରମାଦିତ୍ୟ ଦେବ ।

## ଜନ୍ମ ୫୭—ଖ୍ରୀ: ପୂ: ଅ;

## ରାଜତ୍ୱ—୩୭ ଖ୍ରୀ: ପୂ: ଅ:—୨୦ ଖ୍ରୀ: ଅ:

ବିକ୍ରମାଦିତ୍ୟ ମାଳବର ରାଜାଥିଲେ । ସେ କଳିଙ୍ଗ ରାଜ୍ୟକୁ ସାମନ୍ତ ରାଜ୍ୟ କରି ଶାସନ କରୁଥିଲେ । ଓ ଏଠା ଶାସନ କରିବାକୁ ଜଣେ ଶାସନ କର୍ତ୍ତା ନିଯୁକ୍ତ କରିଥିଲେ । ସେହି ଶାସନ କର୍ତ୍ତାଙ୍କ ରହିବା ନିମନ୍ତେ ରାଜଧାନୀ ପାଟଣା ଗଡ଼ରେ ଗୋଟିଏ ଗଡ଼ ନିର୍ମାଣ କରିଥିଲେ । ଗଡ଼ର ଚାରି ଦିଗରେ କଣ୍ଟଙ୍ଗବାଉଁଶ ଲଗାଇ ଥିଲେ । ଗଡ଼ ମଧ୍ୟକୁ ପ୍ରବେଶ କରିବାକୁ ଚାରିଗୋଟି ଦ୍ୱାର ଥିଲା । ୧ ଗୁପ୍ତ ବା ଚୁରୁଣୀ ଦ୍ୱାର ୨—ଘଣ୍ଟିଅଣୀ ଦ୍ୱାର ୩—ସେନାପୁର ଦ୍ୱାର ୪--ସିଂହଦ୍ୱାର । ଗଡ଼ରେ ସୁବିଧା ନିମନ୍ତେ ଚାରିଗୋଟି ଘାଟ ମଧ୍ୟ କରିଥିଲେ । ୧—କସ୍ତୁାଘାଟ ୨—ମୁଦଘାଟ ୩---ଦୁଲାଲ୍‌ଘାଟ ୪--ଗୁଞ୍ଜି-ଘାଟ । ଏହି ପାଟଣା ଗଡ଼ର ନାମକୁ ମଧ୍ୟ ବିକ୍ରମଗଡ ନାମରେ ପରିବର୍ତ୍ତନ କରିଥିଲେ । ଧରିବାକୁ ଗଲେ ପାଟଣା ଗଡର ନାମ ୩ ଟି । ୧---କୋଶଳଗଡ଼ ୨---ପାଟଣାଗଡ଼ ୩—ବିକ୍ରମଗଡ଼ ।

ଅନ୍ଧ୍ରମାନେ ପୁନର୍ବାର କଳିଙ୍ଗ ବିରୁଦ୍ଧରେ ଯୁଦ୍ଧଯାତ୍ରା କରି ବିକ୍ରମାଦିତ୍ୟଙ୍କ ସଙ୍ଗେ ଯୁଦ୍ଧ କରି ତାଙ୍କୁ ନିହତ କଲେ । ବେରାର ଯୁବରାଜ ଭୋଜଦେବ ବିକ୍ରମାଦିତ୍ୟଙ୍କ ଆଦେଶରେ ପାଟଣାଗଡ଼ରେ ମନ୍ତ୍ରୀ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ଅନ୍ଧ୍ରମାନେ ବିକ୍ରମାଦିତ୍ୟଙ୍କୁ ନିହତ କରି ଭୋଜରାଜାଙ୍କୁ ପାଟଣାଗଡ଼ ସିଂହାସନରେ ସାମନ୍ତ ରାଜା ପଦରେ ନିଯୁକ୍ତ କରି ଦେଲେ । ଅନ୍ଧ୍ରମାନେ ଦୁର୍ବଳ ହେବାରୁ ସେ ସ୍ୱାଧୀନ ହେଲେ । ଏହି ବିକ୍ରମାଦିତ୍ୟ ବିକ୍ରମ ସମ୍ବତ୍ ଚଳାଇ ଅଛନ୍ତି ।

## ଭୋଜ ଦେବ ।

### ୨୦ ଖ୍ରୀ: ଅ: ୭୯ ଖ୍ରୀ: ଅ: ।

ଭୋଜଦେବ ବେରାର ରାଜ୍ୟର ରାଜା ଥିବାରୁ କଳିଙ୍ଗ ରାଜ୍ୟକୁ ବେରାର ସଙ୍ଗରେ ମିଶାଇ ଶାସନ କରିବାକୁ ଲାଗିଲେ । ଅବଶେଷରେ ବେରାର ଓ କଳିଙ୍ଗର ସୈନ୍ୟ ଏକତ୍ର କରି ଦିଗ୍‌ବିଜୟ କରିବାକୁ ବାହାରିଲେ । ଗୋଟିଏ୨ କରି ସମସ୍ତ ରାଜ୍ୟ ତାହାଙ୍କର ଅଧିକୃତ ହେଲା । ଶେଷରେ ସମସ୍ତ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟ ଜୟ କରି ଭାରତର ଏକଚ୍ଛତ୍ର ସମ୍ରାଟ ହେଲେ । ପରେ ସେ ଦୁଇଟି ଗଡ଼ ଓ ଦୁଇଟି ଜଳାଶୟ ନିଜ ନାମରେ ଓ ନିଜରାଣୀ ଭାନୁମତୀଙ୍କ ନାମରେ ନିର୍ମାଣ କରାଇଥିଲେ । ପାଟଣାଗଡ଼ରୁ ଭୋଜ ସାଗର ନାମକ ପ୍ରକାଣ୍ଡ ପୁଷ୍କରିଣୀ ଓ ବୁଦ୍ଧପୁରର ପଶ୍ଚିମ ଦିଗରେ ଥିବା ଭାନୁମତୀ ସାଗର ଖୋଳାଇ ଥିଲେ । ଏହା କାଳକ୍ରମେ ଭୋଇ ସାଗର ଓ ଭାନୁ ସାଗର ନାମରେ ଅପଭ୍ରଷ୍ଟ ହୋଇ ଯାଇଅଛି । ଗନ୍ଧମାଦନ ପର୍ବତ ଉପରେ ସେ ଗୋଟିଏ ଗଡ଼ ନିର୍ମାଣ କରାଇଥିଲେ । ତାହାକୁ ଭୋଜପୁର ଗଡ଼ ବା ଭୋଜଗଡ଼ କହନ୍ତି । ଏହା ଗୋଟିଏ ପ୍ରକାଣ୍ଡ ଗଡ଼ ଅଟେ । ପର୍ବତ ଶୃଙ୍ଗର ସୀମା ସୀମାରେ ପ୍ରାୟ ୧୫।୧୬ ମାଇଲ ପର୍ଯ୍ୟନ୍ତ ଗୋଟିଏ କାନ୍ଥ ନିର୍ମାଣ କରିଥିଲେ । ବର୍ତ୍ତମାନକୁ ଏହି କାନ୍ଥର ଅନେକ ଅଂଶ ଭଗ୍ନ ହୋଇ ଗଲାଣି । ଭାନୁଗଡ଼ ନାମରେ ରାଣୀଙ୍କ ନାମରେ ଅନ୍ୟ ଗୋଟିଏ ଗଡ଼ ମଧ୍ୟ ସେ ତିଆରି କରିଥିଲେ । ଏହା ଗୋଟିଏ ଛୋଟ ଡୁଙ୍ଗୁରି ( ପର୍ବତ ) ଉପରେ ଟିବା ରସ୍ତାରେ ଅଛି । ବିକ୍ରମାଦିତ୍ୟଙ୍କ ସଭାରେ କାଳିଦାସ ନାମରେ ଜଣେ ପଣ୍ଡିତ ନବରତ୍ନ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଧାନ ପଣ୍ଡିତ ଥିଲେ । ବିକ୍ରମାଦିତ୍ୟଙ୍କ ମୃତ୍ୟୁପରେ ସେହି

କାଳିଦାସ ଅପି ଭୋଜରାଜାଙ୍କ ସଭା ପଣ୍ଡିତ ହେଲେ ଓ ସେ ଅନ୍ତିମ ଜୀବନ ଏଠାରେ ଯାପନ କରିଥିଲେ ।

—✱—

## ଶାକାଦିତ୍ୟ ।

### ୭୯ ଖ୍ରୀ: ଅ:—୭୮ ଖ୍ରୀ: ଅ: ।

ଭୋଜ ରାଜାଙ୍କ ମୃତ୍ୟୁ ପରେ ଏହି କଳିଙ୍ଗ ରାଜ୍ୟ ଅନ୍ଧ୍ର ରାଜା ଶାକାଦିତ୍ୟଙ୍କ ଅଧିକୃତ ହେଲା । ଏହାଙ୍କ ସମୟରେ ଜଙ୍ଗଲ, ମଧ୍ୟପ୍ରଦେଶ, ଛତିଶଗଡ, ମେକଳରାଜ୍ୟ, ଗଞ୍ଜାମ ଆଦି ମିଶି କଳିଙ୍ଗ ନାମରେ ପରିଚିତ ହେଉଥିଲା । ସେ ପ୍ରତିଷ୍ଠାନ ନଗରରେ ରହି ରାଜ୍ୟ ଶାସନ କରୁଥିଲେ । ଭୋଜ ରାଜାଙ୍କ ମୃତ୍ୟୁ ହେତୁ ତାଙ୍କ ଉତ୍ତରାଧିକାରୀ ନୃସିଂହଦେବଙ୍କୁ ସାମନ୍ତ ରାଜା ପଦରେ ନିଯୁକ୍ତ କରି ଏହି ରାଜ୍ୟର ଶାସନ ଭାର ଅର୍ପଣ କରିଥିଲେ । ସେ ୭୮ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

—✱—

## ନୃସିଂହ ଦେବ ।

### ୭୮ ଖ୍ରୀ: ଅ: —ପ୍ରାୟ ୧୦୦ ଖ୍ରୀ: ଅ: ।

ଶାକାଦିତ୍ୟଙ୍କ ମୃତ୍ୟୁ ପରେ ନୃସିଂହଦେବ ସ୍ୱାଧୀନ ହେଲେ ଏହାଙ୍କ ସମୟରେ ମଧ୍ୟ ଓଡ଼ିଶା, କୋଶଳ ଓ ଗଞ୍ଜାମ ଏକ ରାଜ୍ୟ ହୋଇଥିଲା । ଏହାଙ୍କ ବିରୁଦ୍ଧରେ ଆର୍ଯ୍ୟାବର୍ତ୍ତର ଜଣେ ରାଜା କଳିଙ୍ଗ ଅଧିକାର କରିବାକୁ ସୈନ୍ୟ ଚାଳନା କରିଥିଲେ କିନ୍ତୁ ଏହାଙ୍କଦ୍ୱାରା ପରାଜିତ ହେବାରୁ ଫେରିଗଲେ । ଏହି ରାଜା ନିଜ ନାମାନୁସାରେ ଗନ୍ଧମାଦନସ୍ଥ ନରସିଂହନାଥଙ୍କର ପୀଠ ସ୍ଥାପନ କରିଥିବାର ଅନୁମାନ ହୁଏ ।

—✱—

## ଶଙ୍କର ଦେବ ।

### ପ୍ରାୟ୍ ୧୦୦-୧୨୨ ଖ୍ରୀ: ଅ:

ନରସିଂହ ଦେବଙ୍କ ମୃତ୍ୟୁପରେ ଶଙ୍କର ଦେବ କଳିଙ୍ଗ-ରାଜ୍ୟର ରାଜା ହେଲେ । ଏହି ରାଜାଙ୍କ ସମ୍ବନ୍ଧରେ ସେପରି କିଛି ବିଶିଷ୍ଟ ଘଟଣା ଘଟି ନାହିଁ । କିନ୍ତୁ ଅନୁମାନ ହୁଏ ତାହାଙ୍କର ନିଜ ନାମ ଅନୁସାରେ ଗନ୍ଧମାଦନସ୍ଥ ହରିଶଙ୍କର ଦେବଙ୍କର ଅସ୍ଥାନ ସ୍ଥାପିତ ହୋଇଥିଲା ।



## ଗୌତମ ଦେବ ।

### ପ୍ରାୟ୍ ୧୨୨-୧୪୪ ଖ୍ରୀ: ଅ:

ଶଙ୍କର ଦେବଙ୍କ ପରେ ଗୌତମ ଦେବ ରାଜା ହେଲେ । ତାଙ୍କ ସମୟରେ ମଧ୍ୟ କୋଶଳ ଉତ୍କଳ ଗଞ୍ଜାମ ମିଶି କଳିଙ୍ଗ ନାମଧାରଣ କରି ଥିଲା । ଏହି ରାଜା ପାଟଣା ଗଡ଼ ସିଂହାସନରେ ଅଭିଷିକ୍ତ ହୋଇ ଏହି ସମସ୍ତ ରାଜ୍ୟ ଶାସନ କରୁ ଥିଲେ ।



## ଇଷ୍ଟ ଦେବ ।

### ପ୍ରାୟ୍ ୧୪୪-୧୬୬ ଖ୍ରୀ: ଅ:

ଗୌତମ ଦେବଙ୍କ ପରେ ଇଷ୍ଟ ଦେବ ରାଜା ହେଲେ । ସେ ପାଟଣାଗଡ଼ ରାଜଧାନୀରେ ରହିଥିଲେ । ଓଡ଼ିଶା ଓ ଗଞ୍ଜାମର ଶାସନ କାର୍ଯ୍ୟ ନିମନ୍ତେ ଜଣେ୨ ପ୍ରତିନିଧି ନିଯୁକ୍ତ କରିଥିଲେ ।



## ସେବକ ଦେବ ।

### ପ୍ରାୟ୍ ୧୭୬-୧୮୮ ଖ୍ରୀ: ଅ:

ଇଷ୍ଟଦେବଙ୍କ ପରେ ସେବକ ଦେବ ରାଜା ହେଲେ । ସେ ପାଟଣା ଗଡକୁ କେନ୍ଦ୍ର ରାଜଧାନୀ କରି ଥିଲେ ଓ ଔଡଣା ଓ ଗଞ୍ଜାମରେ ପ୍ରାନ୍ତୀୟ ରାଜଧାନୀ ସ୍ଥାପନ କରି ଥିଲେ । ଏହାଙ୍କ ସମୟରେ ଏକ ଯବନ ରାଜା ଓଡିଶାକୁ ଆକ୍ରମଣ କରିଥିଲେ କିନ୍ତୁ ନିଷ୍ଫଳ ହୋଇ ଫେରିଗଲେ ।



## ବଜ୍ରନାଭ ଦେବ ।

### ପ୍ରାୟ୍ ୧୮୮-୨୧୦ ଖ୍ରୀ: ଅ:

ସେବକ ଦେବଙ୍କ ପରେ ବଜ୍ରନାଭ ଦେବ ରାଜା ହେଲେ ସେ ମଧ୍ୟ ପାଟଣା ଗଡ଼କୁ କେନ୍ଦ୍ର ରାଜଧାନୀ କରି ଔଡଣା ଓ ଗଞ୍ଜାମରେ ପ୍ରତିନିଧି ନିଯୁକ୍ତ କରି ଶାସନ କରୁଥିଲେ । ଏହାଙ୍କ ରାଜତ୍ୱରେ ଯବନମାନେ ମାରଓ୍ୱାର, ଦିଲ୍ଲି ଓ କାବୁଲ୍ ଦେଶରୁ ଔଡଣାକୁ ଆକ୍ରମଣ କଲେ କିନ୍ତୁ ଧାନ ପାଇ ଓ୍ୱାପସ ଗଲେ କାବୁଲ୍ ବା କାବୁଲ୍ଲେନିଅଁ ପାରସ୍ୟ ଦେଶକୁ ବୁଝାଉଥିଲ ।



## ମାନକୃଷ୍ଣ ଦେବ ।

### ପ୍ରାୟ୍ ୨୧୦-୨୩୨ ଖ୍ରୀ: ଅ:

ବଜ୍ରନାଭ ଦେବଙ୍କ ପରେ ମାନକୃଷ୍ଣ ଦେବ ରାଜା ହେଲେ ଏହାଙ୍କ ସମ୍ବନ୍ଧରେ କୌଣସି ବିଶିଷ୍ଟ ଘଟନା ଜଣା ଯାଇନାହିଁ ।



## କର୍ମଜିତ୍ ଦେବ ।

### ପ୍ରାୟ୍ ୨୩୨-୨୬୪ ଖ୍ରୀ: ଅ:

ମାନକୃଷ୍ଣଙ୍କ ପରେ କର୍ମଜିତ୍ ଦେବ ରଜା ହେଲେ ।



## ହାଟକେଶ୍ୱର ଦେବ ।

### ପ୍ରାୟ୍ ୨୬୪-୨୭୭ ଖ୍ରୀ: ଅ:

କର୍ମଜିତ ଦେବଙ୍କ ପରେ ହାଟକେଶ୍ୱର ଦେବ ରଜା ହେଲେ । ପାଟଣାରେ ହାଟକେଶ୍ୱର ନାମକ ଏକ ଅରଣ୍ୟ-ଅଛୁ । ସେଠାରେ ରଜା ତପସ୍ୟା କରିଥିଲେ-ତେଣୁ ସେହି-ବଣକୁ ହାଟକେଶ୍ୱର ବଣ କହନ୍ତି ।



## ବୀରଭୁବନ ଦେବ ।

### ପ୍ରାୟ୍ ୨୭୭—୨୯୮ ଖ୍ରୀ: ଅ:

ହାଟକେଶ୍ୱର ଦେବଙ୍କ ପରେ ବୀରଭୁବନ ଦେବ ରଜା-ହେଲେ ଏହାଙ୍କର ଅନ୍ୟନାମ ତ୍ରିଭୁବନ ଦେବ ।



## ନିର୍ମଳ ଦେବ ।

### ପ୍ରାୟ୍ ୨୯୮—୩୨୦ ଖ୍ରୀ: ଅ:

ବୀରଭୁବନ ଦେବଙ୍କ ପରେ ନିର୍ମଳ ଦେବ ରଜାହେଲେ ।



## ମହେନ୍ଦ୍ର ଦେବ ।

### ୩୨୦—୩୭୦ ଖ୍ରୀ: ଅ:

ନିର୍ମଳ ଦେବଙ୍କ ପରେ ମହେନ୍ଦ୍ର ଦେବ ରଜା ହେଲେ । ଏହାଙ୍କ ସମୟରେ ଢେଙ୍କାନାଳର ବ୍ୟାଘ୍ର ରଜା

ଢେଙ୍କାନାଳକୁ ସ୍ୱାଧୀନ କରି ଥିଲେ । ମଗଧ ସମ୍ରାଟ ଚନ୍ଦ୍ର ଗୁପ୍ତ ଏହାଙ୍କ ସଙ୍ଗରେ ଯୁଦ୍ଧ କରି ଜୟ କଲେ । ଓ କୋଶଳ କଳିଙ୍ଗ ଓ ଗଞ୍ଜାମ ଅଧିକାର କଲେ । ଏହି ରାଜା ଚନ୍ଦ୍ରାନରେ ରାଜମହେନ୍ଦ୍ରି ନଗର ସ୍ଥାପନ କରିଥିଲେ । ଏହାଙ୍କ ସମୟରେ ଓଡ଼ିଶାର ଅଂଶମାନ ଓ ଗଞ୍ଜାମ କୋଶଳରୁ ପୃଥକ୍ ହୋଇ ସ୍ୱାଧୀନ ହୋଇଗଲେ । ହେଲେହେଁ ସମସ୍ତ ରାଜ୍ୟ ମଗଧ ସମ୍ରାଟଙ୍କ ଅଧିକାର ଭୁକ୍ତ ହେଲା ।

---

## ୪ର୍ଥ ପରିଚ୍ଛେଦ ।

### ମଗଧ ସମ୍ରାଟ ସମୁଦ୍ରଗୁପ୍ତ

### ୩୨୦ ରୁ ୩୭୫ ଖ୍ରୀ:ଅ:

ମଗଧର ସମ୍ରାଟ ସମୁଦ୍ରଗୁପ୍ତ ଅତି ପରାକ୍ରମୀ ହେଲେ ସେ ଭାରତର ସମସ୍ତ ଅଂଶକୁ ସୈନ୍ୟ ପଠାଇ ଜୟ କଲେ । କଳିଙ୍ଗ ରାଜ୍ୟ ସେ ସମୟରେ ଖଣ୍ଡ ଖଣ୍ଡ ହୋଇ ବର୍ତ୍ତିତ ହୋଇଥିଲା । ସେ କୋଶଳର ମହେନ୍ଦ୍ର ଦେବଙ୍କୁ ଜୟକରି କୋଶଳ ଅଧିକାର କଲେ । ସେ ସଙ୍ଗେ ବ୍ୟାଘ୍ର ରାଜା ଯେ କି ମହେନ୍ଦ୍ରଙ୍କ ଠାରୁ ଅଲଗା ହୋଇଥିଲେ ତାଙ୍କୁ ସୁଦ୍ଧା ଜୟ କଲେ । ଏପରି କୋଶଳ ଜଙ୍ଗଲ ଓ କଳିଙ୍ଗ ସମଗ୍ର ରାଜ୍ୟ ତାଙ୍କର ସାମ୍ରାଜ୍ୟଭୁକ୍ତ ହେଲା । ସମୁଦ୍ର ଗୁପ୍ତ ଭାରତ ବ୍ୟାପୀ ସମ୍ରାଜ୍ୟ ଗଠନ କରିଥିଲେ । କୋଶଳ ରାଜ୍ୟରେ ତାଙ୍କର ଭାଇଙ୍କ ଜଣକୁ ସାମନ୍ତ ରାଜା ବା ଶାସନ କର୍ତ୍ତା ନିଯୁକ୍ତ କରିଥିଲେ । ଏସମୟରେ ଛତିଶଗଡ ଓ ମଧ୍ୟ ପ୍ରଦେଶ ଇତ୍ୟାଦି ମିଶି କୋଶଳ ରାଜ୍ୟ ହୋଇଥିଲା । ସମୁଦ୍ରଗୁପ୍ତ ୩୭୫ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ମଗଧ ସମ୍ରାଟ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ।

### ୩୭୫ ରୁ ୪୧୩ ଖ୍ରୀ : ଅ:

ସମୁଦ୍ର ଗୁପ୍ତଙ୍କ ପରଲୋକ ପରେ ୨ୟ ଚନ୍ଦ୍ରଗୁପ୍ତ ସମ୍ରାଟ ହେଲେ । ସେ ମଗଧ ସାମ୍ରାଜ୍ୟକୁ ବିଶେଷ ଉନ୍ନତ କରି ବିକ୍ରମାଦିତ୍ୟ ଉପାଧି ଧାରଣ କରିଥିଲେ । ସେ ତାଙ୍କର ବଂଶଧର ମାନଙ୍କ ଦ୍ୱାରା କୋଶଳ ରାଜ୍ୟକୁ ଶାସନ କରୁଥିଲେ ।



## ମଗଧ ସମ୍ରାଟ କୁମାର ଗୁପ୍ତ ।

### ୪୧୩ ରୁ ୪୫୦ ଖ୍ରୀ : ଅ :

ଚନ୍ଦ୍ରଗୁପ୍ତଙ୍କର ପରଲୋକ ପରେ ତାଙ୍କର ପୁତ୍ର କୁମାରଗୁପ୍ତ ସମ୍ରାଟ ହେଲେ । ତାଙ୍କର ରାଜତ୍ୱରେ ବୌଦ୍ଧଧର୍ମ ଦେଶରେ ହ୍ରାସ ପଡିଲା ଓ ବ୍ରାହ୍ମଣ ଧର୍ମ ପୁନରପି ଉଦୟ ହେଲା । ସେ ତାଙ୍କର ଭାଇ କଣକର ଦ୍ୱାରା କୋଶଳ ରାଜ୍ୟର ଶାସନ ଚଳାଉ ଥିଲେ ।



## ମଗଧ ସମ୍ରାଟ ସ୍କନ୍ଦଗୁପ୍ତ ବିକ୍ରମାଦିତ୍ୟ ·

### ୪୫୦ ର ୪୮୦ ଖ୍ରୀ : ଅ :

କୁମାର ଗୁପ୍ତଙ୍କର ପରଲୋକ ପରେ ତାଙ୍କର ପୁତ୍ର ସ୍କନ୍ଦଗୁପ୍ତ ମଗଧ ସାମ୍ରାଜ୍ୟର ଗାଦୀରେ ଅଭିଷିକ୍ତ ହେଲେ । ଏହାଙ୍କର ରାଜତ୍ୱରେ ହୁଣମାନେ ପଶ୍ଚିମ ଦିଗରେ ପ୍ରବଳ ହେଲେ ଓ ତାଙ୍କର ଅନୁଜ ଭାଇ ପୁରଗୁପ୍ତ ବିଦ୍ରୋହ କଲେ । ପ୍ରତିଷ୍ଠାନ ବା ଏଲାହାବାଦ ଯୁଦ୍ଧରେ ସେ ମାରି ପଡିଲେ ତାଙ୍କ ଉତ୍ତର ଧିକାରୀ ଦୁର୍ବଳ ଥିବାରୁ ସମସ୍ତେ ସ୍ୱାଧୀନ ହେଲେ ।

## ଶବର ରାଜା

## ୬ ଷ୍ଠ ଶତାବ୍ଦିର ପ୍ରଥମ ପାଦ ।

ଷଷ୍ଠଶତାବ୍ଦିର ପ୍ରଥମ ପାଦରେ କୋଶଳର ମହାକାନ୍ତାର ପ୍ରଦେଶରେ ଶବର ରାଜାମାନେ ଶାସନ କରୁଥିଲେ । ମଗଧର ଗୁପ୍ତ ସମ୍ରାଟଙ୍କର ଅଭ୍ୟୁଦୟ ସମୟରେ ସେମାନେ ତାଙ୍କର ଅଧୀନରେ ସାମନ୍ତରାଜା ହୋଇ ରହିଥିଲେ । ସେମାନେ ପୁଣି ଏହି ମଉକାରେ ସ୍ୱାଧୀନ ହେଲେ । ଏହି ଶବର ରାଜାଙ୍କର ରାଜଧାନୀ ଶବରମାଲ ଥିଲା । ଶବର ମାଲ ବର୍ତ୍ତମାନର ଶ୍ରୀଅର ମାଳଅଟେ ଏହା ରାଇପୁର ଜିଲ୍ଲାରେଅଛି । ବର୍ତ୍ତମାନ ସେଠାରେ ଗଣ୍ଡ ଜାତୀୟ ଜମିଦାର ଜଣେ ଅଛନ୍ତି ଏହି ଶବର ମାଳ କୋଶଳ ରାଜ୍ୟର ଏକ ଅଂଶ ଥିଲା ।



## ରାଜା ଉଦାୟନ କେଶରୀ ବା କୋଶଳଗୁପ୍ତ

## ୫୬୦ ଖ୍ରୀ: ଅ: ରୁ ୫୩୩ ଖ୍ରୀ: ଅ: ପର୍ଯ୍ୟନ୍ତ

କୋଶଳରାଜ୍ୟ ୩୬୦ ରୁ ୫୩୩ ଖ୍ରୀ: ଅ: ପର୍ଯ୍ୟନ୍ତ ମଗଧ ରାଜାମାନଙ୍କ ଅଧୀନରେ ରହିଲା । ମଗଧ ସମ୍ରାଟ ସମୁଦ୍ରଗୁପ୍ତ ପ୍ରାୟ ସମସ୍ତଭାରତ ବର୍ଷ ଜୟକରେ ବିଜିତ ରାଜ୍ୟର ବିଭିନ୍ନ ଅଂଶରେ ପ୍ରତିନିଧି ବା ଶାସନକର୍ତ୍ତା ସ୍ୱରୂପରେ ନିଜବଂଶୀୟ ବ୍ୟକ୍ତିମାନଙ୍କୁ ନିଯୁକ୍ତ କରି ଶାସନ କରୁଥିଲେ । ଏହି କୋଶଳ ଦେଶରେ ତାଙ୍କର ବଂଶର ଯେଉଁ ସାମନ୍ତରାଜା-ମାନେ ନିଯୁକ୍ତ ହୋଇ ଥିଲେ ସେମାନେ କୋଶଳ ଗୁପ୍ତ ନାମରେ ପରିଚିତ ହୋଇଥିଲେ । ଆଉ ମଗଧର ଗୁପ୍ତବଂଶୀୟ ମାନଙ୍କୁ ମଗଧ ଗୁପ୍ତ ବୋଲିଯାଉଥିଲା । ଏହି କୋଶଳଗୁପ୍ତ ବଂଶୀୟ ମାନଙ୍କୁ କେଶରୀ ବଂଶୀୟ ରାଜାବୋଲି ମଧ୍ୟ କହୁଥିଲେ

ମଗଧ ସମ୍ରାଟ ସମୁଦ୍ର ଗୁପ୍ତଙ୍କର ମୃତ୍ୟୁପରେ ଏହି ରାଜ୍ୟ ତାଙ୍କର ବଂଶଧରମାନଙ୍କ ସାମନ୍ତରାଜ୍ୟ ରୂପରେ ପରିଗଣିତ ହୋଇ ଶାସିତ ହେଉଥିଲା । ଅବଶେଷରେ ମଗଧର ଗୁପ୍ତ ବଂଶୀୟ ରାଜା ସ୍କନ୍ଦଗୁପ୍ତ ଦୁର୍ବଳ ହୋଇପଡିବାରୁ ଅଧୀନସ୍ଥ ରାଜାମାନେ ଧୀରେ ଧୀରେ ସ୍ୱାଧୀନତା ଘୋଷଣା କରିବାକୁ ଲାଗିଲେ । ଏହି ସମୟରେ ଉଦୟନ କେଶରୀ ନାମକ ଜଣେ କୋଶଳଗୁପ୍ତ ବଂଶୀୟ ନରପତି କୋଶଳ ଦେଶରେ ସାମନ୍ତ ରାଜା ରୂପରେ ଶାସନ କରୁଥିଲେ । ସେ ଗୁନ୍ଧା ବା ଭଣ୍ଡାରରେ କୋଶଳ ଦେଶର ରାଜଧାନୀ ସ୍ଥାପନ କରିଥିଲେ । ସେ ପରିଶେଷରେ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ପରାଜିତ ଓ ବିତାଡିତ ହେବାରୁ ରାୟପୁର ଜିଲ୍ଲାକୁ ବାହାରି ଆସି ଶିରପୁରରେ ରାଜଧାନୀ ସ୍ଥାପନ କଲେ । ଏହି ଶିରପୁର ଆଜିକାଲି ଶିରପୁର ବା ଶ୍ରୀପୁର ଜମିଦାରୀ ନାମରେ ପରିଚିତ ହେଉଅଛି ।



## ଇନ୍ଦ୍ରବଳ କେଶରୀ ବା କୋଶଳଗୁପ୍ତ ।

### ପ୍ରାୟ୍ ୫୩୩ ରୁ ୫୪୬ ଖ୍ରୀ: ଅ:

ଉଦାୟନ କେଶରୀଙ୍କ ପରଲୋକପରେ ତାଙ୍କ ଜ୍ୟେଷ୍ଠପୁତ୍ର ଇନ୍ଦ୍ରବଳଗୁପ୍ତ ଶିରପୁର ରାଜଧାନୀରେ ରାଜା ହୋଇ କୋଶଳ ରାଜ୍ୟକୁ ଶାସନ କଲେ । ସେହି ସ୍ଥାନରେ ଥାଇ କୋଶଳର ଛତିଶଗଡ ଓ ମଧ୍ୟ ପ୍ରଦେଶ ଶାସନ କରିବାକୁ ଲାଗିଲେ । ସେ ପ୍ରାୟ ୫୪୬ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ମାଳବରାଜ ଯଶୋଧର୍ମଦେବ ବିକ୍ରମାଦିତ୍ୟ
## ୬ଷ୍ଠ ଶତାବ୍ଦୀର ୨ୟ ପାଦରେ

ହୂଣମାନଙ୍କର ଆକ୍ରମଣରେ ମଗଧ ସମ୍ରାଜ୍ୟ ଧ୍ୱସ୍ତ ହେବାରୁ କେତେକ ସାମନ୍ତ ରାଜାମାନେ ସ୍ୱାଧୀନ ହେଲେ । ମାଳବର ଯଶୋଧର୍ମ ଦେବ ସୁଦ୍ଧା ସ୍ୱାଧୀନ ହେଲେ । ସେ ସୈନ୍ୟ ବୃଦ୍ଧି କରି ହୂଣମାନଙ୍କୁ ଜୟ କଲେ ଓ ମଗଧ ରାଜ୍ୟକୁ ସୁଦ୍ଧା ଜୟ କଲେ । ତାହାଛଡ଼ା ଗୌଡ଼, ବଙ୍ଗ, ଓଡ଼ିଶା, ଓ କୋଶଳକୁ ସୁଦ୍ଧା ଜୟ କଲେ । ସେ ହିମାଳୟଠାରୁ ଆରମ୍ଭ କରି ମହେନ୍ଦ୍ରଗିରି ପର୍ଯ୍ୟନ୍ତ ଓ ବ୍ରହ୍ମପୁତ୍ର ନଦୀଠାରୁ ପଶ୍ଚିମ ସମୁଦ୍ର ପର୍ଯ୍ୟନ୍ତ ଆପଣା ସାମ୍ରାଜ୍ୟ ବିସ୍ତାର କଲେ । ଏ ସମୟରେ ଇନ୍ଦ୍ରବଳ କେଶରୀ ବା ଗୁପ୍ତ ତାଙ୍କର ସାମନ୍ତ ରାଜା ହୋଇ ମଧ୍ୟ-ପ୍ରଦେଶ ଓ ଛତିଶଗଡ଼ରେ ରହିଲେ । ଯଶୋଧର୍ମଙ୍କ ପରେ ସେହି ରାଜ୍ୟ ଛିନ୍ନଭିନ୍ନ ହେଲା ।



## ଭବଦେବରଣକେଶରୀ ।
## ପ୍ରାୟ ୫୪୭—ରୁ ୫୬୯ ଖ୍ରୀ: ଅ:

ଏ ସମୟରେ ଇନ୍ଦ୍ରବଳଙ୍କପୁତ୍ର ନନ୍ନଦେବ ନାବାଳକ ଥିଲେ । ତେଣୁ ସେହି ନାବାଳକ ପକ୍ଷରୁ ଇନ୍ଦ୍ରବଳଙ୍କର ଭାଇ ଭବଦେବରଣ କେଶରୀ ରାଜା ହୋଇ ଶିରପୁର ରାଜଧାନୀରେ ରହିଲେ ।



## ବାକଟକ ବା ବାକାଟକ ରାଜା ।
## ୫୭୦ ଖ୍ରୀ: ଅ:

ଭବଦେବ ରଣ କେଶରୀଙ୍କ ସମୟରେ ମଧ୍ୟ ଭାରତବର୍ଷର ବାକାଟ ବା ବାକାଟକ ମାନେ କୋଶଳ ରାଜ୍ୟ ଆକ୍ରମଣ

କଲେ । ସେମାନେ ଏହାଙ୍କ ସଙ୍ଗେ ଯୁଦ୍ଧକରି ଏହାଙ୍କୁ ନିହତ-କଲେ ଓ କୋଶଳ ରାଜ୍ୟ ଅଧିକାର କଲେ । ସେମାନେ କଳିଙ୍ଗ ରାଜ୍ୟକୁ ମଧ୍ୟ ଆକ୍ରମଣ କଲେ ।

ସେହି ସମୟରେ କଳିଙ୍ଗ ରାଜ୍ୟ ରୁଷିକୁଲ୍ୟା, ତେଲ, ଇନ୍ଦ୍ରାବତୀ ଓ ଗୋଦାବରୀ ନଦୀ ମଧ୍ୟବର୍ତ୍ତୀ ଭୂଖଣ୍ଡ ଥିଲା ।



## ନାନ୍ନ ଦେବ ।

### ପ୍ରାୟ ୫୬୯ ଖ୍ରୀ: ଅ: ରୁ ୫୭୨ ଖ୍ରୀ: ଅ:

ନାନ୍ନଦେବ ଏହି ବାକାଟକ ମାନଙ୍କୁ ରାଜ୍ୟରୁ ତଡ଼ିବା ନିମନ୍ତେ ଅନେକ ସୈନ୍ୟ ସଂଗ୍ରହ କରି ଯୁଦ୍ଧ କଲେ । ଯୁଦ୍ଧରେ ବାକାଟକମାନେ ପରାସ୍ତ ହେବାରୁ ସେମାନଙ୍କୁ କୋଶଳ ରାଜ୍ୟରୁ ତଡି ଦେଇ କୋଶଳ ରାଜ୍ୟର ରାଜଧାନୀ ଶିରପୁରଠାରେ ରାଜା ହେଲେ । ସେ ପ୍ରାୟ ୫୭୨ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

## ଈଶାନ ଦେବ ।

### ପ୍ରାୟ ୫୭୨—୫୮୫ ଖ୍ରୀ: ଅ:

ନାନ୍ନଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ମହାଶିବ ତିବର ନାବାଳକ ଥିବାରୁ ତାଙ୍କ ପକ୍ଷରୁ ନାନ୍ନ ଦେବଙ୍କ ଭାଇ ଈଶାନ ଦେବ ରାଜା ହେଲେ । ଏହାଙ୍କ ସମୟରେ ମଧ୍ୟ ବାକାଟକ ମାନେ କୋଶଳ ରାଜ୍ୟ ଅଧିକାର କରିବାକୁ ଚେଷ୍ଟା କରୁ-ଥିଲେ । କିନ୍ତୁ ଈଶାନ ଦେବ ବହୁସୈନ୍ୟ ସଂଗ୍ରହ କରି ସେମାନଙ୍କ ସଙ୍ଗରେ ଯୁଦ୍ଧ କରି ତାଙ୍କର ଦର୍ପ ଚୂର୍ଣ୍ଣ କଲେ । କ୍ରମେ ମହାଶିବ ତିବର ଯୁବକ ନାବାଳକ ଅବସ୍ଥା ଅତିକ୍ରାନ୍ତ ହେବାରୁ ସେ ତାଙ୍କୁ ଶିରପୁର ରାଜଧାନୀରେ ଅଭିଷିକ୍ତ କରି ତାଙ୍କ ରାଜ୍ୟ ତାଙ୍କୁ ସମର୍ପଣ କଲେ ।

## ମହାଶିବ ତବର ଦେବ ।

### ପ୍ରାୟ୍ ୫୮୫—୫୯୮ ଖ୍ରୀ: ଅ:

ଏହାଙ୍କ ସମୟରେ କୋଶଳର ଉତ୍ତର ପୂର୍ବ ଦାଗସ୍ଥ ଶରଭ ବଂଶୀୟ ରାଜାମାନେ ବିଦ୍ରୋହ କରିବାକୁ ଚେଷ୍ଟା କରୁଥିବାରୁ ସେ ସେମାନଙ୍କ ସଙ୍ଗରେ ଯୁଦ୍ଧକରି ବଶୀଭୂତ କରିଥିଲେ । ଓ କୋଶଳ ରାଜ୍ୟକୁ ନିଷ୍କଣ୍ଟକ କରି ଶାସନ କରୁଥିଲେ । ସେ ପ୍ରାୟ ୫୯୮ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ଚନ୍ଦ୍ର ଗୁପ୍ତ ।

### ପ୍ରାୟ୍ ୫୯୮—୬୧୧ ଖ୍ରୀ: ଅ:

ମହା ଶିବତବର ଦେବଙ୍କ ପୁତ୍ର ନଥିବାରୁ ତାଙ୍କ ଭ୍ରାତ ଚନ୍ଦ୍ରଗୁପ୍ତ କୋଶଳ ରାଜ୍ୟର ରାଜସିଂହାସନରେ ଅଭିଷିକ୍ତ ହେଲେ । ଏହାଙ୍କ ସମୟରେ ମଧ୍ୟ ଶରଭ ବଂଶୀୟ ରାଜାମାନେ ବିଦ୍ରୋହ କରିଥିଲେ । କିନ୍ତୁ ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ପରାସ୍ତ ହୋଇ ଥିଲେ । ସେ ପ୍ରାୟ ୬୨୧ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ହର୍ଷଗୁପ୍ତ ।

### ପ୍ରାୟ୍ ୬୧୧ – ୬୨୪ ଖ୍ରୀ: ଅ:

ଚନ୍ଦ୍ରଗୁପ୍ତଙ୍କ ମୃତ୍ୟୁପରେ ହର୍ଷଗୁପ୍ତ ଶ୍ରୀପୁରରାଜ ଧାନୀରେ ଅଭିଷିକ୍ତ ହେଲେ । ଏହାଙ୍କ ସମୟରେ ମଧ୍ୟ ଶରଭ ବଂଶୀୟ ରାଜାମାନେ ବିଦ୍ରୋହ କରୁଥିଲେ । ସେ ସେମାନଙ୍କୁ ଦମନ କରିଥିଲେ । ଏହି ରାଜା ମଗଧର ରାଜା ସୂର୍ଯ୍ୟବର୍ମାଙ୍କର ଦୁହିତାଙ୍କ ପାଣି ଗ୍ରହଣ କରିଥିଲେ । ତାହାଙ୍କ

ଗର୍ଭରୁ ବାଳାର୍ଜୁନ ଶିବ ଗୁପ୍ତ ଜନ୍ମଗ୍ରହଣ କରିଥିଲେ । ସେ ପ୍ରାୟ ୬୨୪ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ବାଳାର୍ଜୁନ ଶିବଗୁପ୍ତ ।

### ପ୍ରାୟ ୬୨୪—୬୩୭ ଖ୍ରୀ: ଅ:

ହର୍ଷ ଗୁପ୍ତଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ବାଳାର୍ଜୁନ ଶିବଗୁପ୍ତ କୋଶଳ ରାଜ ସିଂହାସନରେ ଅଭିଷିକ୍ତ ହେଲେ । ଏହାଙ୍କ ସମୟରେ ମଧ୍ୟ ଶରଭ ବଂଶୀୟ ରାଜାମାନେ ବିଦ୍ରୋହ କରୁଥିଲେ । ତେଣୁ ବାଳାର୍ଜୁନ ଶିବଗୁପ୍ତ ବହୁ ସୈନ୍ୟ ସଂଗ୍ରହ କରି ସେମାନଙ୍କୁ ଦମନ କରିଥିଲେ । ସେ ପ୍ରାୟ ୬୩୭ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## କନୋଜ ଓ ମାଳବ ରାଜା ହର୍ଷବର୍ଦ୍ଧନ ବା ଶିଳାଦିତ୍ୟ ।

### ୬୦୬ ରୁ ୬୪୭ ଖ୍ରୀ: ଅ:

କାନ୍ୟକୁବ୍ଜ ବା କନୋଜରେ ପ୍ରଭାକର ବର୍ଦ୍ଧନ ନାମକ ରାଜା ରାଜ୍ୟ ସ୍ଥାପନ କରିଥିଲେ । ତାଙ୍କର ରାଜଧାନୀ ସ୍ଥାନେଶ୍ବର ଥିଲା । ତାଙ୍କର ଦୁଇଟି ପୁତ୍ର । ରାଜ୍ୟ ବର୍ଦ୍ଧନ ଓ ହର୍ଷ ବର୍ଦ୍ଧନ । ଜ୍ୟେଷ୍ଠ ରାଜ୍ୟବର୍ଦ୍ଧନ ମାଳବ ରାଜା ଯଶୋଧର୍ମ ଦେବଙ୍କୁ ଜୟ କରି ନିହତ କଲେ । ତେଣୁ ତାଙ୍କ ଅଧୀନସ୍ଥ କୋଶଳ ଓ କଳିଙ୍ଗ ସୁଦ୍ଧା ଅଧିକାର କଲେ । ସେ ସମୟରେ କର୍ଣ୍ଣ ସୁବର୍ଣ୍ଣ ବା ବଙ୍ଗ ବା ଗୌଡ ରାଜ୍ୟରେ ଶଶାଙ୍କ ନାମରେ ଜଣେ ରାଜା ଥିଲେ । ଶଶାଙ୍କ ଓ ରାଜ୍ୟବର୍ଦ୍ଧନ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ହେବାରୁ ରାଜ୍ୟ-ବର୍ଦ୍ଧନଙ୍କୁ ବିଶ୍ବାସ ଦେଖାଇ ଶଶାଙ୍କ ଡାକି ନେଇ ନିହତ କଲେ ।

ରାଜ୍ୟ ବର୍ଦ୍ଧନଙ୍କର ଭ୍ରାତା ହର୍ଷବର୍ଦ୍ଧନ କନୋଜରେ ରାଜା ହେଲେ । ସେ ପଣ କଲେ—ଯେ ପର୍ଯ୍ୟନ୍ତ ସେ ଶତ୍ରୁ-ଙ୍କୁ ନିହତ ନ କରନ୍ତି ସେ ପର୍ଯ୍ୟନ୍ତ ଦକ୍ଷିଣ ହସ୍ତରେ ଭୋଜନ କରିବେ ନାହିଁ । ସେ ପ୍ରତିହିଂସା ସାଧନ ନିମନ୍ତେ ଶଶାଙ୍କ ସଙ୍ଗରେ ଯୁଦ୍ଧ କଲେ । ଶଶାଙ୍କ ଗୃହଭୃତ୍ୟ ରାଜା ୨ୟ ପୁଲ କେଶୀଙ୍କ ସାହାଯ୍ୟ ମାଗିବାରୁ ସେ ତାଙ୍କୁ ସାହାଯ୍ୟ ଦେଲେ । ପୁଣି ହର୍ଷବର୍ଦ୍ଧନ କାମରୂପ ( ଆସାମ୍ ) ରାଜା ଭାସ୍କର ବର୍ମାଙ୍କ ସାହାଯ୍ୟ ପାଇଲେ । ଯୁଦ୍ଧ ଆରମ୍ଭ ହେଲା ପର ଶେଷରେ ଶଶାଙ୍କ ୬୧୯ରୁ ୬୩୭ ଖ୍ରୀ: ଅ: ମଧ୍ୟରେ ପରାଜିତ ହୋଇ ନିହତ ହେଲେ । କର୍ଣ୍ଣ ସୁବର୍ଣ୍ଣ ହର୍ଷବର୍ଦ୍ଧ-ନଙ୍କ ରାଜ୍ୟରେ ଯୁକ୍ତ ହେଲା । ଏହି ପ୍ରକାରେ ହର୍ଷବର୍ଦ୍ଧନ ରାଜା ମାଳବ କାନ୍ୟକୁବ୍ଜ କୋଶଳ କଳିଙ୍ଗ ଓ କର୍ଣ୍ଣ ସୁବର୍ଣ୍ଣ ଏହି ରାଜ୍ୟ ମାନଙ୍କର ରାଜା ହୋଇ ରହିଲେ । ୨ୟ ପୁଲ କେଶୀ ପରାଜିତ ହେବାରୁ ପୁଣି ହର୍ଷ ବର୍ଦ୍ଧନଙ୍କ ଠାରେ ବାରମ୍ବାର ଯୁଦ୍ଧ କଲେ । ଶେଷରେ ତାଙ୍କୁ ଜୟ କଲେ ।

---

## ଶିବ ଗୁପ୍ତ ।

## ପ୍ରାୟ ୬୬୦ ଖ୍ରୀ: ଅ:

କୋଶଳ ଗୁପ୍ତ ବଂଶୀୟ ନରପତି ମାନେ ଶିବ ପୁରରେ ରାଜତ୍ୱ କରୁଥିଲେ ସମୟରେ ଆଦ୍ୟ ରାଜ ଶରଭ ନାମ କୋଶଳ ରାଜ୍ୟର ଦକ୍ଷିଣ ପୂର୍ବ ଅଂଶ ଜୟକରି ତହିଁର ରାଜା ହୋଇ ଶ୍ରୀପୁର ଓ କୋଶଳ ନଗରରେ ରାଜଧାନୀ ସ୍ଥାପନ କରି ରାଜତ୍ୱ କରୁଥିଲେ । ଏହାଙ୍କ ସମୟରେ ଚିନ ପରିବ୍ରାଜକ ହୁଏନ୍‌ସାଂ ୬୨୯-୬୪୫ ଖ୍ରୀ ଅ: ମଧ୍ୟରେ ଏହି

କୋଶଳ ରାଜ୍ୟକୁ ଦକ୍ଷିଣ ପ୍ରଦେଶରୁ ଆସି କୋଶଳ ରାଜଧାନୀ ଶ୍ରୀପୁର ନିକଟରେ କିଛିଦିନ ପାଇଁ ରହି ଥିଲେ । ହୁଏନସାଂ ତାଙ୍କର ଭ୍ରମଣ ବୃତ୍ତାନ୍ତରେ ଲେଖି ଅଛନ୍ତି ଯେ ଶତ ବାହାନ ରାଜା ବୌଦ୍ଧଧର୍ମାବଲମ୍ବୀ ଥିଲେ । ସେ କୋଶଳ ନଗରରେ ବୌଦ୍ଧ ମନ୍ଦିର ତିଆରି କରାଇ ତହିଁରେ ବୌଦ୍ଧ ମୂର୍ତ୍ତି ସ୍ଥାପନ କରି ପୂଜା କରୁ ଥିଲେ । ଏହି ମନ୍ଦିରର ଭଗ୍ନାବଶେଷ ଏ ପର୍ଯ୍ୟନ୍ତ ଶ୍ରୀପୁରରେ ଅଛି ଓ ବୁଦ୍ଧ ମୂର୍ତ୍ତି ପାଷାଣ ସ୍ତୂପ ଉପରେ ପଡି ରହିଅଛି । କୋଶଳ ରାଜ୍ୟର ପରିଧି ୬୦୦୦ ଲି ବା ୧୦୦୦ ମାଇଲ ବିସ୍ତୃତ ଥିଲା । ସେ ସମୟରେ କୋଶଳର ଉତ୍ତରରେ ଉଜ୍ଜୟିନୀ, ଦକ୍ଷିଣରେ କଳିଙ୍ଗ ଓ ଅନ୍ଧ୍ର ରାଜ୍ୟ, ପଶ୍ଚିମରେ ମହାରାଷ୍ଟ୍ର ଓ ପୂର୍ବରେ ଉତ୍କଳ ରାଜ୍ୟ ଥିଲା । ଶତବାହାନ ନରପତିଙ୍କ ସଭାରେ ନାଗାର୍ଜ୍ଜୁନ ନାମରେ ଜଣେ ବୈଦ୍ୟରାଜ ଥିଲେ । ସେ ଏକ ପ୍ରକାର ଔଷଧ ତିଆରି କରି ପାରୁ ଥିଲେ ତାହା ସେବନ କରି ଲୋକେ ଶତବର୍ଷ ପରମାୟୁ ଲାଭ କରି ପାରୁଥିଲେ । ଏହି ଔଷଧ ଶତ ବାହନ ନରପତି ସେବନ କରୁଥିଲେ । ଏହି ଔଷଧ ଗନ୍ଧମାଦନ ପର୍ବତରୁ ମିଳୁ ଥିଲା । ଅଦ୍ୟାବଧି ମଧ୍ୟ ଏହି ପର୍ବତରେ "ଅମର-ଔଷଧି" ଥିବାର ପ୍ରବାଦ ଅଛି । କୋଶଳ ଗୁପ୍ତ ବଂଶୀୟ ରାଜାମାନେ ଏହାଙ୍କର ସାମନ୍ତ ରାଜା ଥିଲେ । ଏହି ଶତବାହନ ରାଜା ଦାକ୍ଷିଣାତ୍ୟର ଚାଲୁକ୍ୟ ରାଜା ୨ୟ ପୁଲକେଶୀଙ୍କ ଦ୍ୱାରା ପରାଜିତ ହେବାରୁ ଶିର ପୁରରୁ କୋଶଳ ଗୁପ୍ତ ମାନଙ୍କ ରାଜଧାନୀ ଏହାଙ୍କର ଅଧୀନ ହୋଇ ରହିଲା । ଓ ତହିଁରେ କୋଶଳ ଗୁପ୍ତ ବଂଶୀୟ ରାଜାମାନେ ତାଙ୍କର ସାମନ୍ତ ରାଜା ହୋଇ ରହିଲେ ।



## ଚାଲୁକ୍ୟ ରାଜା ୨ୟ ପୁଲକେଶୀ
## ୬୦୮ରୁ ୬୪୨ ଖ୍ରୀ: ଅ:

ଦକ୍ଷିଣାତ୍ୟରେ ଚାଲୁକ୍ୟ ବଂଶୀୟ କ୍ଷତ୍ରିୟମାନେ ଅଯୋଧ୍ୟା ପ୍ରଦେଶରୁ ଆସି ୬ଷ୍ଠ ଶତାବ୍ଦୀର ଆରମ୍ଭରେ ରହୁଥିଲେ । ଅନ୍ଧ୍ର ସାମ୍ରାଜ୍ୟ ଲୋପ ହେଲା ପରେ ସେମାନେ ମହାରାଷ୍ଟ୍ର କ୍ଷତ୍ରିୟ-ମାନଙ୍କୁ ଜିଣି ସ୍ୱରାଜ୍ୟ ବିସ୍ତାର କଲେ । ସେମାନଙ୍କର ରାଜା ୨ୟ ପୁଲକେଶୀ ହର୍ଷବର୍ଦ୍ଧନଙ୍କ ସଙ୍ଗରେ ଅନେକ ଥର ଯୁଦ୍ଧ କରି ତାଙ୍କୁ ପରାସ୍ତ କଲେ ଓ ତାଙ୍କ ରାଜ୍ୟ ଜୟ କଲେ । ଶତ ବାହାନଙ୍କୁ ଯୁଦ୍ଧା ପରାଜିତ କରି ବିତାଡ଼ିତ କଲେ । ଏହିରୂପେ କଳିଙ୍ଗ ଓ କୋଶଳ ତାଙ୍କର ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ତାଙ୍କର ରାଜଧାନୀ ନାସିକରେ ଥିଲା । କୋଶଳ ଗୁପ୍ତ ରାଜା ତାଙ୍କର ସାମନ୍ତ ରାଜା ହୋଇ ରହିଲେ ।

---

## ରଣକେଶରୀ ।
## ପ୍ରାୟ ୬୩୨ରୁ ୬୫୦ ଖ୍ରୀ: ଅ:

ବାଳାର୍ଜୁନ ଶିବ ଗୁପ୍ତଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ମହା-ଭବ ଗୁପ୍ତ ନାବାଳକ ଥିବାରୁ ତାଙ୍କର ପକ୍ଷରୁ ବାଳାର୍ଜୁନଙ୍କ ଭ୍ରାତା ରଣ କେଶରୀ ଶ୍ରୀପୁର ରାଜ ସିଂହାସନରେ ଅଭିଷିକ୍ତ ହେଲେ । ମହାଭବ ଗୁପ୍ତଙ୍କର ନାବାଳକ ଅବସ୍ଥା ଅତୀତ ହେବାରୁ ତାଙ୍କୁ ତାଙ୍କର ରାଜ୍ୟ ସମର୍ପଣ କରି ଶିରପୁର ରାଜ-ଧାନୀରେ ଅଭିଷେକ କଲେ ।

---

## ମହାଭବ ଗୁପ୍ତ ।
## ପ୍ରାୟ ୬୫୦ରୁ ୬୬୩ ଖ୍ରୀ: ଅ:

ମହାଭବ ଅନ୍ୟାନ୍ୟ ଗୁପ୍ତ ବଂଶୀୟ ରାଜାମାନଙ୍କ ଅପେକ୍ଷା

ଦୁର୍ବଳ ହେବାରୁ ଶରଭ ବଂଶୀୟ ରାଜାମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ଶିର ପୁରରୁ ପଳାଇ ଅପି ବିନୀତାଂଶୁ ପୁର ବା ବିନକାରେ ରାଜଧାନୀ ସ୍ଥାପନ କରି ରହିଲେ । ସେଠାରେ କିଛି ସମୟ ରହି କୋଶଳ ନଗର ବା ରାଣୀପୁର ଝରିଆଲରେ ରାଜଧାନୀ ସ୍ଥାପନ କରି ରହିଲେ । ୨ୟ ପୁଲକେଶୀଙ୍କ ଦ୍ୱାରା ଅତ୍ର ରାଜା ଶତ ବାହନ ବିତାଡ଼ିତ ହେବା ଦିନରୁ ଏଠା ରାଜଧାନୀ ଶୂନ୍ୟ ଥିଲା । ମହାଭବ ଗୁପ୍ତ ପ୍ରାୟ ୭୨୩ ଖ୍ରୀ: ଅ: ରେ ପରଲୋକ ଗମନ କରେ ।

—✱—

## ଶରଭ ବଂଶୀୟ ରାଜା ଓ ତାଙ୍କର ବଂଶଧରମାନେ ।

### ୭ମ ଶତାବ୍ଦିର ତୃତୀୟ ପାଦରେ ।

ସମ୍ବଲପୁର ଜିଲ୍ଲାରେ ଶରଭ ବଂଶୀୟ ରାଜା ଶାସନ କରୁଥିଲେ । ସେ ଆକ୍ରମଣ କରି ମହାଭବ ଗୁପ୍ତଙ୍କୁ ତଡ଼ିଦେଇ ଶିରପୁର ରାଜଧାନୀ ଅଧିକାର କରି ରହିଲେ । ସେ ପୂର୍ବେ କୋଶଳ ଗୁପ୍ତ ରାଜାଙ୍କର ସାମନ୍ତ ରାଜାଥିଲେ କିନ୍ତୁ ବିଦ୍ରୋହୀ ହୋଇ ବାର ବାର ତାଙ୍କୁ ଆକ୍ରମଣ କରି ଆସୁଥିଲେ ।

—○—

## ଶିବ ଗୁପ୍ତ ।

### ପ୍ରାୟ ୬୬୩ ୬୭୫ ଖ୍ରୀ: ଅ:

ମହାଭବ ଗୁପ୍ତଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଶିବ ଗୁପ୍ତ କୋଶଳ ନଗରର ରାଜସିଂହାସନରେ ଅଭିଷିକ୍ତ ହେଲେ । ସେ ସମୟ ସମଦ୍ଧରେ ବିନୀତାଶୁପୁର ବା ବିନକାରେ ପଧ୍ୟ ରହୁ ଥିଲେ । ସେ ୬୭୫ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

—✱—

## ଜନ୍ମେଜୟ ମହା ଭବଗୁପ୍ତ ।
## ୬୭୫ ୭୦୭ ଖ୍ରୀ: ଅ:

ଶିବ ଗୁପ୍ତଙ୍କ ମୃତ୍ୟୁପରେ ତାଙ୍କପୁତ୍ର ଜନ୍ମେଜୟ ମହାଭବ ଗୁପ୍ତ କୋଶଳ ରାଜ ସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ ପ୍ରବଳ ପରାକ୍ରାନ୍ତ ରାଜା ଥିଲେ । ସେ ସୈନ୍ୟ ବିସ୍ତାରର ବିଶେଷ ଉନ୍ନତି କରିଥିଲେ । ସେ ଶୈବଧର୍ମାବଲମ୍ବୀ ରାଜା ଥିଲେ । ଏଣୁ ସେ ଶୈବ ଧର୍ମକୁ ରାଜଧର୍ମ କରି ତାହାର ପ୍ରଚାର ନିମନ୍ତେ ବିଶେଷ ଯତ୍ନ କରିଥିଲେ । ବୌଦ୍ଧ ଧର୍ମ ଧିରେ ଲୁପ୍ତ ହେବାକୁ ବସିଲା । ସେ କୋଶଳ ନଗର ବା ରାଣୀପୁର ଝରିଆଲରେ ଅନେକ ଗୁଡ଼ିଏ ଶିବ ମନ୍ଦିର ନିର୍ମାଣ କରାଇ ଥିଲେ । ସେ ଓଡ଼ିଶାକୁ କୋଶଳ ସଙ୍ଗରେ ମିଶାଇବା ଉଦ୍ଦେଶ୍ୟରେ ବିପୁଳ ବାହିନୀ ସେନା ଯୁଦ୍ଧ ଅଭିଯାନ କରି ଥିଲେ । ବିନୀତାପୁର ବା ବିନିକା ରାଜଧାନୀରେ ସମସ୍ତ ସୈନ୍ୟ ଏକତ୍ର କରି ନଦୀ ପଥରେ ଓଡ଼ିଶା ଆକ୍ରମଣ କଲେ ହେ ସମୟରେ ଉତ୍କଳ ରାଜ୍ୟରେ ସାମାନ୍ୟ ଦଳପତି ମାନେ ରାଜ୍ୟ କରୁଥିଲେ । ତେଣୁ ସେ ଅନାୟାସରେ ସେମାନଙ୍କୁ ଜୟକରି ଓଡ଼ିଶାକୁ କୋଶଳ ସଙ୍ଗରେ ମିଶାଇ ଥିଲେ । ଓ ଏକ ପ୍ରସ୍ତର ନଗରରେ ପ୍ରାନ୍ତୀୟ ରାଜଧାନୀ ସ୍ଥାପନ କରିଥିଲେ । ଏହି ରାଜଧାନୀ ନିକଟରେ ଭୁବନେଶ୍ବର ମହାଦେବ ମନ୍ଦିର ନିର୍ମାଣ କରିବାରୁ ଶେଷରେ ମନ୍ଦିରର ନାମ ଅନୁସାରେ ସ୍ଥାନର ନାମ ମଧ୍ୟ ଭୁବନେଶ୍ବର ହେଲା । ଏହାପରେ ଓଡ଼ିଶା ଜୟ କରି ସେ କଳିଙ୍ଗ ରାଜ୍ୟକୁ ଜୟ କରିବାକୁ ଯୁଦ୍ଧ ଅଭିଯାନ କଲେ । କଳିଙ୍ଗ ରାଜ୍ୟକୁ ମଧ୍ୟ ଜୟ କରି କୋଶଳ ସଙ୍ଗେ ଯୁକ୍ତ କଲେ ଓ କୋଶଳ, ଉତ୍କଳ ଓ କଳିଙ୍ଗକୁ ତ୍ରିକଳିଙ୍ଗ ନାମ ଦେଲେ । ନିଜକୁ ମଧ୍ୟ "ତ୍ରିକଳିଙ୍ଗାଧି-

"ପତି" ବୋଲି ପରିଚୟ ଦେଲେ । ଏହାଙ୍କ ପୂର୍ବବର୍ତ୍ତୀ ରାଜା ମାନଙ୍କର "କୋଶଳେନ୍ଦ୍ର" ଉପାଧି ଥିଲା କିନ୍ତୁ ଏହାଙ୍କ "ତ୍ରିକଳିଙ୍ଗାଧିପତି" ଉପାଧି ହେଲା । ଏହାଙ୍କ ଉତ୍ତାରୁ ଏହାଙ୍କ ଅନ୍ୟାନ୍ୟ ବଂଶଧରମାନେ ମଧ୍ୟ "ତ୍ରିକଳିଙ୍ଗାଧିପତି" ଉପାଧି ଗ୍ରହଣ କଲେ । ଉକ୍ତ ରାଜ୍ୟ ମଧ୍ୟରେ ଶୈବ ଧର୍ମ ବିଶେଷ ଭାବରେ ପ୍ରଚଳିତ ହୋଇ ଥିଲା । ସେ ଚୌଦ୍ୱାର ଗଡ଼ ନିର୍ମାଣ କରିଥିଲେ । ୫ ଅଗ୍ରାହାଟରେ ଗୋଟିଏ ପଞ୍ଚ କରି ଥିଲେ । ବ୍ରାହ୍ମଣମାନଙ୍କୁ ଭୂମି ଦାନ କରି କେତେ ଗୋଷ୍ଠି ତ୍ରିଫଳ ତମ୍ବା ପଟ୍ଟା ଲେଖି ଦେଇଥିଲେ । ଏହି ପଟ୍ଟା ମାନଙ୍କରୁ ଅଠ ଗୋଟି ସ୍ଥାନେ୨ ମିଳି ଅଛି । ତହିଁ ମଧ୍ୟରୁ ଦୁଇଟି ଇଙ୍ଗ୍ଲଣ୍ଡର ଧନାଗାର ( Treasury ) ରେ ରକ୍ଷିତ ହୋଇ ଅଛି । ମିଳି ଥିବା ତମ୍ବା ପଟ୍ଟ ମାନଙ୍କ ସାରାଂଶ ନିମ୍ନରେ ଉଦ୍ଧୃତ ହେଲା ।

( ୧ ) ମହାରାଜ ଜନମେଜୟ ତାଙ୍କ ରାଜତ୍ୱର ତୃତୀୟ ବର୍ଷରେ ବେଡ଼ାଗୋଳରୁ ଅସି ମେତ୍ରାରେ ରହି ଥିବା ଜାତ ରୂପ ବା ଜାତ ବେଦ ନାମକ ବ୍ରାହ୍ମଣଙ୍କୁ ତାଙ୍କ ଡେଲ୍ଲୁଲ ଗ୍ରାମ ଦାନ କରି ଥିଲେ ।

( ୨ ) ତୁଙ୍ଗ ବା ଟାଙ୍ଗ ନଦୀ କୂଳରେ ଥିବା ବଙ୍କବେଦ ( ଅଧୁନିକ ନାମ ବଙ୍କବେଡ଼ା ବା ବଙ୍କ ଗୁଡ଼ା ନାମକ ଗ୍ରାମକୁ ଗୃହକର୍ଣ୍ଣ ବ୍ରାହ୍ମଣଙ୍କୁ ଦେଇଥିଲେ । ଏହି ବଙ୍କାଗୁଡ଼ା ଗ୍ରାମ ସଣ୍ଢୀପୁର-ଝଁରପାଲରୁ ଏକ ମାଇଲ ଦୂରରେ ଅଛି । ଗୃହକର୍ଣ୍ଣ ବ୍ରାହ୍ମଣଙ୍କ ମଧ୍ୟରୁ ପ୍ରଥମ ଗ୍ରହୀତାଙ୍କ ନାମ ଦମାକ । ସେ ପମ୍ପା ସରୋବର ଉପତ୍ୟକାସ୍ଥ ଲୋଚ୍ଚ ଶୃଙ୍ଗରୁ ଅସିଥିଲେ । ୨ୟ ଗ୍ରହୀତା କ୍ଷୁପ ଶୃଙ୍ଗରୁ ଅସିଥିଲେ । ସେ ଗୌତମ ଗୋତ୍ରୀୟ

ବ୍ରାହ୍ମଣ ଥିଲେ ତୃତୀୟ ଗ୍ରହୀତା କଣ୍ୱଶାଖୀୟ ବୋଧ୍ୟାୟ୍ନ ହୃଶୀକେଶଙ୍କର ପୁତ୍ର ବାସୁଦେବ ଥିଲେ । ସେ କୋପୁଲଡ଼ ( ଅଧୁନାକ ନାମ କୁଶକେଳା ) ରୁ ଅସିଥିଲେ । ୪ର୍ଥ ଗ୍ରହୀତା ଅତ୍ରେୟ ଗୋତ୍ରୀୟ ବ୍ରାହ୍ମଣ ଥିଲେ । ତାଙ୍କ ପିତାଙ୍କ ନାମ ସ୍ୱମଶର୍ମା ଓ ତାଙ୍କ ନାମ ବ୍ରହ୍ମଦେବ ଅଟେ ।

( ୩ ) ପୋତା ବା ପୂଅ ଇଲାକାର ଫାହିତଲ ( ଅଧୁନାକ ଫାସଡ଼ ) ଗ୍ରାମକୁ ଲେଟସିଂହା ନିବାସୀ କେଶବ ଓ ଅପ୍ରା ନାମକ ଦୁଇଜଣ ବାହ୍ମଣଙ୍କୁ ଦାନ କରିଥିଲେ ।

( ୪ ) କଣ୍ଡ ଲେଣ୍ଡା ( ଅଧୁନାକ କନର୍ଲା ) ଇଲାକାର ସତଲମା ଗ୍ରାମକୁ ସୁନକର ନାମକ ବ୍ରାହ୍ମଣଙ୍କୁ ଦାନ କରିଥିଲେ । ଏହି ଦାନ ମହାରାଜାଙ୍କ ମୁସିଂହ ( ଅଧୁନାକ ମୁରମୁଣ୍ଡି ) ମୁକାମରେ ହୋଇଥିଲା ।

( ୫ ) କୋଶଳ ଦେଶର ଦଣ୍ଡ ଓ ଖଣ୍ଡଳ ନାମକ ଗ୍ରାମ ଦ୍ୱୟକୁ ମହୋଦଧି ସାଧାରଣ ନାମକ ଜଣେ ବ୍ରାହ୍ମଣଙ୍କୁ ଦାନ କରିଥିଲେ ।

( ୬ ) କୋଶଳ ଦେଶର ସମ୍ବାମା ଇଲାକାରେ ଯଲ୍ଲଲେନ୍ଦୁ ଗ୍ରାମକୁ ଯଜୁର୍ବେଦୀ ବ୍ରାହ୍ମଣ ଉଦ୍ଧମ ସାଧାରଣଙ୍କୁ ଦାନ କରିଥିଲେ ।

( ୭ , ତୁଲଭ ଖଣ୍ଡ ଅନ୍ତର୍ଗତ ଅର୍କି ଗ୍ରାମ ବ୍ରାହ୍ମଣ ସାଧାରଣଙ୍କୁ ଦାନ କରିଥିଲେ ।

( ୮ ) ତାଙ୍କର ରାଜତ୍ୱର ବ ୩୧ ବର୍ଷରେ ମହାନ ଇଲାକାର ତୁଲେଣ୍ଡି ଗ୍ରାମକୁ ଭରଦ୍ୱାଜ ଗୋତ୍ରୀ ମହୋତ୍ତମ ସାଧାରଣି ନାମକ ବ୍ରାହ୍ମଣଙ୍କୁ ଦାନ କରିଥିଲେ ।

ସେ ୭୦୭ ଖ୍ରୀଃ ଅଃ ରେ ପରଲୋକ ଗମନ କଲେ ।



## ଯଯାତି କେଶରୀ ବା ମହାଶିବ ଗୁପ୍ତ ।

### ୭୦୭ – ୭୫୩ ଖ୍ରୀ: ଅ:

ଜନ୍ମେଜୟଙ୍କ ଉତ୍ତାରୁ ତାଙ୍କ ପୁତ୍ର ଯଯାତି କେଶରୀ ବା ମହାଶିବ ଗୁପ୍ତ କୋଶଳ ରାଜସିଂହାସନରେ ଅଭିଷିକ୍ତ ହୋଇ "ତ୍ରିକଳିଙ୍ଗାଧିପତି" ଉପାଧିରେ ବିଭୂଷିତ ହେଲେ । ଏହାଙ୍କ ସମୟରେ ତ୍ରିକଳିଙ୍ଗ ରାଜ୍ୟରେ ତ୍ରୟଗୋଟି ରାଜଧାନୀ ଥିଲା । ଉତ୍କଳ ଅଂଶରେ ଚୌଦ୍ୱାର ଓ ଭୁବନେଶ୍ବର, ଗଞ୍ଜାମ ଅଂଶରେ କଟକ, ଓ କୋଶଳ ଅଂଶରେ ବଉଦ୍ଧ ଥିଲା । ଏହି ରାଜା ଯଯାତି ସମସ୍ତ ରାଜଧାନୀ ମାନଙ୍କ ଗତାୟାତ କରି ରାଜ୍ୟ ଶାସନ କରୁଥିଲେ । ଯଯାତି କେଶରୀ ଓଡ଼ିଶାରେ ଗୋଟିଏ ନଗର ବସାଇଥିଲେ । ସେ ସ୍ଥାନର ନାମ ଯଯାତିପୁର ନାମରେ ପରିଚିତ କରିଥିଲେ । ଏହାର ଆଧୁନିକ ନାମ ଯାଜପୁର ଅଟେ । ଯଯାତିଙ୍କ ଦ୍ୱିତୀୟ ରାଜଧାନୀ ଯଯାତି ନଗର ତା ବିନୀତାରେ ସ୍ଥାପିତ ହୋଇଥିଲା । ସେ ମଧ୍ୟ ପିତାଙ୍କ ପରି କୋଶଳ ବା ବଉଦ୍ଧରେ ଓ ଭୁବନେଶ୍ବରରେ ଶିବ ମନ୍ଦିର ନିର୍ମାଣ କରିଥିଲେ । ଓ ତିନିଟି ତାମ୍ର ପଟାରେ ଲେଖି ବ୍ରାହ୍ମଣମାନଙ୍କୁ ଗ୍ରାମ ଦାନ କରିଥିଲେ ।

ଏହାଙ୍କର ମଧ୍ୟ ଦୁଇଟି ପଟା କଲିକତାର ଧନାଗାର (ଖଜଣା) ରେ ରଖା ଯାଇଅଛି । ଏହାଙ୍କ ଗୋଟିଏ ତାମ୍ର ପଟା ମିଳିଅଛି । ମିଳିଥିବା ତାମ୍ର ପଟା ମାନଙ୍କର ସାରାଂଶ ନିମ୍ନରେ ଉଦ୍ଧୃତ ହେଲା ।

(୧) କୋଶଳ ରାଜ୍ୟର ବଳଜଡ଼ ଗ୍ରାମନିବାସୀ ଶ୍ରୀ ବାମଦେବ ନାମକ ବ୍ରାହ୍ମଣଙ୍କ ତଳଗଜ ନାମକ ଗ୍ରାମ ଦାନ କରିଥିଲେ । ଏହା ପାଟଣା ର ଅଟଗାଁ ଜମିଦାରରେ ଅଛି ।

(୨) କୋଶଳ ରାଜ୍ୟର ନିଷଣ୍ଡା ଗ୍ରାମକୁ ମାରମେଣ୍ଡା ଗ୍ରାମ ନିବାସୀ ଉଲ୍ଲାସ ଶର୍ମାଙ୍କର ପୌତ୍ର ନାରାୟଣ ଶର୍ମାଙ୍କ

ପୁତ୍ର ଶ୍ରୀ ପୁଣ୍ଡରୀକ ଶର୍ମା ନାମକ ବ୍ରାହ୍ମଣଙ୍କୁ ଦାନକର ଥିଲେ । ଏହା ମହାନଦୀ କୂଳବର୍ତ୍ତୀ ଅଧୁନାକ ନିମ୍ନା ଗ୍ରାମ ଅଟେ ।

( ୩ ) କୋଶଳ ରାଜ୍ୟର ହେଲହେଲ ଗ୍ରାମକୁ ଲେର୍ଭଡା ଜିଲ୍ଲାର ମୁରହ୍ମ (ମୁରବାହାର) ଗ୍ରାମବାସୀ ପରମେଶ୍ୱର ସିଦ୍ଧେଶ୍ୱରଙ୍କର ପୁତ୍ର ମହାଦେବଭଟ୍ଟ ନାମକ ବ୍ରାହ୍ମଣଙ୍କୁ ଦାନ କରିଥିଲେ ।

( ୪ ) କୋଶଳ ରାଜ୍ୟର ଲକଡମା ଗ୍ରାମକୁ ଲେବଡ଼ା ଜିଲ୍ଲାର ମୁରହ୍ମ ନିବାସୀ ସିଦ୍ଧେଶ୍ୱରଙ୍କ ପୁତ୍ର ମହାଭବ ନାମକ ବ୍ରାହ୍ମଣଙ୍କୁ ଦାନ କରିଥିଲେ ।

( ୫ ) ଦକ୍ଷିଣ କୋଶଳର ମରଡ ମଣ୍ଡଳ ଜିଲ୍ଲାର ଚନ୍ଦ୍ର ଗ୍ରାମକୁ ଭରଦ୍ୱାଜ ଗୋତ୍ରୀୟ ଗଙ୍ଗାପାଣି ନାମକ ବ୍ରାହ୍ମଣଙ୍କୁ ଦାନ କରିଥିଲେ ।

ଏହି ରାଜା କାନ୍ୟକୁବ୍ଜରୁ ୧୦୦୦୦ ବ୍ରାହ୍ମଣ ଆଣାଇ ଉତ୍କଳରେ ରହିବା ନିମନ୍ତେ ସ୍ଥାନ ଦେଇଥିଲେ । ସେ ବୈତରଣୀ କୂଳରେ ଦଶାଶ୍ୱମେଧ ଘାଟ ନିର୍ମାଣ କରାଇଥିଲେ । ସେ ଜଗନ୍ନାଥଙ୍କ ଭଗ୍ନ ଦେଉଳ ନିର୍ମାଣ କରାଇ ପ୍ରଭୁଙ୍କର ଖଞ୍ଜା ନିମନ୍ତେ ବନ୍ଦୋବସ୍ତ କର ଦେଇଥିଲେ । ସେ ଭୁବନେଶ୍ୱରର ଲିଙ୍ଗରାଜଙ୍କ ଦେଉଳ ନିର୍ମାଣ କାର୍ଯ୍ୟ ଆରମ୍ଭ କର ଅପୂର୍ଣ୍ଣ ଅବସ୍ଥାରେ ରଖି ୭୫୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ଦୀର୍ଘରାବ ଗୁପ୍ତ ।

### ପ୍ର ଯୁ ୭୫୩-୭୭୩ ଖ୍ରୀ: ଅ:

ଯଯାତି କେଶରୀଙ୍କ ପରେ ତାଙ୍କ ପୁତ୍ର ଦୀର୍ଘରାବ ଗୁପ୍ତ କୋଶଳ ରାଜ ସିଂହାସନରେ ଅଭିଷିକ୍ତ ହୋଇ ତ୍ରିକଳିଙ୍ଗା-

ଧିପତି ଉପାଧି ଗ୍ରହଣ କଲେ । ସେ ପ୍ରାନ୍ତୀୟ ରାଜଧାନୀ ମାନଙ୍କରେ ସ୍ୱବଂଶୀୟ ବା ଅନ୍ୟାନ୍ୟ ଯୋଗ୍ୟ ବ୍ୟକ୍ତିମାନଙ୍କୁ ଶାସନ କାର୍ଯ୍ୟ ନିମନ୍ତେ ପ୍ରତିନିଧି ନିଯୁକ୍ତ କରିଥିଲେ । ସେ ପ୍ରାୟ ୭୭୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## କାମରୂପ ବା ଆସାମର ରାଜା ହର୍ଷଦେବ ।

### ୮ମ ଶତାବ୍ଦିର ପ୍ରଥମ ପାଦ

ଦୀର୍ଘରବ ଗୁପ୍ତଙ୍କର ଜୀବିତା ବସ୍ଥାରେ କାମରୂପ ବା ଆସାମ ରାଜା ହର୍ଷଦେବ ପ୍ରବଳ ପରାକ୍ରାନ୍ତ ବାହିନୀ ଅଣି ଆକ୍ରମଣ କରି ଗୌଡ଼, ଉଡ୍ର, କଳିଙ୍ଗ ଓ କୋଶଳ ରାଜ୍ୟ ଅଧିକାର କଲେ । କିନ୍ତୁ ଏହା ଅଧିକ କାଳ ସ୍ଥାୟୀ ହୋଇ ନଥିଲା ।



## ସୋମେଶ୍ୱର ଦେବ ବା ଗୁପ୍ତ ।

### ପ୍ରାୟ ୭୭୩-୭୯୩ ଖ୍ରୀ: ଅ:

ଦୀର୍ଘରବ ଗୁପ୍ତଙ୍କ ପରେ ସୋମେଶ୍ୱର ଦେବ କୋଶଳ ରାଜ ସିଂହାସନରେ ଅଭିଷିକ୍ତ ହେଲେ । ଏହି ରାଜା ଶୈବ ଧର୍ମାବଲମ୍ବୀ ଥିଲେ । ସେ କୋଶଳ ରାଜ୍ୟର ରାଜଧାନୀ କଅଁ-ଟିଲରେ ସୋମେଶ୍ୱର ଦେଉଳ, ସୋମୀ ଦେଉଳ, ସିଦ୍ଧେଶ୍ୱର ଦେଉଳ, ଲକ୍ଷ୍ମୀ ଦେଉଳ ନିର୍ମାଣ କରିଥିଲେ । ଏହି ଦେଉଳ ମାନ ଏ ପର୍ଯ୍ୟନ୍ତ ସତୀପୁର ଙ୍କବଅଳରେ ଅଛି । ସୋମେଶ୍ୱର ଦେଉଳର ଶିଳା ଲିପିର ନକଲ ଦିଆ ଗଲା ।

" ଓଁ ନମଃ ଶିବାୟ । ଶ୍ରୀ ସୋମେଶ୍ୱର ଦେବ ଭଟ୍ଟାରକ ପରମେଶ୍ୱର ବର ପ୍ରସାଦୀ ଶ୍ରୀ କୁଞ୍ଜର-ହେରମ୍ବ-ବୃହ-ବର୍ଣ୍ଣଗତ

ଗଗନ ଶିବ । ଅଭିଷେକ ଅଗ୍ରତସ୍ୟେନ ଇଦଂ ସ୍ଥାନଂ କୀର୍ତ୍ତିତଂ । ସର୍ବେ ତୀର୍ଥ ଫଳଂ ସମା ଦେବାଙ୍ଗ ଲୋକାନୁଗ୍ରାହକ ପୁଣ୍ୟଂ ସୋମ ସ୍ୱାମୀ ସିଦ୍ଧେଶ୍ୱର ଲକ୍ଷ୍ମୀନାମ ଚତୁର୍ଥକଂ । ଇଦଂ ତୀର୍ଥଂ ସ୍ନାତ୍ୱା ସର୍ବପାପ ବିମୋଚନଂ । ଶ୍ରୀ ଯୋଗୀଶ ନାଥ ତବ ପଦ ସ୍ମରଣୈଃ ଅଗ୍ରଧ୍ୟାନୈଃ କୃତ ଯମଃ । ପ୍ରଣମତ ଗଗନ ଶିବ । ପଦ ତବୋ ମୁକ୍ତିଂ ଦଦାସି ଶଙ୍କର ମୁକ୍ତୋ ବା ବନ୍ଧନ ସମର୍ଥ ସ୍ୱୟଂ କିଂ ନ ଭବତ ସ୍ତଥାପି ସ୍ୱାମିନୋ ଜଗତ୍ୟତି ବନ୍ଧଂ ବା ମୁକ୍ତି'ଡଦାସି ଯୋଗେନ୍ଦ୍ର ସ୍ୱୟମ୍ଭୁ ଶିବ ।

ଏହି ମନ୍ଦିର ନିକଟରେ ସେ ଗୋଟିଏ ପୁଷ୍କରିଣୀ ଖନନ କରାଇ ଥିଲେ । ତାହାର ନାମ ସୋମେଶ୍ୱର ବନ୍ଧ ଅଟେ । ସେ ଏଠାରେ ଗୋଟିଏ ଶିବ ତାଣ୍ଡବ ମନ୍ଦିର ନିର୍ମାଣ କରାଇଥିଲେ । ମନ୍ଦିରର କାନ୍ଥରେ ୬୪ ଯୋଗିନୀଙ୍କ ମୂର୍ତ୍ତି ସବୁ ରହି ଅଛି । ମଧ୍ୟରେ ହର ପାର୍ବତୀ ନୃତ୍ୟ ରଙ୍ଗରେ ବିଜେ କରି ଅଛନ୍ତି । ସେହି ଯୋଗିନୀମାନଙ୍କ ମଧ୍ୟରୁ ୧୬ ଟି ମୂର୍ତ୍ତି ଭଗ୍ନ ଅବସ୍ଥାରେ ଓ ଅବଶିଷ୍ଟ ଭଲ ଅବସ୍ଥାରେ ଏ ପର୍ଯ୍ୟନ୍ତ ରହିଅଛି । ଚଟାଣ ( ଟାଣ ) ଉପରେ ୯୬ ଟି ଦେଉଳର ଚିହ୍ନ ଦେଖାଯାଏ । ଏହି ଅଞ୍ଚଳର ଲୋକମାନେ ପ୍ରତ୍ୟେକ ମନ୍ଦିର ମଧ୍ୟରୁ ଶିବ ଲିଙ୍ଗ ଉଠାଇ ନେଇ ଫିଙ୍ଗିଦେଇ ଓ ସୋମେଶ୍ୱର ଦେଉଳରେ ତାଙ୍କର ନିଜର ଦେବୀ "କଙ୍କେଳ" ଦେବତାଙ୍କୁ ସ୍ଥାପନ କରି ଥିଲେ । ଚଟାଣ ଉପରେ ଆଜ ଦୁଇଟି ଶିଳାଲିପି ଅଛି । ତନ୍ମଧ୍ୟରୁ ଗୋଟିଏ ଏହା ଅଟେ ।

"ଯୋଗେଶ୍ୱର ସୁତସ୍ତସ୍ୟ ଦେବାନନ୍ଦେତି ବିଶ୍ରୁତ
ତେନ କୃତ୍ୟୋ-ସଗୁଚରଣ..................କାରିତା ।

ଯୋଗେଶ୍ୱର ଙ୍କର ପୁତ୍ର ଦେବାନନ୍ଦ ଅତି କଷ୍ଟ ଉପଗ୍ରହଣରେ ଏହି ଦେଉଳ ନିର୍ମାଣ କଲା । ରାଜା ସୋମେଶ୍ୱର ଦେବ ପ୍ରାୟ ୬୯୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

## ଧ୍ରୁବଧାରାବର୍ଷ ୭୮୩ ଖ୍ରୀ: ଅ:

ମାନ୍ୟଖେଟର ରାଜା ରାଷ୍ଟ୍ରକୂଟ ବଂଶୀୟ ଧ୍ରୁବଧାରାବର୍ଷ ଅତି ପରାକ୍ରାନ୍ତ ହେଲେ । ତେଣୁ ସେ ବିପୁଳ ସୈନ୍ୟ ସଂଗ୍ରହ କରି ନିକଟସ୍ଥ ରାଜ୍ୟମାନଙ୍କୁ ଜୟକରି ଅପଣା ରାଜ୍ୟ ବିସ୍ତାର କଲେ । ରାଷ୍ଟ୍ରକୂଟଗଣ ରଟ୍ଟ ଉପାଧିଧାରୀ କ୍ଷତ୍ରିୟ ଅଟନ୍ତି । ଏମାନେ ମହାରାଷ୍ଟ୍ର ଦେଶର ପ୍ରଥମ ଅଧିବାସୀ ଅଟନ୍ତି । ଏମାନଙ୍କର ନାମ ଅନୁସାରେ ମହାରାଷ୍ଟ୍ର ଦେଶର ନାମକରଣ ହୋଇଅଛି । ରାଷ୍ଟ୍ରକୂଟ ସିଂହାସନର ରାଜା ଧ୍ରୁବଧାରାବର୍ଷ ଦିଗ୍‌ବିଜୟୀ କରି ରାଜ୍ୟବୃଦ୍ଧି କରିବା ସକାଶେ ଦକ୍ଷିଣ ପଥରେ ଗୋବଂଶୀୟ ରାଜାମାନଙ୍କୁ କାଞ୍ଚିର ପଲ୍ଲବ ବଂଶୀୟ ରାଜାମାନଙ୍କୁ ଓ ତ୍ରିକଳିଙ୍ଗ ନାମଧାରୀ କୋଶଳ ରାଜ୍ୟକୁ ଜୟ କଲେ ଓ ଅପଣା ବଶରେ ରଖିଲେ । କିନ୍ତୁ ସେହି ବଶତା ଅଳ୍ପକାଳ ସ୍ଥାୟୀ ହୋଇଥିଲା ।



## ଅପରବ ଗୁପ୍ତ ପ୍ରାୟ୍ ୭୯୩ ରୁ ୮୧୩ ଖ୍ରୀ: ଅ:

ସୋମେଶ୍ୱର ଦେବଙ୍କର ପରେ ଅପରବଗୁପ୍ତ ରାଜା ହେଲେ । ସେ ଦୀର୍ଘରବଗୁପ୍ତଙ୍କର ପୁତ୍ର ଅଟନ୍ତି । ସେ ମଧ୍ୟ ତ୍ରିକଳିଙ୍ଗାଧିପତି ଉପାଧି ଧାରଣ କରିଥିଲେ ଓ ଭୁବନେଶ୍ୱର ଅଦି ରାଜଧାନୀରେ ସ୍ୱବଂଶୀୟମାନଙ୍କୁ ସାମନ୍ତ ରାଜା କରି-ଥିଲେ । ସେ ମଧ୍ୟ ଭୁବନେଶ୍ୱରରେ ଓ କୋଶଳ ରାଜଧାନୀରେ କେତେକ ଶିବମନ୍ଦିର ନିର୍ମାଣ କରିଥିଲେ । ସେ ଅପୁତ୍ରିକ ହୋଇ ପ୍ରାୟ ୮୧୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ବିଚିତ୍ର ବୀର୍ଯ୍ୟ ଗୁପ୍ତ ପ୍ରାୟ୍ ୮୧୩ରୁ ୮୩୩ଖ୍ରୀ:ଅ:

ଅପରବଗୁପ୍ତଙ୍କ ପରେ ତାଙ୍କର କନିଷ୍ଠ ପିତାମହ ବିଚିତ୍ର-ବୀର୍ଯ୍ୟଗୁପ୍ତ କୋଶଳ ସିଂହାସନରେ ଅଭିଷିକ୍ତ ହେଲେ ।

ତାଙ୍କର ମଧ୍ୟ ତ୍ରିକଳିଙ୍ଗାଧିପତି ଉପାଧି ଥିଲା । ସେ ପ୍ରାନ୍ତୀୟ ରାଜଧାନୀମାନଙ୍କରେ ସାମନ୍ତ ରାଜା ନିଯୁକ୍ତ କରି ଶାସନ କରୁଥିଲେ । ସେ ପ୍ରାୟ ୮୩୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ଅଭିମନ୍ୟୁ ଗୁପ୍ତ ପ୍ରାୟ ୮୩୩ ରୁ ଖ୍ରୀ: ଅ: ୮୫୩

ବିଚିତ୍ର ବୀର୍ଯ୍ୟଙ୍କ ପରେ ଅଭିମନ୍ୟୁଗୁପ୍ତ ତ୍ରିକଳିଙ୍ଗାଧିପତି ଉପାଧି ଗ୍ରହଣ କରି କୋଶଳ ରାଜ ସିଂହାସନରେ ଅଭିଷିକ୍ତ ହେଲେ । ସେ ମଧ୍ୟ ପ୍ରାନ୍ତୀୟ ରାଜଧାନୀ ମାନଙ୍କରେ ଶାସନ-କର୍ତ୍ତା ନିଯୁକ୍ତ କରି ଶାସନ କରୁଥିଲେ । ଓ ରାଣୀପୁର ଝରିଅଳ ଓ ଭୁବନେଶ୍ୱରରେ ଶିବମନ୍ଦିର ନିର୍ମାଣ କରିଥିଲେ ।

---

## ମଗଧ, ଗୌଡ଼: ବଙ୍ଗ ଅଧିପତି ଦେବପାଳ
## ୮୨୫ ରୁ ୮୬୫ ଖ୍ରୀ: ଅ:

ଅଭିମନ୍ୟୁଗୁପ୍ତଙ୍କ ରାଜତ୍ୱ ସମୟରେ ମଗଧ, ବଙ୍ଗ ଓ ଗୌଡ଼ ଦେଶରେ ଦେବପାଳ ନାମରେ ଜଣେ ରାଜା ଥିଲେ । ସେ ବିଶାଳ ସୈନ୍ୟ ସଂଗ୍ରହ କରି ଭାରତ ବର୍ଷର ଏକଚ୍ଛତ୍ର ସମ୍ରାଟ ହେବା ଆଶାରେ ଦିଗ୍‌ବିଜୟ କରିବାକୁ ଲାଗିଲେ । କ୍ରମଶଃ ସେ ସମସ୍ତ ଭାରତ ବର୍ଷ ଅଧିକାର କଲେ । ତାଙ୍କ ରାଜ୍ୟର ସୀମା ଏକ ଦିଗରେ ହିମାଳୟ ଅନ୍ୟ ଦିଗରେ ସେତୁବନ୍ଧ-ରାମେଶ୍ୱର ପଶ୍ଚିମରେ ଆରବ ସାଗର ପୂର୍ବରେ ବଙ୍ଗୋପ-ସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେ ତ୍ରିକଳିଙ୍ଗାଧିପତି ଅଭିମନ୍ୟୁ ଗୁପ୍ତଙ୍କ ସହିତ ଲଢ଼ାଇ କରି ଜୟ କଲେ ଓ ଅଭିମନ୍ୟୁ ଗୁପ୍ତଙ୍କୁ ୮୫୩ ଖ୍ରୀ: ଅ: ରେ ନିହତ କଲେ । ତ୍ରିକଳିଙ୍ଗ ରାଜ୍ୟ ନିଜରାଜ୍ୟ ସଙ୍ଗରେ ଯୁକ୍ତ କରି ତାଙ୍କ

( ଅଭିମନ୍ୟୁଙ୍କ ) ପୁତ୍ର ଚଣ୍ଡୀହର ଗୁପ୍ତଙ୍କୁ ତ୍ରିକଳିଙ୍ଗ ରାଜ୍ୟର ସିଂହାସନରେ ଅଭିଷିକ୍ତ କରି ସାମନ୍ତ ରାଜା କଲେ ।



## ଚଣ୍ଡୀହର ଗୁପ୍ତ ।

### ପ୍ରାୟ ୮୬୩—୮୭୩ ଖ୍ରୀ: ଅ:

ସେ ମଧ୍ୟ ତାଙ୍କ ପିତାଙ୍କ ପରି ପ୍ରାନ୍ତୀୟ ରାଜଧାନୀ ମାନଙ୍କରେ ସାମନ୍ତ ରାଜା ନିଯୁକ୍ତ କରି ଶାସନ କରୁଥିଲେ । କୋଶଳ ଓ ଭୁବନେଶ୍ୱରରେ ସେ କେତେକ ଶିବ ମନ୍ଦିର ନିର୍ମାଣ କରାଇ ଥିଲେ । ସେ ପ୍ରାୟ ୮୭୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ଉଦ୍ଧ୍ୟୋତ କେଶରୀ ବା ଗୁପ୍ତ ।

### ପ୍ରାୟ ୮୭୩—୮୯୩ ଖ୍ରୀ: ଅ:

ଚଣ୍ଡୀହରଙ୍କ ପରେ ତାଙ୍କ ପୁତ୍ର ଜଦ୍ୟୋତ କେଶରୀ ରାଜ ଦେବ ତ୍ରିକଳିଙ୍ଗାଧିପତି ହେଲେ । ସେ କୋଶଳ ରାଜ୍ୟରେ ଗୋଟିଏ ରାଜଧାନୀ ସ୍ଥାପନ କରି ଥିଲେ । ଏହାକୁ ଉଦ୍ୟତ ପୁର ନାମରେ ପରିଚିତ କରି ଥିଲେ । ଏହି ରାଜ-ଧାନୀ ଆଜିକାଲି ଗୋଟିଏ ଛୋଟ ଗ୍ରାମରେ ପରିଣତ ହୋଇ ଉଦେ ପୁର ନାମ ଧାରଣ କରିଅଛି । ଏଠାରେ ସେ ଗୋଟିଏ ଶିବ ମନ୍ଦିର ନିର୍ମାଣ କରାଇ ଥିଲେ । ଏଥିର ଭଗ୍ନା-ବଶେଷ ଏ ପର୍ଯ୍ୟନ୍ତ ରହି ଅଛି । ମହାରାଜ ଉଦ୍ୟୋତ କେଶରୀ ଏହି ରାଜଧାନୀରେ ଏଗାର ଗୋଟି ବନ୍ଧ ଖୋଳାଇ ଥିଲେ । (୧) ରାଣୀ ବନ୍ଧ (୨) ଗୁନଭ ବନ୍ଧ (୩) ଭାଟେଲ ବନ୍ଧ (୪) ଶାଙ୍କୃଣ ବନ୍ଧ (୫) ଲୁହା ଝଣିବନ୍ଧ (୬) ଗୁଳଭ ବନ୍ଧ (୭) ଗୁଡୁବଥ ବନ୍ଧ (୮) ଖୁଣ୍ଟି ବନ୍ଧ (୯) ଗୁଛଅନ ବନ୍ଧ

(୧୦) ତାମ୍ର ଚକ୍ର (୧୧) କୁଣ୍ଡିଆ ଚକ୍ର ଏହି ଚକ୍ର ମାନଙ୍କରେ ରଣୀ ଚକ୍ର ଶ୍ରେଷ୍ଠ ଥିଲା । ଏହା ମହାରାଜାଙ୍କ ମହଲ ନିକଟରେ ଥିଲା । ଅନ୍ୟାନ୍ୟ ଚକମାନଙ୍କରୁ କେତେକ ଅତି ଭଲ କୃଷି କ୍ଷେତ୍ର ରୂପରେ ପରିଣତ ହୋଇଅଛି । ଏହା ଛଡ଼ା ମହାରାଜ ରାଣୀପୁର ଭୁବନେଶ୍ୱର ଓ ରାଜ୍ୟର ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ଶିବ ମନ୍ଦିର ନିର୍ମାଣ କରିଥିଲେ । ସେ ଏହି ନବ ସ୍ଥାପିତ ରାଜଧାନୀ ନିକଟରେ ସେନାନିବାସ ସ୍ଥାପନ କରିଥିଲେ । ତାହାକୁ ସେନାଣୀ ନାମ ଦେଇ ଥିଲେ । ଏହାର ଆଧୁନିକ ନାମ ସିହନୀ ଅଟେ । ଘୋଡ଼ା ମାନଙ୍କୁ ଗୋଟିଏ ସ୍ଥାନରେ ରଖୁଥିଲେ । ତାକୁ ଘୋଡ଼ାଗାର ବୋଲି ନାମ ଦେଇଥିଲେ । ଏହାର ଆଧୁନିକ ନାମ ଘୋଡ଼ାର ଅଟେ । ସେନାନୀ ଓ ଘୋଡ଼ାଗାର ଉଭୟ ସ୍ଥାନରେ ଗୋଟିଏ ଲେଖାଏଁ ଶିବ ମନ୍ଦିର ନିର୍ମାଣ କରାଇ ଥିଲେ । ତାହା ଏ ପର୍ଯ୍ୟନ୍ତ ଅଛି । ଘୋଡ଼ାର ଗ୍ରାମ ପାଖରେ ଗୋଟିଏ କ୍ଷେତରେ ଶିବ ଦୁର୍ଗା ଭୈରବ ଓ ଗଣେଶ ମୂର୍ତ୍ତି ମାନ ଗୋଟିଏ ପଥରରେ ଖୋଦିତ ହୋଇ ରହିଅଛି । ଏହି ରାଜା ଭୁବନେଶ୍ୱରରେ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରାଇ ଥିଲେ । ଲିଙ୍ଗରାଜ ମନ୍ଦିରର ନାଟ ମନ୍ଦିର ମଧ୍ୟ ନିର୍ମାଣ କରିଥିଲେ ।

ମହାରାଜା ଉଦ୍ୟୋତ କେଶରୀ ବଡ଼ ଯୁଦ୍ଧ ପ୍ରିୟ ରାଜା ଥିଲେ । ସେ ସିଂହଳ ବା ଲଙ୍କା, ଚୈନ, ଗୌଡ ବା ବଙ୍ଗ ଦେଶର ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଥିଲେ । ଖଣ୍ଡଗିରିର ନବମୁନି ଗୁମ୍ଫାରେ ଓ ବ୍ରହ୍ମେଶ୍ୱର ମନ୍ଦିରରେ ଏହାଙ୍କର ଦୁଇ ଗୋଟି ଖୋଦିତ ଲିପି ଅଛି । ଏହାଙ୍କ ସମୟରେ ଖୋଲ ଚନ୍ଦ୍ର ନାମକ ଜଣେ ଜୈନ ସନ୍ୟାସୀ ଖଣ୍ଡଗିରିରେ

ନବମୁଣ୍ଡୀ ଗୁମ୍ଫା ଖୋଳାଇ ଥିଲେ । ଏହି ମହାରାଜାଙ୍କୁ ବସୁ କଳ୍ପ କେଶରୀ ମଧ୍ୟ କହନ୍ତି । ସେ ୮୯୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ଲଲାଟେନ୍ଦୁ କେଶରୀ ।

### ୮୯୩-୯୧୩ ଖ୍ରୀ: ଅ:

ମହାରାଜ ଉଦ୍ୟତ କେଶରୀଙ୍କ ପରେ ଲଲାଟେନ୍ଦୁ କେଶରୀ କୋଶଳ ସିଂହାସନରେ ଅଭିଷିକ୍ତ ହେଲେ । ଯଯାତି କେଶରୀ ଭୁବନେଶ୍ୱରରେ ବ୍ରାହ୍ମଣ ଧର୍ମର ରକ୍ଷା ନିମନ୍ତେ ଯେଉଁ ଶିବ କ୍ଷେତ୍ର ଆରମ୍ଭ କରିଥିଲେ ତାହା ଏହାଙ୍କ ସମୟରେ ପୂର୍ଣ୍ଣ ହେଲା । ସେ ୭ ସାହି ଓ ୪୨ ଭଦ୍ର ବଶିଷ୍ଟ ଭୁବନେଶ୍ୱର ନଗର ବସାଇ ଥିଲେ । ଲିଙ୍ଗରାଜ ମନ୍ଦିରର ଦକ୍ଷିଣକୁ ତାଙ୍କର ରାଜ ମହଲ ତିଆର କରାଇ ଥିଲେ । ସେ ସମସ୍ତ ସମୟରେ ରାଣୀପୁରରେ ମଧ୍ୟ ରହୁଥିଲେ । ଏହି ସ୍ଥାନରେ ସେ ଗୋଟିଏ ମନ୍ଦିର ତିଆର କରାଇ ଥିଲେ । ତେଣୁ ତାକୁ ଲଲାଟେନ୍ଦୁ ମନ୍ଦିର ବୋଲି ଯାଉଥିଲା । କାଳ କ୍ରମରେ ଏହା ଇନ୍ଦ୍ରଲାଟ ମନ୍ଦିର ନାମରେ ଅଭିହିତ ହୋଇଅଛି । ଏହି ମନ୍ଦିରର ମଣ୍ଡପ ପ୍ରକାଣ୍ଡ ପଥର ଖମ୍ବ ( Pillar ) ଉପରେ ପ୍ରକାଣ୍ଡ ପଥରର କଡି ( Beam ) ପଡି ତାହା ଉପରେ ପଥରର ପ୍ରକାଣ୍ଡ ଢାଙ୍କୁଣୀ ( Cover ) ରେ ଆବୃତ ହୋଇ ଅଛି । ମନ୍ଦିର ଉଠା କାର୍ଯ୍ୟ ପୂର୍ଣ୍ଣ ନ ହେଉଣୁ ଲଲାଟେନ୍ଦୁ କେଶରୀ ପରଲୋକ ଗମନ କଲେ । ପଥରରେ ଏହି ମନ୍ଦିରର ଗଠନ କାର୍ଯ୍ୟ ଦେଖି ଦର୍ଶକମାନେ ଆଶ୍ଚର୍ଯ୍ୟାନ୍ୱିତ ହେଉ ଅଛନ୍ତି । ଏହି ମନ୍ଦିରର ଗୋଟିଏ ଖମ୍ବ ତଳରେ ପଡି ରହିଅଛି । ତାହା ଲମ୍ବରେ ୩୩ ଫୁଟ ଅଟେ । ଲଲାଟେନ୍ଦୁ

କେଶରୀ ପ୍ରାୟ ୯୧୩ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ୬ ବା ୭ ଜଣ କେଶରୀ ରାଜା ।

## ପ୍ରାୟ ୯୧୩ରୁ ୧୦୨୫ ଖ୍ରୀ: ଅ:

ମହାରାଜା ଲଲାଟେନ୍ଦୁ କେଶରୀଙ୍କ ପରେ ଅନ୍ତ ୬ ବା ୭ ଜଣ କେଶରୀ ରାଜା ତ୍ରିକଳିଙ୍ଗାଧିପତି ଉପାଧି ଧାରଣ କରି କୋଶଳ ଉତ୍କଳ ଓ କଳିଙ୍ଗ ରାଜ୍ୟ ଶାସନ କରିଥିଲେ । ଏହି ରାଜାମାନଙ୍କର ରାଜତ୍ୱ ସମୟରେ ଭାରତ ବର୍ଷର ସାମୟିକ ସମ୍ରାଟମାନେ ଏହି ତ୍ରିକଳିଙ୍ଗ ରାଜ୍ୟକୁ ଜୟ କରିଥିଲେ । ତାଙ୍କର ସମୟରେ ଏହି ରାଜାମାନେ ତାଙ୍କର ଅଧୀନତା ସ୍ୱୀକାର କରିଥିଲେ । ଏମାନେ ମଧ୍ୟ କୋଶଳ ଓ ଭୁବନେଶ୍ୱରରେ କେତେକ ଶିବ ମନ୍ଦିରମାନ ନିର୍ମାଣ କରିଥିଲେ । ସେ ମଧ୍ୟରୁ ଜଣକର ନାମ କୋଶଳ କେଶରୀ ଅଟେ । ସେ କୋଶଳ ରାଜ୍ୟର ବୈଦ୍ୟନାଥରେ କୋଶଳେଶ୍ୱର ମନ୍ଦିର ତୟାର କରିଥିଲେ ।

---

## କାନ୍ୟକୁବ୍ଜର ଯଶୋବର୍ମ ଦେବ ୯୫୪ ଖ୍ରୀ: ଅ: ପୂର୍ବେ

କାନ୍ୟକୁବ୍ଜରେ ଚନ୍ଦେଲ ବଂଶୀୟ ରାଜାମାନେ ପ୍ରବଳ ପରାକ୍ରାନ୍ତ ହୋଇ ଉଠିଲେ । ସେମାନଙ୍କର ଯଶୋବର୍ମଦେବ ନାମକ ରାଜା ସର୍ବାପେକ୍ଷା ଅଧିକ ପରାକ୍ରାନ୍ତ ହେଲେ । ଗୌଡ ଦେଶରେ ୨ୟ ଗୋପାଳ ଦେବଙ୍କର ମୃତ୍ୟୁପରେ ଓ ୨ୟ ବିଗ୍ରହ ପାଳଙ୍କର ରାଜ୍ୟକାଳେ ଯଶୋବର୍ମଦେବ ଗୌଡ ଦେଶକୁ ଆକ୍ରମଣ କରିଥିଲେ । ସେ ଗୌଡ କୋଶଳ କାଶ୍ମୀର ମିଥିଳା, ମାଳବ, ଚେଦି, କୁରୁ, ଗୁର୍ଜ୍ଜର, ରାଜାମାନଙ୍କୁ ଯୁଦ୍ଧରେ ଜୟକରି ଅଖଣ୍ଡ ସାମ୍ରାଜ୍ୟ ସଂସ୍ଥାପନ କଲେ । ତେଣୁ କରି ତ୍ରିକଳିଙ୍ଗନାମଧାରୀ କୋଶଳ ରାଜା ତାଙ୍କର ଅଧୀନ ହେଲେ ।

---

## ବଙ୍ଗର ଗାଙ୍ଗେୟ ଦେବ ଓ ତତ୍ପୁତ୍ର କର୍ଣ୍ଣଦେବ ।

### ୯୬୪ ଖ୍ରୀ: ଅ: ପରେ

ଗାଙ୍ଗେୟ ଦେବ ବଙ୍ଗର ସହଜ ପରାକ୍ରାନ୍ତ ହୋଇ ଉଠିଥିଲେ ତାଙ୍କପୁତ୍ର କର୍ଣ୍ଣଦେବ ପ୍ରାୟ ସମସ୍ତ ଭାରତରେ ଆପଣା ପ୍ରଭୁତା ବିସ୍ତାର କଲେ । ପଶ୍ଚିମେ ହୂଣ ରାଜ୍ୟରୁ ପୂର୍ବେ ବଙ୍ଗ ପର୍ଯ୍ୟନ୍ତ ଉତ୍ତରେ କାଳଞ୍ଜରରୁ ଦକ୍ଷିଣେ ପାଣ୍ଡ୍ୟ କେରଳ ପର୍ଯ୍ୟନ୍ତ ଅଧିକାର କଲେ । ତ୍ରିକଳିଙ୍ଗ ରାଜ୍ୟର ରାଜା ତାଙ୍କ ଅଧୀନସ୍ଥ ହେଲେ ।



## ଗାଙ୍ଗେୟର ପର କେଶରୀବର୍ମା ବା ରାଜେନ୍ଦ୍ର ଚୋଳଦେବ ।

### ୧୦୨୪ ଖ୍ରୀ: ଅ:

ଚୋଳ ରାଜା ରାଜେନ୍ଦ୍ର ଚୋଳ ୧୦୧୨ ଖ୍ରୀ: ଅ: ରେ ନିଜର ଗାଦୀରେ ଅଭିଷିକ୍ତ ହେଲେ । ସେ ଉତ୍ତର ଦିଗକୁ ଆପଣା ରାଜ୍ୟ ବିସ୍ତାର କରିବାକୁ ଲାଗିଲେ । ଓ ନିମ୍ନ ଲିଖିତ ରାଜ୍ୟମାନ ଜୟ କଲେ । ଓଡ୍ର ଦେଶ ଓ ମନୋହର କୋଶଳ ନାଡ଼୍କୁ ଜୟକଲେ । ତତ୍ପରେ ତଦଭୁକ୍ତିର ଦେବ ପାଳକୁ ଜୟ କଲେ । ବଙ୍ଗଦେଶର ଦକ୍ଷିଣ ରାଢ଼ ଅଧିକାର କଲେ ଓ ତତ୍ପରେ କର୍ଣ୍ଣସୁବର୍ଣ୍ଣ ରାଜ୍ୟ ଉତ୍ତର ରାଢ଼ ଓ ଗଙ୍ଗା ପର୍ଯ୍ୟନ୍ତ ଜୟକଲେ । ଏହି ସମୟରୁ ତ୍ରିକଳିଙ୍ଗାଧିପତି ଉପାଧିଧାରୀ କୋଶଳ ପତି ତାଙ୍କର ଅଧୀନସ୍ଥ ହେଲେ ।



## ରଣ ସିଂହ ବା ରଣ କେଶରୀ ।

### ୧୦୨୫-୧୦୪୨ ଖ୍ରୀ: ଅ:

ମହା ରାଜା ରଣ କେଶରୀ କେଶରୀ ବଂଶର ଶେଷ ରାଜା ଥିଲେ । ସେ ପ୍ରାନ୍ତୀୟ ରାଜଧାନୀ ମାନଙ୍କରେ ନିଜ ବଂଶକୁ ଶାସନ କର୍ତ୍ତା ନିଯୁକ୍ତ କରି କୋଶଳ ରାଜଧାନୀରେ ରହି ତ୍ରିକଳିଙ୍ଗ ରାଜ୍ୟ ଶାସନ କରୁଥିଲେ । ତାଙ୍କର ମଧ୍ୟ ତ୍ରିକଳିଙ୍ଗାଧିପତି ଉପାଧି ଥିଲା । ଏହାଙ୍କ ସମୟରେ ଦକ୍ଷିଣରେ ଗଙ୍ଗ ବଂଶୀୟ ରାଜାମାନେ ସ୍ୱତନ୍ତ୍ର କରୁଥିଲେ । ସେମାନଙ୍କ ରାଜଧାନୀ ମୁଖ କଳିଙ୍ଗ ବା ମୁଖ୍ୟ କଳିଙ୍ଗ ନାମକ ନଗର ଥିଲା । ସେହି ଗଙ୍ଗ ବଂଶର ମଧୁକାର୍ଣ୍ଣବ ନାମକ ରାଜା ନିଜ ରାଜ୍ୟ ବିସ୍ତାର କରିବା ଉଦ୍ଦେଶ୍ୟରେ ବନପତି ନାମକ ସେନାପତିଙ୍କ ପାଖରେ ଅନେକ କଟକ ସୈନ୍ୟ ପଠାଇ ତ୍ରିକଳିଙ୍ଗାଧିପତି ରଣ କେଶରୀଙ୍କ ସହ ଯୁଦ୍ଧ କଲେ । ଏହି ଯୁଦ୍ଧ ପାଟଣା ରାଜ୍ୟର ସୀମା ସ୍ଥିତ ତେଲ ନଦୀ କୂଳବର୍ତ୍ତୀ କିଜପୁର ଗ୍ରାମରେ ୧୦୩୦ ଖ୍ରୀ: ଅ: ରେ ସଂଘଟିତ ହୋଇ ଥିଲା । ଏହି ଯୁଦ୍ଧରେ ରଣ କେଶରୀ ପରାଜିତ ହୋଇ ମଧୁକାର୍ଣ୍ଣବଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ଓ ତାହାଙ୍କର ସାମନ୍ତ ରାଜା ରୂପରେ କୋଶଳ ରାଜ୍ୟ ଶାସନ କରିବାକୁ ଲାଗିଲେ ।



## ପଞ୍ଚମ ପରିଚ୍ଛେଦ ।

### ମୁଖ ଲିଙ୍ଗର ଗଙ୍ଗା ବଂଶର ମଧୁକାର୍ଣ୍ଣବ ଓ ୪ ର୍ଥ ବଜ୍ରହସ୍ତ ।

### ୧୦୩୦ ରୁ ୧୦୪୦ ଓ ୧୦୪୦ ରୁ ୧୦୭୦ ଖ୍ରୀ: ଅ:

ପୂର୍ବେ ବର୍ଣ୍ଣନା କରିଅଛୁଁ ଯେ ଦକ୍ଷିଣରେ ଗଙ୍ଗା ବଂଶ ରାଜତ୍ୱ କରୁଥିଲେ । ସେହି ବଂଶର ତୃତୀୟ ବଜ୍ରହସ୍ତ ନାମରେ

ଜଣେ ରାଜାଥିଲେ । ତାଙ୍କର ତନୋଟି ପୁତ୍ରଥିଲେ । ଜ୍ୟେଷ୍ଠ କାମାର୍ଣ୍ଣବ ମଧ୍ୟମ ଗୁଣ୍ଡମ ଓ କନିଷ୍ଠ ମଧୁକାର୍ଣ୍ଣବ ଅଟନ୍ତି । ଏମାନେ ସମସ୍ତେ ମୁଖଲିଙ୍ଗରେ ରାଜତ୍ବ କରୁ ଥିଲେ । ଏହି ସମୟରେ କଳିଙ୍ଗ ଦୁଇ ଭାଗରେ ବିଭକ୍ତ ଥିଲା । ଏହାର ଉତ୍ତର ପୂର୍ବ ଅଂଶ କଙ୍ଗୋଦ ତ୍ରିକଳିଙ୍ଗ ରାଜ୍ୟରେ ମିଶି କେଶରୀ ବଂଶୀୟ ରାଜା ମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଓ ଦକ୍ଷିଣ ଅଂଶ ଗଙ୍ଗା ବଂଶୀୟ ରାଜା ମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏଣୁ ରାଜା ମଧୁକାର୍ଣ୍ଣବ ପୂର୍ବେ ବର୍ଣ୍ଣିତ ରଣ କେଶରୀ ରାଜାଙ୍କୁ ଯେପରି ଜୟ କଲେ ସେପରି ଅନ୍ୟ ସେନ ପତି ମାନଙ୍କ ଜରିଆରେ ସୈନ୍ୟ ପଠାଇ ତ୍ରିକଳିଙ୍ଗର ଅନ୍ୟାନ୍ୟ ଅଂଶ(ଅର୍ଥାତ୍ କଙ୍ଗୋଦ,କଙ୍ଗଳ),କୁନ୍ତ୍ର ( ଅର୍ଥାତ୍ ) କଳାହାଣ୍ଡି, ଜୟପୁର ଓ ବସ୍ତର ) ଜୟକରି ତାଙ୍କର ମଧ୍ୟ ଜୟ କଲେ । ଏହି ରାଜ୍ୟ ମାନଙ୍କରେ ନିଜ ବଂଶର ବିଶିଷ୍ଟ ବ୍ୟକ୍ତି ମାନଙ୍କୁ ପ୍ରତିନିଧି ନିଯୁକ୍ତ କରି ଶାସନ କରୁଥିଲେ । ଅନନ୍ତର ସେ ତ୍ରିକଳିଙ୍ଗ ଧିପତି ଉପାଧି ଗ୍ରହଣ କଲେ ।

ତାହାଙ୍କ ପରେ ତାଙ୍କ ପୁତ୍ର ବଜ୍ରହସ୍ତ ୪ର୍ଥ ପୈତୃକ ସିଂହାସନରେଅଭିଷିକ୍ତହୋଇତ୍ରିକଳିଙ୍ଗାଧିପତି ଉପାଧି ଗ୍ରହଣ କଲେ । ତତ୍ପରେ ରାଜା ରଣ କେଶରୀ ବିଳାସ ବ୍ୟସନରେ ଆସକ୍ତ ହୋଇ ପ୍ରଜାମାନଙ୍କୁ ଅତ୍ୟାଚାର କରିବାରୁ କୋଶଳ ଦେଶର ନିର୍ଯ୍ୟାତ ପ୍ରଜାକୁଳ ତ୍ରିକଳିଙ୍ଗା-ଧିପତି ବଜ୍ରହସ୍ତ ୪ର୍ଥଙ୍କ ଠାରେ ଗୁହାରି କଲେ ସେ ପ୍ରଥମ ଥର ରଣ କେଶରୀଙ୍କୁ ତାଡିତ କଲେ କିନ୍ତୁ ସେ ନ ମାନିବାରୁ ଭଜ ଶେଖର ବା କୁଳ ଶେଖର ଯେକି କଳା ହାଣ୍ଡି ରାଜ୍ୟର ଗଙ୍ଗବଂଶୀୟ ଶାସନ କର୍ତ୍ତା ବା ସାମନ୍ତ ରାଜା ରୂପ ଭାର ଥିଲେ । ତାଙ୍କୁ କଳା ହାଣ୍ଡି ସୈନ୍ୟ ନେଇ

ରଣକେଶରୀଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଆଦେଶ ଦେଲେ । କଳ ଶେଖର ଓ ରଣ କେଶରୀ ଉଭୟଙ୍କ ମଧ୍ୟରେ ଯୁଦ୍ଧ-ହେଲା । ଯୁଦ୍ଧରେ ରଣ କେଶରୀ ୧୦୦୨ ଖ୍ରୀ: ଅ: ରେ ପରାଜିତ ଓ ନିହତ ହେଲେ । ଅତଏବ ବଜ୍ର ହସ୍ତ ୪ର୍ଥ ରଣକେଶରୀଙ୍କ ରାଜ୍ୟକୁ ନିଜ ଅଧୀନରେ ରଖି କଳ ଶେଖରଙ୍କୁ ତାହାଁର ଶାସନ କର୍ତ୍ତା ନିଯୁକ୍ତ କଲେ । ଏହି ଦିନଠାରୁ କୋଶଳରେ କେଶରୀ ବଂଶୀୟ ରାଜତ୍ୱ ଲୁପ୍ତ ହେଲା ଓ ସାମ୍ରାଜ୍ୟର କେନ୍ଦ୍ରରାଦୀ କଳିଙ୍ଗକୁ ଗଲା ।



## ସ୍ଥାନୀୟ ସାମନ୍ତ ରାଜାବଳି ଶେଖର ବା କୁଳଶେଖର ଦେବ ଗଙ୍ଗ ।

### ୧୦୪୨—୧୦୬୭ ଖ୍ରୀ: ଅ:

ମଧୁକାର୍ଣ୍ଣବ ରାଜାଙ୍କ ଅଧିକୃତ ରାଜ୍ୟମାନଙ୍କୁ ଶାସନ କରିବାକୁ ସ୍ଥାନେ ୨ ଗଙ୍ଗବଂଶୀୟ ସାମନ୍ତ ରାଜାମାନେ ନିଯୁକ୍ତ ହୋଇଥିଲେ । ଗଙ୍ଗବଂଶୀୟ ସାମନ୍ତ ରାଜା ନୀଳକଣ୍ଠ ଦେବ କଳାହାଣ୍ଡି ରାଜ୍ୟର ସାମନ୍ତ ରାଜା ପଦରେ ନିଯୁକ୍ତ ହୋଇଥିଲେ । ସେ କଳାହାଣ୍ଡିରେ ମାଣିକେଶ୍ୱରୀ ଦେବୀଙ୍କ ମନ୍ଦିର ନିର୍ମାଣ କରାଇ ଥିଲେ । ସେ ନଗର ବାସିଙ୍କ ଉପକାରାର୍ଥେ ଗୋଟିଏ ବୃହତ୍ ପୁଷ୍କରିଣୀ ଖୋଳାଇ ଥିଲେ । ତାଙ୍କର ପୁତ୍ର ନ ଥିବାରୁ ପାଟଣାର ପାଟଣେଶ୍ୱରୀ ଦେବୀଙ୍କୁ ଉପାସନା କରି ଦୁଇଟି ପୁତ୍ର ପାଇଥିଲେ । ଜ୍ୟେଷ୍ଠ କଳା-ହାଣ୍ଡିରେ ରହିଲେ କନିଷ୍ଠ କଳ ଶେଖର କୋଶଳ ଦେଶରେ ସାମନ୍ତ ରାଜା ହୋଇ ରହିଲେ । ସେ ରଣ କେଶରୀ ରାଜାଙ୍କୁ ଯୁଦ୍ଧରେ ଜୟ କରି ଥିବାରୁ ତାହାଁର ସ୍ମୃତି ନିମନ୍ତେ ଯୁଦ୍ଧ

ସ୍ଥଳରେ ବଜ୍ରପୁର ( ଅଧୁନାର ବଜେପୁର ) ଗ୍ରାମ ବସାଇ ତହିଁରେ ତାଙ୍କ ଇଷ୍ଟ ଦେବୀଙ୍କ ମନ୍ଦିର ନିର୍ମାଣ କରାଇ ଥିଲେ । ଏହି ମନ୍ଦିର ଏପର୍ଯ୍ୟନ୍ତ ଏହି ସ୍ଥାନରେ ଭଗ୍ନାବସ୍ଥାରେ ପଡ଼ି ରହିଅଛି । ଏହି ରାଜା କୋଶଳ ରାଜଧାନୀରେ ନ ରହି ଟିଟିଲାଗଡ଼ରେ ରାଜଧାନୀ ସ୍ଥାପନ କରିଥିଲେ । ସେ ତାଙ୍କର ରହିବା ନିମନ୍ତେ ରାଜଧାନୀରେ ଗୋଟିଏ ତ୍ରିତଳ ମହଲ ତିଆର କରାଇ ମହଲର ନାମ ଅନୁସାରେ ଗଡର ନାମ ତ୍ରିତଳ ଗଡ ରଖି ଥିଲେ । ପରେ ତାହା ଟିଟିଲାଗଡ଼ ନାମରେ ଅପଭ୍ରଷ୍ଟ ହେଲା । ସେ ଯୁଦ୍ଧ ସମୟରେ ଯେଉଁ କନ୍ଧ ଜାତୀୟ ସୈନ୍ୟ ଆଣିଥିଲେ । ସେମାନଙ୍କ ରହିବା ପାଇଁ ସୋନପୁର ଠାରୁ ବଙ୍ଗୋମୁଣ୍ଡା ପର୍ଯ୍ୟନ୍ତ ଅଂଶର ପୂର୍ବ ଗୌନ୍ତ୍ୟ ଓ ପ୍ରଜାମାନଙ୍କୁ ତଡିଦେଇ ଏମାନଙ୍କୁ ଦେଇ ଦେଲେ । ସେମାନେ ତାଙ୍କର ନେତାମାନଙ୍କ ସହିତ ନିଜ ୨ ମଧ୍ୟରେ ବିଭକ୍ତ କରି ସୋନପୁର ଠାରୁ ବଙ୍ଗୋମୁଣ୍ଡା ପର୍ଯନ୍ତ ରାଜ୍ୟର ଅଧେ ସ୍ଥାନ ଅଧିକାର କରି ରହିଲେ । ସେହି କନ୍ଧମାନେ ବଂଶ ପରମ୍ପରା କ୍ରମେ ଆଜି ପର୍ଯ୍ୟନ୍ତ ସେହି ଅଂଶ ଭୋଗ । ଦଖଲ କରି ଆସୁ ଅଛନ୍ତି ।

ରାଜା କଳାଶେଖର ତ୍ରିତଳ ଗଡ଼ ବା ଟିଟିଲାଗଡରେ ଯେଉଁ ତ୍ରିତଳ ମହଲ ତିଆର କରାଇ ଥିଲେ, ତାହା ଆଜି କାଲିର କେନ୍ଦମୁଣ୍ଡି ଗ୍ରାମ ଥିବା ସ୍ଥାନରେ ସ୍ଥାପିତ ହୋଇ-ଥିଲା । ସେହି ମହଲର ଭଗ୍ନାଂଶ ଇତୋମାନ ଏ ପର୍ଯନ୍ତ ଏ ସ୍ଥାନରେ ପଡ଼ି ରହିଅଛି । ଏହି ରାଜା କୁମ୍ଭଡ଼ା ପର୍ବତ ନିକ-ଟସ୍ଥ ଦେବନ୍ଧ "ନାମକ" ଜଳାଶୟକୁ ଖନନ କରାଇଥିଲେ । ସେ ପ୍ରାୟ ୧୦୫୭ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ସ୍ଥାନୀୟ ସାମନ୍ତ ରାଜା ବିଜୟ ଦେବ ଗଙ୍ଗ ।

### ୧୦୬୭—୧୦୭୨ ଖ୍ରୀ:ଅ:

ଚନ୍ଦ୍ର ଶେଖର ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ବିଜୟ ଦେବ କୋଶଳ ବା ପାଟଣା ସିଂହାସନରେ ଅଭିଷିକ୍ତ ହେଲେ । ସେ କଣ୍ଡାଇ ପର୍ବତର ଶିଖର ଦେଶରେ ଗୋଟିଏ ଗଡ ନିର୍ମାଣ କରିଥିଲେ । ଏହାକୁ ସ୍ୱୟଂ ବିଜୟ ଗଡ ନାମରେ ପରିଚିତ କରିଥିଲେ । ଏହି ଗଡ଼ ଉଦ୍ଧାର କରିବାକୁ "ନାଗ କଟା" ଗ୍ରାମରେ ଇଟାଭାଟି କରି ପାଇଥିଲା । ଏହି ଗଡଟି ପୂର୍ଣ୍ଣ ନ ହେଉଣୁ ରାଜା ବିଜୟ ଦେବ ୧୦୭୨ ଖ୍ରୀ: ଅ: ରେ ପରଲୋକ ଗମନ କଲେ । ଏହାଙ୍କର ସମସାମୟିକ ତ୍ରିକଳିଙ୍ଗ ମହାରାଜା ରାଜ ରାଜ ଦେବ ମୁଖଲିଙ୍ଗରେ କେନ୍ଦ୍ର-ଗାଦୀ କରି ଶାସନ କରୁଥିଲେ ।



## ତ୍ରିକଳିଙ୍ଗ ମହାରାଜା ରାଜରାଜ ଦେବ ।

### ୧୦୭୦—୧୦୭୮ ଖ୍ରୀ: ଅ:

ବଜ୍ରହସ୍ତ ୪ର୍ଥଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ରାଜରାଜ ଦେବ ମୁଖ୍ୟ କଳିଙ୍ଗ ରାଜଧାନୀରେ ସମ୍ରାଟ ସିଂହାସନରେ ଅଭିଷିକ୍ତ ହୋଇ ତ୍ରିକଳିଙ୍ଗାଧିପତି ଉପାଧି ଗ୍ରହଣ କରିଥିଲେ । ବେଙ୍ଗୀର ଚୋଲବଂଶ ରାଜା ରାଜେନ୍ଦ୍ର ଚୋଳଙ୍କ ସଙ୍ଗେ ଗଙ୍ଗାବଂଶର ବିରୋଧ ଭାବ ଅନେକ ଦିନରୁ ଚାଲି ଆସୁଥିବାରୁ ରାଜେନ୍ଦ୍ର ଚୋଳ ଓ ରାଜରାଜ ଦେବଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ରାଜରାଜ ଦେବ ଜୟ ଲାଭକରି ରାଜେନ୍ଦ୍ର ଚୋଳଙ୍କ କନ୍ୟା ମଣି ରାଜ ସୁନ୍ଦରୀଙ୍କୁ ବିବାହ ହେଲେ । ଏହାଙ୍କ ଗର୍ଭରୁ ଚୋଳଗଙ୍ଗ-ଦେବ ଜନ୍ମଗ୍ରହଣ କଲେ । ରାଜରାଜଦେବ ୧୦୭୮ ଖ୍ରୀ:ଅ:ରେ

ପରଲୋକ ଗମନ କଲେ । ଶ୍ରୀଳଗଙ୍ଗଦେବଙ୍କର ଅନ୍ୟ ନାମ ଅନନ୍ତ ବର୍ମା ।



## ସ୍ଥାନୀୟ ସାମନ୍ତ ରାଜା ଦଶରଥ ଦେବ ।

### ୧୦୭୬—୧୦୮୭ ଖ୍ରୀ: ଅ:

ବିଜୟ ଦେବଙ୍କ ପରେ ଦଶରଥ ଦେବ ପାଟଣା ରାଜ ସିଂହାସନରେ ଅଭିଷିକ୍ତ ହେଲେ । ସେ ଟିଟିଲା ଗଡ଼ ରାଜଧାନୀରେ ରହି ରାଜ୍ୟ ଶାସନ କରୁଥିଲେ । ଟିଟିଲା ଗଡ଼ରୁ ଉତ୍ତରରେ ଦଶ ମାଇଲ ଅନ୍ତରରେ ବର୍ଣ୍ଣୋଇ ପର୍ବତ ଅଛି । ତହିଁର ଅପର ଦିଗରେ ଧର୍ମ ଗଡ଼ ନାମରେ ସେ କାଠରେ ଗୋଟିଏ ଗଡ଼ ନିର୍ମାଣ କରାଇଥିଲେ । ଏହି ସ୍ଥାନରେ ଧରମ ଦାସ ନାମରେ ଜଣେ ସନ୍ନ୍ୟାସୀ ମଠ କରିଥିଲେ । ସେହି ସନ୍ନ୍ୟାସୀ ପର୍ବତର ଶିଖର ଦେଶରେ ବିଚରଣ କରି ଧ୍ୟାନ କାଟୁଥିଲେ । ତେଣୁ ତାହାଙ୍କର ନାମ ଅନୁସାରେ ଏହି ଗଡ଼ର ନାମ ଧର୍ମ ଗଡ ରଖିଥିଲେ । ସେହି ଗଡରେ ରାଜାଙ୍କର ଅନେକ ସୈନ୍ୟ ଗଡ଼ରକ୍ଷିବ ନିମନ୍ତେ ଥିଲେ । ସେଠାରେ ଦଶମୁ ନାମରେ ଜଣେ ଧନୀ କୁମ୍ଭାର ଥିଲା । ସେ ଗୋଟିଏ ପ୍ରକାଣ୍ଡ ଜଳାଶୟ ତିୟାର କରିଥିଲା । ତାହାର ଅଭ ଅର୍ଦ୍ଧ ମାଇଲ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇ କଠା ପଥରରେ ବନ୍ଧା ଯାଇଥିଲା । ଏହି ବନ୍ଧ ଏପର୍ଯ୍ୟନ୍ତ ଅଛି । ସେହି ଜଳାଶୟଟିକୁ କୁମ୍ଭାର ରାଜାଙ୍କୁ ଉତ୍ସର୍ଗ କରି ଦେଲା । ରାଜା ତହିଁ ମଧ୍ୟରେ ଗୋଟିଏ କ୍ଷୁଦ୍ର ମନ୍ଦିର ନିର୍ମାଣ କରାଇ କପିଳାଶ କ୍ଷେତ୍ରରୁ ଜଳ ଅଣାଇ ଜଳାଶୟ ପ୍ରତିଷ୍ଠା କରାଇ ଥିଲେ । ପ୍ରତିଷ୍ଠା ହେଉଥିବା ସମୟରେ ରାଜା ରାଣୀ ଓ ତାଙ୍କର ଜେମାଦେଈ ମନ୍ଦିର ମଧ୍ୟରେ ଉପସ୍ଥିତ ଥିଲେ । ରାଣୀଙ୍କ ନାମ କଳସ୍ୱା ଦେବୀ

ଓ କ୍ଷେମାମଣିଙ୍କ ନାମ ମଥୁରା ଦେବୀ । ଏମନ୍ତ ସମୟରେ ଘୋର ଦୁର୍ଭିକ୍ଷ ହେଲା । ରାଜା ରାଣୀ ଓ ଅନ୍ୟାନ୍ୟ ଲୋକମାନେ ବହୁ କଷ୍ଟରେ ମନ୍ଦିର ମଧ୍ୟରୁ ବାହାର ଜଳାଶୟର ଅଗକୁ ଅସିଲେ କିନ୍ତୁ କ୍ଷେମା ଅସି ପାରିଲେ ନାହିଁ । ସେହି ମନ୍ଦିର ମଧ୍ୟରେ ବୁଡ଼ି ପ୍ରାଣ ତ୍ୟାଗ କଲେ । ସେହି ଦିନ ଠାରୁ କ୍ଷେମ ମଣିଙ୍କ ନାମରେ ସେଠାରେ ଗୋଟିଏ ଅସ୍ଥାନ କରି ପୂଜା ଦିଆଯାଉ ଅଛି । ଏହି ରାଜାଙ୍କ ଗୋଟିଏ ପ୍ରସିଦ୍ଧ କଟାର ଥିଲା । ତାହାର ନାମ ଦଗ ବିଜୟ କଟାର ଅଟେ । ସେ ପ୍ରାୟ ୧୦୮୭ ଖ୍ରୀ:ଅ:ରେ ପରଲୋକ ଗମନ କଲେ



## ଏହାଙ୍କର ସମସାମୟିକ ମହାରାଜା ଶୈଳ ଗଙ୍ଗ ବା ଅନନ୍ତ ବର୍ମା ।

### ୧୦୭୮—୧୧୪୮ ଖ୍ରୀ: ଅ:

ରାଜରାଜ ଦେବଙ୍କ ପରେ ଶୈଳଗଙ୍ଗ ପୈତୃକ ସିଂହାସନ ଅଧିକାର କଲେ । ତାହାଙ୍କର ତ୍ରିକଳିଙ୍ଗାଧିପତି ଉପାଧି ଥିଲା । ସେ ତାଙ୍କର ଅଧୀନସ୍ଥ କଳାହାଣ୍ଡି, ପାଟଣା, ଜୟପୁର ବସ୍ତର ଅଦି ରାଜ୍ୟରେ ସ୍ୱବଂଶୀୟ ଶାସନ କର୍ତ୍ତା ନିଯୁକ୍ତ କରିଥିଲେ । କିନ୍ତୁ ଉତ୍କଳରେ କେଶରୀ ବଂଶୀୟ ସାମନ୍ତ ରାଜା ନିଯୁକ୍ତ ହୋଇଥିଲେ । ଏହି କେଶରୀ ବଂଶୀୟ ରାଜା ଶୈଳ ଗଙ୍ଗଦେବଙ୍କୁ ନ ମାନିବାରୁ ସେ ତାହାଙ୍କ ସଙ୍ଗରେ ଯୁଦ୍ଧ କରି ଜୟ କଲେ ଓ କଟକରେ ରାଜଧାନୀ ସ୍ଥାପନ କଲେ । ସେହି ଦିନଠାରୁ ଦେବେନ୍ଦ୍ର ଗାଦି କଳିଙ୍ଗ ଦେଶରୁ ଉଠିଯାଇ ଉତ୍କଳରେ ରହିଲା । ଗଙ୍ଗବଂଶୀୟ ରାଜାମାନେ ବିଷ୍ଣୁ ପୂଜକ ଥିବାରୁ ସେମାନେ ତାଙ୍କର ପତାକାରେ ଶଙ୍ଖ, ଚକ୍ର, ଗଦା

ପଦ୍ମର ଚିହ୍ନ ଦେଉଥିଲେ । ଓ କେଶରୀ ବଂଶୀୟ ରାଜାମାନେ ପତାକାରେ ବୃଷଭ ଚିହ୍ନ ଦେଉଥିଲେ ।

ଏହି ରାଜା ଉତ୍ତର ବଙ୍ଗଦେଶକୁ ମଧ୍ୟ ଆକ୍ରମଣ କରିଥିଲେ । ବର୍ତ୍ତମାନ ପର୍ଯ୍ୟନ୍ତ ଏହାଙ୍କର ଅସ୍ତ୍ର ପୂଜିତ ହୋଇଥିଲା । ସେ ହୁଗୁଳି ଜିଲ୍ଲାର ମନ୍ଦାର ଗଡର ରାଜାଙ୍କୁ ବିତାଡ଼ିତ କରିଥିଲେ । ବଙ୍ଗର ସେନବଂଶୀୟ ରାଜାଙ୍କ ସଙ୍ଗେ ଏହାଙ୍କର ବନ୍ଧୁ ଭାବ ଥିଲା । କିନ୍ତୁ ରତନପୁରର ହୈହୟ ବଂଶୀୟ ରାଜାଙ୍କ ସଙ୍ଗରେ ଏହାଙ୍କର ବୈରଭାବ ଥିବାରୁ ଉଭୟଙ୍କ ମଧ୍ୟରେ ଅନେକ ଥର ଯୁଦ୍ଧ ହୋଇ ଶେଷରେ ହୈହୟ ବଂଶୀୟ ରାଜାଙ୍କୁ ପରାଜିତ କରି ମଧ୍ୟପ୍ରଦେଶସ୍ଥ ଗଣ୍ଡ୍ୱାନା ପର୍ଯ୍ୟନ୍ତ ଉତ୍କଳର ସୀମା ବଢ଼ାଇ ଥିଲେ । ଯଯାତି କେଶରୀ ଜଗନ୍ନାଥ ମନ୍ଦିରକୁ ଜୀର୍ଣ୍ଣୋଦ୍ଧାର କରାଇଥିଲେ । ସେ ତାକୁ ବଡ଼କରି ବନାଇଲେ । ମାଦଳା ପାଞ୍ଜୀ ଲେଖା କାର୍ଯ୍ୟ ଆରମ୍ଭ କଲେ । ଜଗନ୍ନାଥଙ୍କ ପୂଜା ନିମନ୍ତେ ପୂର୍ବବର୍ତ୍ତୀ ରାଜାମାନଙ୍କ ଅପେକ୍ଷା ଅଳ୍ପ ଅଧିକ ଭଲ ବନ୍ଦୋବସ୍ତ କରି ଦେଇ ଥିଲେ । ଏହାଙ୍କ ସମୟରେ ଏହି ପ୍ରକାଣ୍ଡ ତ୍ରିକଳିଙ୍ଗ ରାଜ୍ୟର ସୀମା ଛତିଶଗଡ଼ର ଓ କାଙ୍କେର ଓ ରାଇପୁରର ପୂର୍ବ ଅର୍ଦ୍ଧରୁ ଓଡ଼ିଶାର ବଙ୍ଗୋପ ସାଗର ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ସେ ପ୍ରାୟ ୧୧୦୮ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ସୁଳୀୟ ସାମନ୍ତ ରାଜା ରାମେଶ୍ୱର ଦେବ ।

### ୧୦୮୭—୧୧୦୬ ଖ୍ରୀ: ଅ:

ଦଶରଥ ଦେବଙ୍କ ମୃତ୍ୟୁପରେ ରାମେଶ୍ୱର ଦେବ ପାଟଣା ରାଜ୍ୟର ରାଜା ହେଲେ । ସେ ଭୀତଳ ଗଡ଼ ରାଜଧାନୀରେ ବେଶି ଦିନ ନ ରହି ଜୟଦେପୁର କଅଁଶିଲ ଓ ପାଟଣା ଗଡ଼

ରାଜଧାନୀରେ ଅଧିକ ଦିନ ରହି ରାଜ୍ୟ ଶାସନ କରୁଥିଲେ । ସେ ପାଟଣା ଗଡ଼ରେ ରାମସାଗର ନାମରେ ଗୋଟିଏ ଜଳାଶୟ ଖୋଳାଇ ଥିଲେ । ଏହା ପାଟଣା ଗଡ଼ ସ୍କୁଲ୍ ନିକଟରେ ଅଛି । ଏହାଙ୍କ ସମୟରେ ପାଟଣା ରାଜ୍ୟର ଉତ୍ତର ଦିଗସ୍ଥ ଶତ୍ରୁମାନେ ବାର ୨ ଆସି ପାଟଣା ରାଜ୍ୟସ୍ଥ ଉତ୍ତର ଅଞ୍ଚ ଗ୍ରାମ ମାନଙ୍କରେ ଲୁଟପାଟ କରି ଅତ୍ୟାଚାର କରୁ ଥିବାରୁ ସେମାନଙ୍କୁ ଦମନ କରିବା ନିମନ୍ତେ ସୁରଙ୍ଗୀ ନଦୀ ( ଅଧୁନିକ ଅଙ୍ଗନଦୀ ) କୂଳରେ ରାମଗଡ଼ ନାମରେ ଗୋଟିଏ ଗଡ଼ ନିର୍ମାଣ କରାଇ ଥିଲେ ଓ ଗଡ଼ ନିକଟରେ ଗୋଟିଏ ଗ୍ରାମ ମଧ୍ୟ ବସାଇ ଥିଲେ । ତାହାର ନାମ ରାମପୁର ଥିଲା । ଏଣୁ ଏହି ଗଡକୁ ରାମପୁର ଗଡବୋଲି କହୁଥିଲେ । ଆଜିକାଲି ସୁଦ୍ଧା ଏହି ଗଡର ଭଗ୍ନାଂଶ ସ୍ତୁପୀକୃତ ହୋଇ ପଡି ରହିଅଛି । ଗଡ଼ ନଷ୍ଟ ହେଲା ଦିନଠାରୁ ଗ୍ରାମର ନାମ ଅନୁସାରେ ଏସ୍ଥାନକୁ ରାମପୁର ବୋଲି କହି ଆସୁଅଛନ୍ତି । ଏହି ରାମପୁର ଗ୍ରାମ ଏପର୍ଯ୍ୟନ୍ତ ଅଛି ।

ବୈଦେଶିକ ଶତ୍ରୁମାନଙ୍କୁ ଦମନ କରିବା ପାଇଁ ରାଜା ତାଙ୍କର ପୁତ୍ରବରଜଙ୍କ ଜିମାରେ କେତେ ସୈନ୍ୟ ଦେଇ ଏସ୍ଥାନରେ ରଖାଇ ଦେଇଥିଲେ । ପାଟଣା ରାଜ୍ୟର ଉତ୍ତରକୁ ସୁରଙ୍ଗୀ ନଦୀ ( ଅଙ୍ଗ ନଦୀ ) ର ଅନ୍ୟ କୂଳରେ ଦୋଳପୁର ନାମରେ ଗୋଟିଏ ଗ୍ଲୋଟ ରାଜ୍ୟଥିଲା । ସେଠାରେ ଜଣେ ରାଜାଥିଲେ । ତାଙ୍କର ଗୋଟିଏ ଝିଅ ଥିଲା । ରାଜା ଝିଅ ନିମନ୍ତେ ଗୋଟିଏ ଘର ଯୁଆଇଁ ରଖିଥିଲେ । ସେମାନଙ୍କର ବିବାହ ହୋଇ ନ ଥିଲା । କିନ୍ତୁ କେମା ସେହି ଘରଯୁଆଇଁଙ୍କୁ ପସନ୍ଦ କରୁ ନଥିଲେ । ତେଣୁ ପାଟଣା ଯୁବରାଜଙ୍କ ସଙ୍ଗେ ଗୁପ୍ତ ପ୍ରେମରେ ବଶୀଭୂତା ହେଲେ । ଏହି ବିଷୟ ଜାଣି ଦୋଳପୁର ଅଧୁନିକ ( ଅଲେ

ପୁର ) ରାଜାଙ୍କ ଘର ଯୁଅଇଁ ଯୁବରାଜଙ୍କୁ ହତ୍ୟା କଲେ । ଜେମା ଯୁବରାଜଙ୍କୁ ମାର ଦେବାର ଦେଖି ଘର ଯୁଅଇଁକୁ ହାଣି ଦେଇ ନିଜେ ହାଣିହୋଇ ମଲେ । ଏହି ବିଷୟ ରାଜା ରାମେଶ୍ୱର ଦେବ ଓ ଦୋଳାପୁର ପତି ଶୁଣି ଅତିଶୟ ଦୁଃଖିତ ହେଲେ । ଏହି ଦୋଳାପୁର କ୍ରମରେ ଅଦାଲପୁର ନାମରେ ପରିବର୍ତ୍ତିତ ହୋଇ ଶେଷରେ ଅଗଲପୁର ନାମରେ ଅପଭ୍ରଷ୍ଟ ହେଲା ।

ଯୁବରାଜଙ୍କ ମୃତ୍ୟୁପରେ ରାଜା ରାମେଶ୍ୱର ସେହି ଗଡ଼ରେ ଜଣେ ଗଡ଼ତ୍ୟା ନିଯୁକ୍ତ କଲେ । ବୈଦେଶିକ ଶତ୍ରୁମାନେ ଯୁବରାଜଙ୍କ ମୃତ୍ୟୁ ବିଷୟ ଶୁଣି ଦଳବଦ୍ଧ ହୋଇ ଆସି ଗଡ଼ତ୍ୟାଙ୍କୁ ଜନାଣକର ରାଜା ରାମେଶ୍ୱର ଦେବଙ୍କୁ ମାରିବା ନିମନ୍ତେ ପାଟଣା ଗଡ଼କୁ ଗଲେ । ରାଜା ଏହି ସମ୍ବାଦପାଇ ଅନୁଚର-ମାନଙ୍କ ସହ ଯୁବା ଗ୍ରାମ ନିକଟସ୍ଥ ଅରଣ୍ୟରେ ଲୁଚିଲେ । ଶତ୍ରୁମାନେ ଏହି ଖବର ପାଇ ଖୋଜି ୨ ରାଜାଙ୍କୁ ପାଇବାରୁ ସେମାନେ ସେ ସ୍ଥାନରେ ତାଙ୍କର ସହ ଲଢ଼ାଇ କରି ରାଜାଙ୍କୁ ନିହତ କଲେ । ସେହିଦିନଠାରୁ ଏ ସ୍ଥାନକୁ ରାଜା ମରା ବୋଲି କହି ଆସୁଅଛନ୍ତି । ଏହି ଶତ୍ରୁମାନେ ରତନପୁର ହୈହୟ ବଂଶୀୟ ରାଜାଙ୍କର ସୈନ୍ୟ ଅଟନ୍ତି । ଅତଏବ ଏହି ଯୁଦ୍ଧର ଫଳ ସ୍ୱରୂପ ରତ୍ନପୁର ପତି କଳିଙ୍ଗାଧିପତି ଗଙ୍ଗମାନଙ୍କଠାରୁ ପାଟଣା ରାଜାଙ୍କର ଅଧିକାର ଭୁକ୍ତ ସମ୍ବଲପୁର ଜିଲ୍ଲାରୁ କେତେ ଅଂଶ ଲାଭକରି ନିଜରାଜ୍ୟ ରତନପୁର ସଙ୍ଗେ ମିଶାଇଲେ । ରତନପୁର ରାଜ୍ୟ ଏବେ ରାଇପୁର ଓ ବିଲାସପୁର ମିଶ୍ରିତ ଜିଲ୍ଲା ଅଟେ ।



## ସ୍ଥାନୀୟ ସାମନ୍ତ ରାଜା ହରିନାଥ ଦେବ ।

୧୧୦୨—୧୧୧୭ ଖ୍ରୀ: ଅ:

ରମେଶ୍ୱର ଦେବଙ୍କ ପରେ ହରିନାଥଦେବ ପାଟଣାରାଜ୍ୟର ରାଜା ହେଲେ । ଏହି ରାଜା ଜଦେପୁର ରାଜଧାନୀରେ ନରହି କୋଶଳ ବା କଅଁଶିଲ ରାଜଧାନୀରେ ରହିଲେ । ସେ ଏହି ରାଜ୍ୟର ଅନ୍ୟାନ୍ୟ ରାଜଧାନୀ ମାନଙ୍କରେ ମଧ୍ୟ ବେଳେ ବେଳେ ସମୟ ରହୁଥିଲେ । କିନ୍ତୁ ବେଶି ଭାବରେ କଅଁଶିଲ ରାଜଧାନୀରେ ରହି ରାଜତ୍ୱ କରୁଥିଲେ । ସେ ଯାଜପୁରରୁ ୧୩ ଘର ବ୍ରାହ୍ମଣ ଆଣି ଏହି ସ୍ଥାନରେ ରଖାଇ ଥିଲେ । ବ୍ରାହ୍ମଣମାନେ ଯାଜପୁରରୁ ୭ ମୂର୍ତ୍ତି ଜଗନ୍ନାଥ ଆଣି ଏଠାରେ ସ୍ଥାପନ କରିଥିଲେ । ରାଜା ହରିନାଥ ଦେବ ବିଷ୍ଣୁ ଉପାସକ ଥିଲେ । ତେଣୁ ସେ ଏଠାରେ ଜଳ ପଞ୍ଜନ ଓ ଛେଳିଆ ଦେଉଳ ନାମରେ ଦୁଇଟି ଦେଉଳ ତିଆରି କରାଇ ଥିଲେ । ତହିଁରେ ବ୍ରାହ୍ମଣମାନେ ଜଗନ୍ନାଥଙ୍କ ମୂର୍ତ୍ତି ସ୍ଥାପନ କରି ପୂଜା କରୁଥିଲେ । ରାଜା ମଧ୍ୟ ତହିଁର ପୂଜା ନିମନ୍ତେ ସୁବନ୍ଦୋବସ୍ତ କରିଥିଲେ । ଏହି ଜଳ ପଞ୍ଜନ ଓ ଛେଳିଆ ଦେଉଳ ଏ ପର୍ଯ୍ୟନ୍ତ ଏଠାରେ ଦଣ୍ଡାୟମାନ ରହିଅଛି ।

କଅଁଶିଲ ନିକଟସ୍ଥ କନ୍ଧମାନେ ଗୋରୁ ହତ୍ୟା କରି ତାହାର ମାଂସ ଭକ୍ଷଣ କରୁଥିବାରୁ ରାଜା ମନା କଲେ । କିନ୍ତୁ କନ୍ଧମାନେ ମାନିଲେ ନାହିଁ । ଏଣୁ ରାଜା ସେହି କୋଶଳ ରାଜଧାନୀ ତ୍ୟାଗ କରି ପାଟଣାରେ ଆସି ରହିଲେ । ଯାଜପୁରରୁ ଆସିଥିବା ବ୍ରାହ୍ମଣମାନେ ଜଗନ୍ନାଥଙ୍କ ମୂର୍ତ୍ତି ନେଇ ଖରିଆଡ ରାଜ୍ୟକୁ ବାହାରି ଗଲେ । ସେଠାରେ ସେମାନଙ୍କର ରହିବାରେ ଅସୁବିଧା ହେବାରୁ ରାଜା ହରିନାଥ

ଦେବଙ୍କୁ ୨୪୦ ପଟ ଅକଟା ବସ୍ତ୍ର ଜଳଦ ଦେଇ ମନ୍ଦିର ଓ ତହିଁର ଦକ୍ଷିମାନ ପାଇ ରହିଲେ । ଏ ପର୍ଯ୍ୟନ୍ତ ସେମାନେ ଏଠାରେ ରହି ଆସୁଅଛନ୍ତି । ସେଠାରେ ସେହି ବ୍ରାହ୍ମଣ-ମାନେ ବାସ କରି ଜଗନ୍ନାଥଙ୍କ ମନ୍ଦିର ତୟାର କରାଇ ପ୍ରଭୁଙ୍କୁ ସ୍ଥାପନ କଲେ ଓ ସେବା ପୂଜା କରିବାକୁ ଲାଗିଲେ ।

ରାଜା କୋଶଳ ରାଜଧାନୀ ପରିତ୍ୟାଗ କରି ପାଟଣା ଗଡ଼ରେ ରାଜ ମହଲ ତୟାର କରି ବାସ କଲେ ଓ ପାଟଣା ରାଜ୍ୟ ଶାସନ କଲେ । ରାଜାଙ୍କର ଦୁଇଟି ଭାଇ ଥିଲେ । ହରିହର ଦେଓ ଓ ହରିଚନ୍ଦ୍ର ଦେଓ ସେମାନଙ୍କ ରାଣୀଙ୍କ ନାମ କମଳା ଓ ବିମଳା ଥିଲା । ସେମାନେ ମଧ୍ୟ ରାଜାଙ୍କ ସଙ୍ଗେ ପାଟଣା ଗଡ଼କୁ ଆସି ରହିଲେ । ରାଜା କୋଶଳ ରାଜଧାନୀ ତ୍ୟାଗ କରି ଥିବାରୁ ରାଜ କର୍ମଗୃସ୍ତ ଓ ଅନ୍ୟାନ୍ୟ ଭଦ୍ର ବ୍ୟକ୍ତିମାନେ ମଧ୍ୟ କୋଶଳ ପରିତ୍ୟାଗ କରି ସ୍ଥାନାନ୍ତରକୁ ଚାଲି ଗଲେ । ସେହି ଦିନଠାରୁ ସାତ ମାଇଲ ବ୍ୟାପୀ କୋଶଳ ନଗରର ସୌନ୍ଦର୍ଯ୍ୟ ଚିରଦିନ ନିମନ୍ତେ ଲୁପ୍ତ ହେଲା । ଯେଉଁ ନଗର ଏକ ସମୟରେ ଦିଗନ୍ତ ବ୍ୟାପୀ ପ୍ରତିଭା ଅର୍ଜନ କରି ଭାରତବର୍ଷ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ତୁଲ୍ୟ ହୋଇଥିଲା ତାହା ଆଜି ଗୋଟିଏ ପରିତ୍ୟକ୍ତ ଜୀର୍ଣ୍ଣ ଶ୍ମଶାନ କ୍ଷେତ୍ର ରୂପରେ ପରିଣତ ହେଲା । ରାଣୀପୁର ଝରିଏଲ, କଅଁଶିଲ ବାହ୍ମାବଳ ବାଲୁଖମାର ନାମରେ କ୍ଷୁଦ୍ର କ୍ଷୁଦ୍ର ୫ ଖଣ୍ଡ ଗ୍ରାମ ଏ ପର୍ଯ୍ୟନ୍ତ ଘେରି ରହି ସେହି ପ୍ରାଚୀନ କୁଶସ୍ଥଳୀ ବା କୁଶାବତୀ ରାଜଧାନୀକୁ ଚିହ୍ନାଇ ଦେଉଅଛି ଓ ମନ୍ଦିର ମାନ ସେହି ପ୍ରକାଣ୍ଡ ନଗରର ମୂକ ସାକ୍ଷୀ ରୂପେ ରହି ବର୍ତ୍ତମାନ ପର୍ଯ୍ୟନ୍ତ ଦର୍ଶକମାନଙ୍କ

ମୋହିତ କରୁଅଛି । ରାଜା ହରନାଥ ଦେଓ ୧୧୦୭ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ସ୍ଥାନୀୟ ସାମନ୍ତ ରାଜା କୁର୍ଦ୍ଦିବାସ ଦେଓ ।

### ୧୧୧୭-୧୧୩୨ ଖ୍ରୀ: ଅ:

ରାଜା ହରନାଥ ଦେବଙ୍କର ଦୁଇପୁତ୍ର ଥିଲେ । ତେଣୁ ହରନାଥ ଦେବଙ୍କ ମୃତ୍ୟୁ ପରେ ଜ୍ୟେଷ୍ଠ ପୁତ୍ର କୁର୍ଦ୍ଦିବାସ ଦେଓ ପାଟଣା ରାଜଗାଦିରେ ଅଭିଷିକ୍ତ ହେଲେ । ସେ ସମୟରେ ବାମଣ୍ଡା ରାଜ୍ୟ ମଧ୍ୟ ପାଟଣାର ଅଧିନରେ ଥିଲା । ଓ ବାମଣ୍ଡା ରାଜ୍ୟରେ ରାଜା ନ ଥିବାରୁ ରାଜା କୁର୍ଦ୍ଦିବାସ ଦେଓ ତାଙ୍କ ବୃଦ୍ଧଙ୍କୁ ବାମଣ୍ଡା ରାଜ ସିଂହାସନରେ ଅଭିଷେକ କଲେ । ସେ ଅପୁତ୍ରିକ ଭାବରେ ୧୧୩୨ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ରାଣୀ ହେମନ୍ତ କୁମାରୀ ଦେବୀ ।

### ୧୧୩୨—୧୧୩୮ ଖ୍ରୀ: ଅ:

ରାଜା କୁର୍ଦ୍ଦିବାସ ଦେବଙ୍କ ମୃତ୍ୟୁପରେ ତାଙ୍କର ବିଧବା ରାଣୀ ହେମନ୍ତ କୁମାରୀ ଦେବୀଙ୍କର ପୁତ୍ର ନଥିବାରୁ ସେ ନିଜେ ପାଟଣା ରାଜ୍ୟର ଶାସନ କର୍ତ୍ତ୍ରୀ ରୂପରେ ନିଯୁକ୍ତ ହୋଇ ଥିଲେ । ରାଜ୍ୟ ସୁଶୃଙ୍ଖଳାରେ ଚଳିବ ବୋଲି ନିଜର ସୈନ୍ୟ ବିଭାଗରୁ ୭ଜଣ ଉପଯୁକ୍ତ ଲୋକ ବାଛି ସେମାନଙ୍କୁ ନିଯୁକ୍ତ କରି ଥିଲେ । ସେମାନେ ମଲ୍ଲ ଥିବାରୁ ମଲ୍ଲିକ ଉପାଧି ଦିଆଯାଇ ଥିଲା । ରାଣୀ ଗୋଟିଏ ସୁନାବଳେମ୍ବୁ ତିଆରି ମଲ୍ଲିକ ମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଦଶେ ୨ ଲେମ୍ବୁ ଦାନକରି ତାହାଙ୍କ

ଦ୍ୱାରା ରାଜ୍ୟଶାସନ କରୁଥିଲେ । ଏହାପରେ ମଲ୍ଲିକମାନଙ୍କ ସଙ୍ଗରେ ଲେମ୍ବୁ ପ୍ରଭେଦନ ରାଜା ହୋଇ ଥିବାରୁ ଲେମ୍ବୁକୁ ମିଶି "ଅଠମଲ୍ଲିକେ ଲେମ୍ବୁ ରାଜା" ନାମ ରହି ଆସିଅଛି । ରାଜା ହୋଇଥିବା ମଲ୍ଲିକ ରାଜସିଂହାସନରେ ଲେମ୍ବୁଟିକୁ ରଖିଦେଇ ରାଜ୍ୟ ଶାସନ କରୁଥିଲେ । ରାଜବଂଶଗୁରୁମାନେ ମଧ୍ୟ ଜକ୍ତ ମଲ୍ଲିକଙ୍କୁ ସେହି ଦିନଠାରୁ ରାଜାବୋଲି ମାନି ଉଚିତ ସମ୍ମାନ ଦେଖାଉଥିଲେ । ଏହାପରେ କେତେ ବର୍ଷ ଗଲାରୁ ରାଣୀ ହେମନ୍ତ କୁମାରୀ ପ୍ରାୟ ୧୧୩୮—ଖ୍ରୀ: ଅ:ରେ ପରଲୋକ ଗମନ କଲେ ।



## ଅଠମଲ୍ଲିକ

### ୧୧୩୮—୧୧୯୮ ଖ୍ରୀ: ଅ:

ରାଣୀଙ୍କର ମୃତ୍ୟୁପରେ ମଲ୍ଲିକମାନେ ପୂର୍ବ ପ୍ରଚଳିତ ପ୍ରଥା ଅନୁସାରେ ପାଟଣା ରାଜ୍ୟ ଶାସନ କରିବାକୁ ଲାଗିଲେ । ଏହି ମଲ୍ଲିକମାନେ ଭରଣ ପୋଷଣ ନିମନ୍ତେ ମାଫି ଗ୍ରାମମାନ ପାଇଥିଲେ । ସେମାନଙ୍କ ମଧ୍ୟରେ ଜଣେ ମୁଖ୍ୟ ମଲ୍ଲିକ ବା "ମୁଣ୍ଡ ମଲ୍ଲିକ" ବା "ମୁଣ୍ଡୋ ମଲ୍ଲିକ" "Head Mullick" ଥିଲେ । ସେମାନେ ଭିନ୍ନ ଜାତିର ଜଣେ ଲେଖାଏ ଲୋକଥିଲେ

(୧) ସେ ମଧ୍ୟରୁ ଜଣେ ବ୍ରାହ୍ମଣ ଜାତୀୟ ମଲ୍ଲିକ ଥିଲେ । ତାଙ୍କ ନାମ ଚକ୍ରଧର ପାଣିଗ୍ରାହୀ ଅଟେ ସେ ମଲ୍ଲିକମାନଙ୍କ ମଧ୍ୟରେ ପ୍ରଧାନ ବା "ମୁଣ୍ଡୋ ମଲ୍ଲିକ" ଥିଲେ । ଏହାଙ୍କୁ ଘାଗୁଲ ଗ୍ରାମ ମାଫିରେ ଦିଆଯାଇ ଥିଲା । ଏହାଙ୍କ ବଂଶଧର ମାନେ ଏପର୍ଯ୍ୟନ୍ତ ଏହି ଗ୍ରାମ ଭୋଗକରି ଆସୁଅଛନ୍ତି । ସେ ଜଣେ ବୀର ପୁରୁଷ ଥିଲେ । ଶାରୀରିକ ବଳରେ ଅଦ୍ଵିତୀୟ ସେ

ଗୋଟିଏ ସାବଳ ଭଗିଦେଇ ଥିବାରୁ ତାଙ୍କୁ ସାବଳ ଭଙ୍ଗ ପାଣିଗ୍ରାହୀ ବୋଲି ମଧ୍ୟ କହୁଥିଲେ ।

(୨) ଜଣେ ଝାଡ଼ୁଆ କେଉଟ ଜାତିର ମଲ୍ଲିକ ଥିଲେ । ଏହାଙ୍କର ବଂଶଧର ମାନେ ପାଟଣା ରାଜ୍ୟର ଚୌହାନ ମହାରାଜା ମାନଙ୍କର ସୈନ୍ୟ ବିଭାଗରେ ଗୁପ୍ତଚର କରୁଥିଲେ । ବଳରାମ ଦେଓ ଅଗ୍ରଜ ନରସିଂହ ଦେଓଙ୍କ ଠାରୁ ସମ୍ବଲପୁର ଅଂଶ ଭାଗ ପାଇବା ପରେ ସେ ଏହି ମଲ୍ଲିକଙ୍କ ବଂଶରୁ ଜଣକୁ ସମ୍ବଲପୁରକୁ ଆଣି ପୂର୍ବବତ୍ ସୈନ୍ୟ ବିଭାଗରେ ନିଯୁକ୍ତ କରିଥିଲେ । ଅଜୟ ସିଂହଙ୍କ ରାଜତ୍ୱ ସମୟରେ ସମ୍ବଲପୁର ମଲ୍ଲିକ ବଂଶର 'କୃଷ୍ଣ ବଡ଼ମଲ୍ଲିକ' ନାମକ ଜଣେ ମଲ୍ଲିକ ତାଙ୍କର ଦେଓୟାନ ବା ମନ୍ତ୍ରୀ ପଦରେ ନିଯୁକ୍ତ ହୋଇଥିଲେ । ସ୍ତ୍ରୀ ବ୍ୟବସାୟୀ

ମୋଟ ସାହେବ ସମ୍ବଲପୁରକୁ ଅସିଥିବା ସମୟରେ ସେ ତାଙ୍କ ସହିତ ସାକ୍ଷାତ କରିଥିଲେ । ପୁଣି ସମ୍ବଲପୁର ରାଜ ଭ୍ରାତା ମଦନ ଗୋପାଳ ତାଙ୍କର ଜ୍ୟେଷ୍ଠ ଭ୍ରାତାଙ୍କ ଠାରୁ ସୋନପୁର ଅଂଶ ଭାଗ ପାଇବାରୁ ତାଙ୍କସଙ୍ଗରେ ସେହିମଲ୍ଲିକଜଣେ ସମ୍ବଲପୁରରୁ ସୋନପୁରକୁ ଅସିଥିଲେ । ସେ ସୋନପୁର ଯୋଦ୍ଧାମାନଙ୍କ ମଧ୍ୟରେ ପ୍ରଧାନ ଥିଲେ । କାରା ଖଣ୍ଡି ଓ ମେହେନ ଗିରି ଲଢ଼ାଇରେ ଏହି ମଲ୍ଲିକବଂଶ ଜୟଲାଭ କରିବାରୁ ସୋନପୁର ମହାରାଜା ବାଜଶୁଣି ଓ ଫପସି ନାମକ ଭୂଇଖଣ୍ଡ ଗ୍ରାମ ଚୀର-ସ୍ଥାୟୀ ମାଫିରେ ଭୋଗ କରିବାକୁ ଦେଲେ । ଏ ପର୍ଯ୍ୟନ୍ତ ସେହି ଭୂଇଖଣ୍ଡ ଗ୍ରାମ ଉକ୍ତ ମଲ୍ଲିକଙ୍କ ବଂଶଧର ମାନଙ୍କଦ୍ୱାରା ଭୋଗ ଦଖଲ ହୋଇ ଅସୁଅଛି । ଏହି ଇତିହାସର ଲେଖକ ସେହି ବାଜଶୁଣି ମଲ୍ଲିକ ବଂଶର ସନ୍ତାନ ଅଟେ ।

(୩) ଜଣେ ସେମଲ ବେଳଟ ଜାତିର ମଲ୍ଲିକ ଥିଲେ । ତାଙ୍କର ସନ୍ତାନ ମାନେ ପାଇକ ସମରା ଗ୍ରାମରେ ବାସ କରୁଅଛନ୍ତି ।

(୪) ଜଣେ ବଂଶାଳ ଜାତିର ମଲ୍ଲିକ ଥିଲେ । ତାଙ୍କର ବଂଶଧର ମାନେ ଏପର୍ଯ୍ୟନ୍ତ ବେଳିଜଳ ସାଗର ଗ୍ରାମରେ ରହି ଅସୁ ଅଛନ୍ତି ।

(୫) ଜଣେ ତଅଁଲା ପାଇକ ଜାତିର ମଲ୍ଲିକ ଥିଲେ । ତାଙ୍କର ବଂଶଧର ମାନେ ଏ ପର୍ଯ୍ୟନ୍ତ ପାଟଣାଗଡ ଓ ସାଲେ-ଭଟାରେ ଅଛନ୍ତି ।

(୬) ଜଣେ ଗଜଡ ଜାତିର ମଲ୍ଲିକ ଥିଲେ । ଏ ପର୍ଯ୍ୟନ୍ତ ତାଙ୍କର ବଂଶଧର ମାନେ ଜଇ ବାଲି ବାଁ ଜିଲ୍କା ଗ୍ରାମରେ ରହି ଅସୁ ଅଛନ୍ତି ।

(୭) ଜଣେ ପାଇକ ଜାତିର ମଲ୍ଲିକ ଥିଲେ । ତାଙ୍କର ବଂଶଧର ମାନେ ବର୍ତ୍ତମାନ ବୁଢ଼େଲ ନାମରେ ପରିଚିତ ହୋଇ ପାଟଣାର ସୁଲେକେଲା ଅଦ ଗ୍ରାମରେ ବାସ କରୁ ଅଛନ୍ତି ।



## ଷଷ୍ଠ ପରିଚ୍ଛେଦ ।

### ଚୌହାନ ବଂଶର ପ୍ରାଥମିକ ବିବରଣ ।

ଅର୍ଯ୍ୟାବର୍ତ୍ତରେ ଅଗ୍ନିବଂଶ ଚାରି ଭାଗରେ ବିଭକ୍ତ ହୋଇ ଥିଲେ । ( ୧ ) ପ୍ରାମିର ( ୨ ) ପରିହର ( ୩ ) ସୋଲଙ୍କି (୪) ଚୌହାନ । ଅଶାପୁରୀ ଦେବୀ ଚୌହାନମାନଙ୍କ ଇଷ୍ଟଦେବୀ ଅଟନ୍ତି । ପ୍ରବାଦ ଅଛି ଏମାନେ ବଶିଷ୍ଠଙ୍କଠାରୁ ଜନ୍ମହୋଇଥିଲେ । ଏହି ଚୌହାନ ବଂଶରେ ବିଶଳ ଦେଓ ନାମରେ ଜଣେବିଖ୍ୟାତ ରାଜା ଥିଲେ । ରାଜପୁତାନାରେ ହାରାବତୀ ଏହାଙ୍କ ରାଜ୍ୟ ଥିଲା । ସେହି ରାଜ୍ୟ କୋଟା ଓ ବୁନ୍ଦିନାମରେ ଦୁଇ ଭାଗରେ ବିଭକ୍ତ ହୋଇଅଛି । ତାହାଙ୍କର ବଂଶଧରମାନେ ଏହି ଦୁଇ ରାଜ୍ୟରେ ରାଜତ୍ୱ କରିଅାସୁଅଛନ୍ତି । ଧୀରେ ୨ ବଂଶ ବୃଦ୍ଧି ହେବାରୁ ଜଣେ ଭାଇ ଅସି ମଇନ ପୁରରେ ରହିଲେ । ସେଠାରେ ମଧ୍ୟ ତାଙ୍କର ବଂଶ ବୃଦ୍ଧିପ୍ରାପ୍ତ ହେବାରୁ କେତେ-ଜଣ ଦାକ୍ଷିଣାତ୍ୟରେ ରାଜା ହୋଇ ରାଜ୍ୟ ସ୍ଥାପନ କଲେ । ଏହି ସମୟରେ ଜଣେ ରାଜଭ୍ରାତା ମଇନପୁରରୁ ଆସି ଗଡ଼ଅଞ୍ଜରେ ରାଜା ହୋଇ ରହିଲେ । ତାଙ୍କପରେ ୨୮ ଜଣ ରାଜା ଗଡ଼ଅଞ୍ଜ ଭୋଗ କଲାପରେ ହଟ୍ଟହମିର ଦେଓ ବା ହମିର ଦେଓ ରଜାହେଲେ । ଏହି ବଂଶର ରାଜାମାନେ ଗୁରୁଗଡ଼, ଖୁଲଗଡ଼, ମାଣିକ ଗଡ଼ ତିଆରି ଥିଲେ । ହମିର ଦେଓ ହମିରଗଡ଼ ବନାଇ ଥିଲେ ।

ଏହି ସମୟରେ ଓଡ଼ିଶାରେ ତ୍ରିକଳିଙ୍ଗ ନାଥ ଉପାଧି ଗ୍ରହଣ କରି ଗଙ୍ଗବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ପୂର୍ବେ ବର୍ଣ୍ଣନା କରାଯାଇଅଛି ଯେ ଏହି ତ୍ରିକଳିଙ୍ଗ ନାଥଙ୍କର ସୀମା କାଙ୍କେର ବସ୍ତର ଓ ରାଇପୁରର ପୂର୍ବ ଅର୍ଦ୍ଧରୁ ଓଡ଼ିଶାର ବଙ୍ଗୋପସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପାଟଣା, କଳାହାଣ୍ଡି, ବସ୍ତର, ବାମଣ୍ଡା, କାଙ୍କେର ଆଦି ରାଜ୍ୟମାନଙ୍କରେ ତାଙ୍କର ବଂଶୀୟ ବ୍ୟକ୍ତିମାନଙ୍କୁ ସାମନ୍ତ ରାଜା ରୂପରେ ନିଯୁକ୍ତ କରି ଶାସନ କରୁଥିଲେ । ଖରିଅଡ଼ ରାଜ୍ୟ ଉକ୍ତ ଗଙ୍ଗବଂଶୀୟ ତ୍ରିକଳିଙ୍ଗ ନାଥଙ୍କର ଅଧୀନ ଥିଲା । ତେଣୁ ହମିର ଦେଓ ଓଡ଼ିଶାର ଗଙ୍ଗବଂଶୀୟ ମହାରାଜାଙ୍କର ଅଧୀନରେ ଜମିଦାର (ସେ ସାମନ୍ତ କାଳରେ ସାମନ୍ତ ରାଜା) ହୋଇ ଖରିଅଡ଼ରେ ରହିଥିଲେ । ତାହାଙ୍କର ଗୁରିଗୋଟି ରାଣୀ ଥିଲେ । ନିରାପଦରେ ରହିବା ନିମନ୍ତେ ସେ ଖରିଅଡରେ ଯେଉଁ ଗଡ଼ମାନ ତିଆର ହୋଇଥିଲା ସେ ମଧ୍ୟରୁ ହମିର ଗଡ଼ ଗନ୍ଧ ମାର୍ଦ୍ଦନ ପର୍ବତ ଉପରେ ଥିଲା ।

ତ୍ରିକଳିଙ୍ଗ ନାଥ ଉପାଧି ଗ୍ରହଣରେ ରତ୍ନପୁରର ଚେଦି ବଂଶୀୟ ରାଜା ଓଡ଼ିଶାର ଗଙ୍ଗବଂଶୀୟ ରାଜାଙ୍କ ସଙ୍ଗରେ ସର୍ବଦା କଳହ ଲଗାଇଥିଲେ । ସମୟ ସମୟରେ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଉଥିଲା । ଥରେ ରତନପୁର ରାଜା ରତ୍ନଦେବଙ୍କ ଜୟ ହେବାରୁ ୧୧୩୮ ଖ୍ରୀଃଅଃରେ କୋଶଳ ଓ ଖେମଣ୍ଡି ରାଜ୍ୟ ଅଧିକାର କରିନେଲେ । ଯୁଦ୍ଧକ୍ଷେତ୍ର କୋଶଳ ଓ ସମ୍ବଲପୁର ସୀମାରେ ଥିଲା । ଏହି ଯୁଦ୍ଧରେ ଯୋଗଦେବାକୁ ଓଡ଼ିଶା ରାଜା ତାହାଙ୍କର ସାମନ୍ତ ରାଜା ଓ ଜମିଦାର ମାନଙ୍କ ନିକଟକୁ ଆଦେଶ ପଠାଇଥିଲେ । ଏହି ସମୟରେ ପାଟଣା ରାଜ୍ୟ ଅଠମଲ୍ଲିକ ମାନଙ୍କ ଦ୍ୱାରା ଶାସିତ ହେଉଥିଲା ।

ଖବର ପାଇ ମନ୍ତ୍ରିକମାନେ ପାଟଣା ସୈନ୍ୟ ଯୁଦ୍ଧ କ୍ଷେତ୍ରକୁ ପଠାଇଥିଲେ । ତଦନୁସାରେ ବୈଜନାଥ ରାଜା ହମିର ଦେଓ ରାଣୀମାନଙ୍କୁ ହମିର ଗଡ଼ରେ ରଖିଦେଇ ଦୁଇଟି ପାରା ସଙ୍ଗରେ ନେଇ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ଗଲା ସମୟରେ ରାଣୀମାନଙ୍କୁ କହିଲେ "ଯଦି ପାରାମାନେ ଫେରି ଆସିବେ ତେବେ ଜାଣିବ ଯେ ଯୁଦ୍ଧକ୍ଷେତ୍ରରେ ମୋର ମୃତ୍ୟୁ ହୋଇ ଅଛି ନହେଲେ ମୁଁ ବଞ୍ଚିଅଛି ଏତେ କହି ଯୁଦ୍ଧକୁ ଚଳେ । ପାଞ୍ଚ ୨ ସପ୍ତାରେ ଶତ୍ରୁମାନଙ୍କ ନିକଟରେ ଜିତିଲି ବନ୍ଧରେ ପାଣି ପିଇବା ସମୟରେ ପାରାଦୁଇଟି ମୁକ୍ତ ହୋଇ ନିଜ ଦେଶକୁ ଫେରି ଆସିଲେ । ପାରାମାନେ ଫେରି ଆସିଥିବାର ଦେଖି ରାଣୀମାନେ ଯୁଦ୍ଧ କ୍ଷେତ୍ରରେ ରାଜାଙ୍କର ମୃତ୍ୟୁହେଲା ବୋଲି ସ୍ଥିରକରି ଶତ୍ରୁଙ୍କ ନେ ଧରିନେବ ଭାବି ହମିର ଗଡ଼ରେ ଥିବା ରାଣୀ ଦର୍ହରେ ବୁଡ଼ି ମଲେ । ଜ୍ୟେଷ୍ଠରାଣୀ ଜୟନ୍ତୀ ଦେବୀ (ନାମାନ୍ତର କମଳ କୁମାରୀ ଲକ୍ଷ୍ମୀଦେବୀ ତଳୋତ୍ତମା ଓ ଅଶାବତୀ ) ଗର୍ଭବତୀ ଥିବାରୁ ବୁଡ଼ି ମଲେନାହିଁ । ସେ କିଛି ସାମଗ୍ରୀ ସଙ୍ଗରେ ନେଇ ଗୋଟିଏ ଜ୍ୟେଷ୍ଠ ହାତୀ ଉପରେ ଚଢି ଅଲକ୍ଷିତ ଭାବରେ ବାହାରିଲେ । ତେଣେ ରାଜା ହାମିର ଦେଓ ଯୁଦ୍ଧ କ୍ଷେତ୍ରରେ ପରାଜିତ ହୋଇ ଫେରିଆସି ରାଣୀମାନଙ୍କ ଖବର ଶୁଣି ଖରିଅଡ ରାଜ୍ୟ ରତନପୁର ରାଜା ଅଧିକାର କରି-ଅଛନ୍ତି ଜାଣି ହମିର ଗଡ଼ରେ ନରହି ଗୁରାଗଡ଼ରେ ଗୋଟିଏ ଆଶ୍ରମ କରି ରହି ଅବଶିଷ୍ଟ ଜୀବନ ଯାପନ କଲେ । ସ୍ଥାନୀୟ ରାଜାମାନେ ସେଠାରେ ବୁଢ଼ାରାଜା ନାମକ ଅସ୍ଥାନ ବନାଇ ଏବେ ମଧ୍ୟ ତାଙ୍କର ପୂଜା ଦେଇ ଆସୁଅଛନ୍ତି । କୋଶଳ ବା ପାଟଣା ରାଜ୍ୟ ଏ ପର୍ଯ୍ୟନ୍ତ ଓଡ଼ିଶାର ଗଙ୍ଗବଂଶୀୟଙ୍କର ଅଧୀନସ୍ଥ ଥିଲା କିନ୍ତୁ ଏହି ଯୁଦ୍ଧରେ ରତନପୁର ରାଜାଙ୍କର ଜୟ

ହେବାରୁ ରତନପୁର ରାଜାଙ୍କର ସାମନ୍ତ ରାଜ୍ୟ ହୋଇ ରହିଲା ।



## ରତନପୁର ରାଜା ଚେଦି ବା ହୈହୟବଂଶୀୟ

## ୨ୟ ରତ୍ନଦେବ ।

## ୧୧୧୪ରୁ ୧୧୪୫ଖ୍ରୀ:ଅ:

ଚେଦିବଂଶକୁ ହୈହୟ,କାଲଚୁରୀ, ଓ କୋଳଚୁର୍ଣ୍ଣିବଂଶ ମଧ୍ୟ କହନ୍ତି ରାଇପୁର ଓ ବିଲାସପୁର ରାଜ୍ୟ ଦ୍ୱୟ ରତନପୁର ରାଜ୍ୟ ରୂପେ ବିଦିତ ଥିଲା । ବିଲାସ ପୁରରୁ ଉତ୍ତରରେ ୧୨ ମାଇଲ ଦୂରେ ରତନପୁର ରାଜଧାନୀ ବିଦ୍ୟମାନ ଥିଲା । ତାହା ଉଠି-ଯାଇ ବିଲାସପୁର ସ୍ଥାପିତ ହେଲା । ଏହି ରତନପୁର ରାଜ୍ୟକୁ ଛତିଶ ଗଡ଼ ମଧ୍ୟ କହନ୍ତି । ରାୟପୁର ୧୮ ଗଡ଼ ଓ ବିଲାସପୁର ୧୮ ଗଡ଼ ଏପରି ଛତିଶ ଗଡ । ଜ୍ୟେଷ୍ଠଭାଇ ବିଲାସ ପୁରରେ ରହି ତାଙ୍କର ସାନ ଭାଇକୁ ରାୟପୁର ଭାଗ ଦେବାରୁ ତାହା ଅଲଗା ହେଲା । ଏହି ବଂଶରେ ୨ୟ ରତ୍ନଦେବ ରାଜତ୍ୱ କରୁଥିଲେ । ସେ ଗଙ୍ଗବଂଶୀୟ ରାଜାଙ୍କ ସଙ୍ଗରେ ବାର ୨ ଯୁଦ୍ଧ କରି କେତେବାର ହାରି ଶେଷରେ ଜୟ କଲେ । ତେଣୁ ସେ କୋଶଳ ଓ ଖରିଅଜ ରତନ ପୁରର ଅନ୍ତର୍ଭୁକ୍ତ କଲେ । ତତ୍‌ପରେ ଖେମଣ୍ଡି ରାଜ୍ୟକୁ ଯୁଦ୍ଧ। ଜୟକରି ଅପଣା ରାଜ୍ୟରେ ମିଶାଇଲେ । ତତ୍ପରେ ଚେଦି ରାଜା ଅନ୍ଧ୍ର ବା କର୍ଣ୍ଣାଟ ରାଜ୍ୟ ଓ ବସ୍ତର ରାଜ୍ୟକୁ ଜୟ କରି ଅପଣା ରାଜ୍ୟର ଅନ୍ତର୍ଭୁକ୍ତ କଲେ । ୨ୟ ରତ୍ନଦେବ ୧୧୪୫ ଖ୍ରୀ: ଅ:ରେ ପରଲୋକ ହେବାରୁ ତାଙ୍କର ପୁତ୍ର ପୃଥ୍ୱୀଦେବ ରତନପୁର ଗାଦିରେ ଅଭିଷିକ୍ତ ହେଲେ । କିନ୍ତୁ ସେ ଦୁର୍ବଳ ହେବାରୁ ଅଧୀନସ୍ଥ ରାଜ୍ୟମାନ ସ୍ୱାଧୀନ ହେଲେ । ତେଣୁ ପରବର୍ତ୍ତୀ କାଳରେ

ଯେଉଁ ବସାଇଦେବ ପାଟଣାରେ ରାଜାହେଲେ ସେ ସ୍ୱାଧୀନ ନରପତି ହେଲେ ।

---

## ଚୌହାନବଂଶର ଉତ୍ପତ୍ତି ।

ପୂର୍ବ ବର୍ଣ୍ଣିତ ଜୟନ୍ତୀ ରାଣୀଙ୍କ ସଙ୍ଗରେ ଜଣେ ଦାସୀ ଓ ହାତୀ ଚଳାଇବା ପାଇଁ ଜଣେ ମାହୁନ୍ତ ଆସିଥିଲେ । ଗନ୍ଧମାଦନ ପର୍ବତରେ ଆସୁ ଆସୁ ବାଟରେ ରାଣୀଙ୍କୁ ଏକାକୀ ଅବସ୍ଥାରେ ଛାଡ଼ି ଦେଇ ଅରଣ୍ୟ ମଧ୍ୟରେ ଲୁଚି ୨ ବାହାରି ଗଲେ । ପାଟଣା ସୀମା ପାରି ହୋଇ ପାଟଣା ଓ ଖରିଆର ସୀମା ପାଟଣାନ ପର୍ବତରେ ଗଲା ସମୟରେ ହାତୀର ଘଣ୍ଟି ଛୁଟି ପଡ଼ିଲା । କିଛି ଦୂର ଯାଇ ରାଣୀ ହାତୀରୁ ଆବଶ୍ୟକୀୟ ସାମଗ୍ରୀଥିବା ପେଟିଅକୁ ଉତ୍ତାରି ବହନର ଆୟୋଜନ କଲେ । ଏପରି ସମୟରେ ହାତୀଟି ମଧ୍ୟ ଚରି୨ କେଉଁଆଡ଼େ ବାହାରି ଗଲା ରାଣୀ ଜାଣି ପାରିଲେ ନାହିଁ । ପରି ଶେଷରେ ପେଟିଅକୁ ନିଜେବୋହି ଅଗ୍ରସର ହେଲେ । ପାଟପାନ ପର୍ବତ ଅତିକ୍ରମ କରି ଡଙ୍ଗ୍ରେଲ ଡୁଙ୍ଗରିକୁ ଗଲେ । ସେଠାରେ ଗୋଟିଏ ପଥରର ପରିଶରେ ରହିଲେ । ସେଠାରେ ପ୍ରସବ ବେଦନା ଅନୁଭବ କଲେ । ସେ ପ୍ରସବ ସକାଶେ କ୍ରନ୍ଦନ ଶବ୍ଦ ଆରମ୍ଭ କଲେ । ଏହି ସମୟରେ ନିକଟସ୍ଥ ଉକଲା ଗ୍ରାମର ଝାଙ୍କର ଓ ଝାଙ୍କରାଣୀ ଫଳ ମୂଳ ସଂଗ୍ରହ କରିବା ଅଭିପ୍ରାୟରେ ଏହି ଡୁଙ୍ଗରିକୁ ଯାଇଥିଲେ । ରାଣୀଙ୍କର କ୍ରନ୍ଦନ ଶବ୍ଦ ଶୁଣି ଝାଙ୍କର ଓ ଝାଙ୍କରାଣୀ ଆଶ୍ଚର୍ଯ୍ୟ ହୋଇ ଶବ୍ଦ ଲକ୍ଷ୍ୟକରି ସେଠାକୁ ଆସି ଦେଖିଲେ ଯେ ଜଣେ ପରମରୂପବତୀ ସ୍ତ୍ରୀ ପ୍ରସବ ବେଦନାରେ କଷ୍ଟ ପାଉଅଛି । ଝାଙ୍କରର ଉପଦେଶ ଅନୁସାରେ ଝାଙ୍କରାଣୀ ରାଣୀଙ୍କୁ ସାହାଯ୍ୟ କଲା । କିଛି ସମୟ ଗଲାରୁ ଗୋଟିଏ ନବ-

କୁମାର ଜନ୍ମ ହେଲ । ରାଣୀ ଟାଙ୍କରାଣୀ ସାହାଯ୍ୟରେ ପୁଅକୁ ନିକଟବର୍ତ୍ତୀ ନିର୍ଝରିଣୀକୁ ନେଇ ଗାଧୋଇ ସେହି ଟାଙ୍କର ଓ ଟାଙ୍କରାଣୀ ସଙ୍ଗରେ ଉତ୍କଳ ଗ୍ରାମକୁ ଅସିଲେ । ରାମୋଡ଼ ଇଲକାରେ ବିଂଝାଲ ଜାତିର ଜଣେ ଜମୁରା ଲୁଣପାଲିରେ ରହୁଥିଲେ । ସେହି ଜମୁରାଙ୍କ ନାମ ରୋମଡ ବରିହା ଥିଲା । ଟାଙ୍କର ମା ପୁଅକୁ ନେଇ ବରିହାଙ୍କ ଯିମାରେ ରଖାଇଲ । ବରିହା ମଧ୍ୟ ଝିଅ ପରି ଯତ୍ନକରି ତାଙ୍କୁ ନିଜର ଘରରେ ରଖିଲେ । କିଛିଦିନ ଗଲା ପରେ ମା ପୁଅଙ୍କ ଅନେକ ଅସୁବିଧା ହେଉ ଥିବାର ଦେଖି ତାଙ୍କୁ ତାଙ୍କର ରାମୋଡ଼ ଗ୍ରାମସ୍ଥ ଘରକୁ ନେଇ ଚନ୍ଦ୍ରଧର ପାଣିଗ୍ରାହୀ ( ସାବଳ ଭଙ୍ଗା ପାଣିଗ୍ରାହୀ ) ଙ୍କ ଯତ୍ନରେ ରଖାଇ ଦେଲେ । ଦିନୁ ୨ କୁମାର ବଢ଼ିବାକୁ ଲଗିଲେ । ବରିହାଙ୍କ ଘରରେ ଥିବା ସମୟରେ ରାମୋଡ଼ ବରିହା ଶିଶୁର ନାମ ରାମ ବା ରମାଇ ଦେଇଥିଲେ ।

ଶିଶୁକୁ କ୍ରମେ ୨ ପାଞ୍ଚ ବରଷ ହେଲ । ପାଣିଗ୍ରାହୀଙ୍କ ଘରରେ ଅନେକ ଛେଳି ମେଣ୍ଢା ଥିଲେ । ସେ ସବୁ ଚରାଇବା ନିମନ୍ତେ ପାଣିଗ୍ରାହୀ ରମାଇଙ୍କୁ ଆଦେଶ ଦେଇଥିଲେ । ରମାଇ ଗ୍ରାମ୍ୟ ପିଲାମାନଙ୍କ ସଙ୍ଗରେ ଜଙ୍ଗଲକୁ ଛେଳି ଚରାଇ ଯାଉଥିଲେ । ଦିନେ ସେ ଅରଣ୍ୟ ମଧ୍ୟରେ ଗଛ ମୂଳରେ ଶୋଇ ପଡ଼ିଲେ । ଛେଳିମାନେ ଗୋଟି ୨ ହୋଇ ଘରକୁ ଫେରି ଆସିଲେ । ଅଧିକ ବିଳମ୍ବ ହୋଇଗଲା । ତଥାପି ରମାଇ ଉଠିଲେ ନାହିଁ । ପାଣିଗ୍ରାହୀ ରମାଇ ଅସି ନଥିବାର ଦେଖି କେତେ ଜଣ ଗ୍ରାମ୍ୟ ଲୋକ ସଙ୍ଗରେ ନେଇ ଖୋଜି-ବାକୁ ବାହାରିଲେ । ଅରଣ୍ୟ ମଧ୍ୟରେ ଏଣେ ତେଣେ ଖୋଜୁ ୨ ଦେଖିଲେ ରମାଇ ଗୋଟିଏ ଗଛମୂଳରେ ଶୋଇଛନ୍ତି, ଓ ଗୋଟିଏ ନାଗ ସାପ ଫେଣ ଟେକି ତାହାଙ୍କର ମୁହଁକୁ ଛାଇ

କରନ୍ତି । ଏମାନଙ୍କୁ ଦେଖିଲା କ୍ଷଣି ସପଟି ଗୁଳିଗଲା । ସେମାନେ ନିକଟକୁ ଯାଇ ରମାଇଙ୍କୁ ଉଠାଇଲେ । ରମାଇ ଉଠି ଭଲ ଭାବରେ କଥା ବାର୍ତ୍ତା କରିବାରୁ ସମସ୍ତେ ଆନନ୍ଦ ହୋଇ ଘରକୁ ଫେରି ଗଲେ । ଏ ସବୁ ଦେଖି ପାଣିଗ୍ରାହୀ ଭାବିଲେ ଏ ଜଣେ ମହା ପୁରୁଷ ଜନ୍ମ ଗ୍ରହଣ କରି ଅଛନ୍ତି । ସେ ଦିନଠାରୁ ତାଙ୍କୁ ସେ ଅଧିକ ଯତ୍ନ ଓ ଆଦରରେ ରଖିଲେ । ରାମୋଡ଼ ବରିହା ଏହି ଘଟଣା ସ୍ଥଳରେ ଗୋଟିଏ ଶିବ ଲିଙ୍ଗ ସ୍ଥାପନ କରିଦେଲେ ।

ରମାଇର କିଶୋର ବୟସରେ ପ୍ରବେଶ ହେବା ସଙ୍ଗେ୨ ଧୌଡ଼ କୁସ୍ତି ଆଦି ଦେଶୀ କସରତ ଆଦି ବିଦ୍ୟାରେ ଅତି ପ୍ରବୀଣ ହୋଇ ପଡ଼ିଲେ । ସେ କସରତ କରିବା ନିମନ୍ତେ ଗ୍ରାମରୁ ଏକ ମାଇଲ ଅନ୍ତରରେ ଗୋଟିଏ ସ୍ଥାନ ନିର୍ବାଚନ କରି ଥିଲେ । ଏହାର ନାମ ଅଖଡ଼ା କଟା ଥିଲା । ସେଠାରେ ସେ କାଠର ମୁଦ୍ଗର ଓ ପଥରର ବାଟି ରଖି କସରତ କରୁ ଥିଲେ । ସେହି ବାଟି ଓ ମୁଦ୍ଗର ଏବେ ସୁଦ୍ଧା ଏ ସ୍ଥାନରେ ରହି ପୂଜା ପାଇ ଆସୁ ଅଛି । ସେ ସମୟରେ ଏ ଇଲାକାରେ ଦମାଇ ଗଣ୍ଡ ନାମରେ ଜଣେ ବୀର ପୁରୁଷ ଥିଲା । ତାହାର ଠାରେ ଗୋଟିଏ ଭଲ ଶକ୍ତ ଖଣ୍ଡା ଥିଲା । ରମାଇ ଅତି ପୂର୍ବେ ମାତାଙ୍କ ଠାରୁ ଶୁଣିଥିଲେ , ଯେ ସେ ଜଣେ ରାଜପୁତ୍ର ଅଟନ୍ତି । ଭାଗ୍ୟ ଦୋଷରୁ ତାହାଙ୍କର ଏହି ଦଶା ହୋଇ ଅଛି । ତେଣୁ ସେ ମନରେ ସବୁ ବେଳେ ଭାବୁଥିଲେ କିପରି ସେ ତାଙ୍କର ଲୁପ୍ତ ଗୌରବ ଲାଭ କରିବେ । ଓ ତହିଁର ସୁଯୋଗ ପାଇଁ ସବୁବେଳେ ସେ ଅପେକ୍ଷା କରି ଥାନ୍ତି । ତେଣୁ ସେ ଗଣ୍ଡର ଖଣ୍ଡା ଲାଭ କରିବାକୁ ଗଣ୍ଡ ସଙ୍ଗରେ ଲଢ଼ାଇ କରି ତାକୁ ନିହତ କଲେ । ଓ ତାହା

ତାଙ୍କୁ ଖଣ୍ଡା ଲାଭ କଲେ । ଏହି ଖଣ୍ଡାକୁ ରମାଇ ଖଣ୍ଡା ବା ପାଟ ଖଣ୍ଡା କହନ୍ତି । ଏହା ଚିରେଡ ପାଟଣା ଗଡରେ ପୂଜା ପାଉ ଅଛି । ସେଠାରୁ ଫୁଲ ପଡ଼ିଗଲେ ଜୟ ସିଂହାର ଯାତ୍ରା (ପୂଜା) ହୁଏ ।

ଅନ୍ତରେ ସାବଳ ଭଙ୍ଗା ପାଣିଗ୍ରାହୀ ପୀଡ଼ିତ ହେଲେ । ରାଜ କାର୍ଯ୍ୟ ବୁଝିବା ପାଇଁ ପାଟଣା ଗଡ଼କୁ ଯାଇ ପାରିଲେନାହିଁ । ତେଣୁ ସେ ରମାଇ ଦେଓଙ୍କୁ ସେ ଦିନକର କାର୍ଯ୍ୟ ଚଳାଇ ଦେବାକୁ ପଠାଇଲେ । ରମାଇ ମା ସଙ୍ଗରେ ପାଟଣା ଗଡକୁ ଆସି କେମ୍ନୁ ବ୍ରାହ୍ମଣ କର ରାଜା ହେଲେ ଏଣି ୬ଟି ଛତ୍ର କୁଡ଼ିଆ ତିଆରି କରିବାକୁ ଆଦେଶ ଦେଲେ । କୁଡ଼ିଆ ଘର ତିଆରି ହେଲାରୁ ଛଅ ଜଣ ମଲ୍ଲିକଙ୍କୁ ଡକାଇ ତହିଁ ମଧ୍ୟରେ ଜଣ୨ କରି ବସାଇ ଗୋଟି୨ କରି ହାଣିଦେଲେ । ସେମାନଙ୍କ ମୁଣ୍ଡ ହାତ ଗୋଡ଼ ଓ ଗଣ୍ଡ ମାନ କଟାଇ ପୃଥକ୨ ସ୍ଥାନରେ ପୋତାଇ ଦେଲେ । ମୁଣ୍ଡ ପୋତା ହୋଇଥିବା ସ୍ଥାନ କମ୍ପିତ ହେବାରୁ ଗୋଟିଏ କଳା ଗାରଡ଼ (ମେଣ୍ଢ)ଶାବଳ ଭଙ୍ଗା ପାଣି ଗ୍ରାହୀଙ୍କ ସକାଶେ ମାରି ତାହାର ମୁଣ୍ଡ ସେ ସଙ୍ଗେ ପୋତାଇବାରୁ ସେ ସ୍ଥାନ ଆଉ କମ୍ପିଲା ନାହିଁ । ତାହାର ଗୋଡ଼, ହାତ, ଗଣ୍ଡ ମଧ୍ୟ ଯଥା ସ୍ଥାନ ମାନଙ୍କରେ ପୋତା ଗଲା । ପରେ ଗଣ୍ଡ ପୋତା ଯାଇଥିବା ସ୍ଥାନରେ ସିଂହାସନ ତିଆରି କରାଇଲେ ।

ସେ ସମୟରେ ପାଟଣା ଗଡରେ ଗୋଟିଏ ମନୁଷ୍ୟ ଖିଆ ବାଘ ଅତି ପ୍ରବଳ ହୋଇଥିଲା । ତାହାର ଭୟରେ ଲୋକେ କଷ୍ଟ ପାଉଥିଲେ । ତେଣୁ ମଲ୍ଲିକ ମାନେ ଗୋଟିଏ ହୁକୁମ ଜାରି କରି ଥିଲେ ଯେ ଯେଉଁ ଲୋକ ବାଘକୁ ମାରିବ ସେ ପାଟଣା ଗଡରେ ରାଜା ହେବ । ଏହି ବିଷୟ ରମାଇ ଶୁଣି-

ବାରୁ ଅରଣ୍ୟକୁ ଯାଇ ବାଘକୁ ମାରି ତାହାର କାନ ଲାଞ୍ଜ କାଟିଆଣି ଲୋକଙ୍କୁ ଦେଖାଇଲେ । ଏହା ଦେଖି ସମସ୍ତ ପାଟଣା ବାସୀ ଆନନ୍ଦ ହୋଇ ତାଙ୍କୁ ପାଟଣା ରାଜ ସିଂହାସନରେ ଅଭିଷେକ କଲେ । ଓ ତାଙ୍କ ହସ୍ତରେ ପାଟଣା ରାଜ୍ୟର ଶାସନ ଭାର ଅର୍ପଣ କଲେ ।



## ରମାଇ ଦେଓ ।

### ୧୧୬୯ ରୁ ୧୨୧୧ ଖ୍ରୀ: ଅ:

ରମାଇ ଦେଓ ପାଟଣାର ରାଜା ହୋଇ ରାଜ୍ୟ ଶାସନ କଲେ । ତାଙ୍କର ପିତା ହମିର ଦେଓ ଯୁଦ୍ଧ କ୍ଷେତ୍ରକୁ ଗଲା ଦିନ ଠାରୁ ଖରିଆଡ଼ ରାଜ୍ୟ ଅରାଜକ ଅବସ୍ଥାରେ ଥିଲା । ଯେତେବେଳେ ଖରିଆଡ଼ର ପ୍ରଜାମାନେ ଏହାଙ୍କୁ ହମିର ଦେଓଙ୍କ ପୁତ୍ର ବୋଲି ଜାଣିଲେ ଏହାଙ୍କୁ ନେଇ ଖରିଆଡ଼ ରାଜ୍ୟରେ ମଧ୍ୟ ଅଭିଷେକ କରି ରାଜା ବୋଲି ମାନିଲେ । ଏପରି ପ୍ରକାରରେ ରାଜା ରମାଇ ଦେଓ ପାଟଣା ଓ ଖରିଆଡ଼ ରାଜ୍ୟକୁ ଏକତ୍ର କରି ଶାସନ କରିବାକୁ ଲାଗିଲେ ।

ରାଜା ରମାଇ ଦେଓ ଜଣେ ଧୀ ଶକ୍ତି ସମ୍ପନ୍ନ ରାଜା ଥିଲେ । ଆପଦ କାଳରେ ଯେଉଁ ଝାଙ୍କର ତାଙ୍କର ମାତାଙ୍କୁ ରକ୍ଷା କରିଥିଲା ତାକୁ ଡ଼ଙ୍କଲା ଗ୍ରାମ ମାଫିରେ ଦେଲେ । ଶାବଳ ଭଙ୍ଗା ପାଣିଗ୍ରାହିଙ୍କୁ ମାଫିରେ ଦିଆ ଯାଇଥିବା ଘାଟ୍ଲନ ଗ୍ରାମ ଚିରସ୍ଥାୟୀ ମାଫି କରି ଦେଲେ । ଯେଉଁ ମଲ୍ଲିକ ମାନଙ୍କ ମୁଣ୍ଡ କାଟି ଥିଲେ ସେମାନଙ୍କର ବଂଶଧର ମାନଙ୍କୁ ମାଫି ଜମି ଦେଇ ନିଜର ସୈନ୍ୟ ବିଭାଗରେ ଚାକିରି କରିବାକୁ ନିଯୁକ୍ତ କଲେ । ଅଦ୍ୟାବଧି ଏମାନେ ଏହି ରାଜ ବଂଶର କାର୍ଯ୍ୟ କରି ଆସୁ ଅଛନ୍ତି । ସେ ସମୟରେ ଯେଉଁ

ସବୁ ଅତ୍ୟାଗୃହସ୍ତ ଓ ଦୁଷ୍ଟ ଜମିଦାର ଜମିଦାର ମାନେ ଥିଲେ ସେମାନଙ୍କ ସହ ଲଢ଼ାଇ କରି ସେମାନଙ୍କୁ ଦମନ କରି ରାଜ୍ୟରେ ଶାନ୍ତି ବିରାଜିତ କରାଇଲେ । ସେ ଖଣ୍ଡଅଡ଼ ଓ ପାଟଣାରୁ ବାଛି ବାଛି ଲୋକ ସଂଗ୍ରହ କରି ଯୁଦ୍ଧ ବିଦ୍ୟା ଶିଖାଇଲେ । ଏହି ସୈନ୍ୟ ମାନଙ୍କ ଦ୍ୱାରା ସେ ବୌଦ୍ଧ ରାଜାଙ୍କ ସଙ୍ଗେ ଯୁଦ୍ଧ କରି ଜୟ କଲେ । ଓ ବୌଦ୍ଧ ରାଜ୍ୟକୁ ପାଟଣାର ଅଧୀନସ୍ଥ କରି ବୌଦ୍ଧ ରାଜାଙ୍କୁ ସାମନ୍ତ ରାଜା କଲେ ।

ବୌଦ୍ଧ ବିଜୟ ପରେ ସେ ସୈନ୍ୟ ସାମନ୍ତ ଘେନି ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ପୁରି କ୍ଷେତ୍ରକୁ ଗମନ କଲେ । ସେସମୟରେ ରାଜରାଜେଶ୍ୱର ଦେଓ ଓଡ଼ିଶାର ରାଜାଥିଲେ । ସେ ରମାଇ ଦେଓଙ୍କ ଆଗମନ ସମ୍ବାଦ ପାଇ ଆନନ୍ଦରେ ତାଙ୍କୁ ଅଭ୍ୟର୍ଥନା କରିଥିଲେ । ଭଗବାନଙ୍କୁ ଦର୍ଶନ କରି ସେଠାରେ ସେ କେତେଦିନ ରହିଲା ପରେ ଦିନେ ରାଜ ରାଜେଶ୍ୱର ଦେଓ ରମାଇ ଦେଓଙ୍କୁ ଗୋଟିଏ ନିର୍ଜନ କକ୍ଷକୁ ଡ଼କାଇ ନେଇ ସେଠାରେ ଉଭୟେ ଅନେକ ସମୟ କଥା-ବାର୍ତ୍ତା ହାସ୍ୟ କୌତୁକରେ କଟାଇଲା ପରେ ରାଜ ରାଜେଶ୍ୱର ଦେଓ ରମାଇ ଦେଓଙ୍କୁ କହିଲେ ଏଠାରେ ମୁଁ ତୁମ୍ଭଙ୍କୁ ବିନାଶ କରିବାର ଚେଷ୍ଟାକଲେ ତୁମ୍ଭେ କିପରି ପ୍ରାଣରକ୍ଷା କରନ୍ତ ? ଏହା ଶୁଣି ରମାଇଦେଓ ସ୍ୱଅଷ୍ଠାରେ ବେଷ୍ଟିତ ହୋଇଥିବା ଗୋଟିଏ ଦୀର୍ଘ ଖଣ୍ଡା ଉତ୍ତୋଳନ କରି କହିଲେ ମୁଁ ଇଚ୍ଛାକଲେ ତୁମ୍ଭଙ୍କୁ ଏହି ମୁହୂର୍ତ୍ତରେ ବିନାଶ କରି ଏହି ଓଡ଼ିଶାର ରାଜା ହୋଇପାରେ । ଏହା ଶୁଣି ଓଡ଼ିଶାରାଜା ଲଜ୍ଜିତହୋଇ ତାଙ୍କର ଝିଅ ନଥିବାରୁ ଭାଇଙ୍କର ଝିଅକୁ ତାଙ୍କୁ ବିବାହ କରାଇବା ପ୍ରସ୍ତାବ କଲେ । ରମାଇଦେଓ

ସ୍ୱୀକୃତ ହେବାରୁ ପାଟଣା ଓ ଓଡ଼ିଶା ରାଜ୍ୟର ସୀମାସ୍ଥଳରେ ବିବାହ ଛାମୁଣ୍ଡିଆ ଉତ୍ସବ ହେଲା । ବିବାହ ପରେ ସ୍ମୃତି ରକ୍ଷା ନିମନ୍ତେ ସେଠାରେ ଛାମୁଣ୍ଡିଆ ନାମରେ ଗୋଟିଏ ଗ୍ରାମ ବସାଇ ଦେଲେ । ଏହି ଗ୍ରାମ ଏ ପର୍ଯ୍ୟନ୍ତ ଅଛି ।

ରାଜା ରମାଇଦେଓ ଶ୍ରୀକ୍ଷେତ୍ରରୁ ଫେରିଲା ସମୟରେ ଯାଜପୁର ବୀରଜା ମଣ୍ଡଳରୁ ୧୩ ଘର ବ୍ରାହ୍ମଣ ଆଣିଥିଲେ । ବଳଭଦ୍ର ସୁଭଦ୍ରା ଓ ଜଗନ୍ନାଥ ମୂର୍ତ୍ତିମଧ୍ୟ ଆଣିଥିଲେ । ଭଗବାନଙ୍କ ପାଇଁ ପାଟଣାଗଡ଼ ନିକଟରେ ମନ୍ଦିର ତିଆରି କରାଇ ସ୍ଥାପନ କରିଦେଲେ । ଓ ବ୍ରାହ୍ମଣମାନଙ୍କୁ ତାହାଁର ସେବା ପୂଜା କରିବା ନିମନ୍ତେ ନିଯୁକ୍ତ କରିଦେଲେ । ଓ ସେମାନଙ୍କର ରହିବା ନିମନ୍ତେ ସେଠାରେ ସ୍ଥାନଦେଲେ । ଏହାକୁ ଆଜିକାଲି ବ୍ରହ୍ମପୁରା କହନ୍ତି । ପ୍ରଭୁଙ୍କର ମଣୋହି ଖର୍ଚ୍ଚ ନିମନ୍ତେ ହୀରାପୁର ଓ ଚନ୍ଦନଭାଟି ଗ୍ରାମ ମାଫି ଦେଇଥିଲେ । ଅଦ୍ୟାବଧି ଏହି ବ୍ରାହ୍ମଣମାନଙ୍କ ବଂଶଧରମାନେ ଚନ୍ଦନଭାଟି ହୀରାପୁର ଓ ବ୍ରହ୍ମପୁରାରେ ବାସକରି ଆସୁଅଛନ୍ତି । ଏହି ବ୍ରାହ୍ମଣମାନଙ୍କୁ ଅନେକ କ୍ଷମତା ମଧ୍ୟ ଦେଇଥିଲେ । ଯଦି କୌଣସି ନରହନ୍ତା ଏହି ବ୍ରହ୍ମପୁରା ମଧ୍ୟକୁ ଚାଲି ଯାଉଥିଲା ତେବେ ରାଜା ତାହାର ବିଚାର ନକରି ବ୍ରାହ୍ମଣମାନଙ୍କ ଉପରେ ଏହି ଭାର ଅର୍ପଣ କରୁଥିଲେ ସେମାନେ ଇଚ୍ଛା ଅନୁଯାୟୀ ଦୋଷିର ଦଣ୍ଡ ବିଧାନ କରୁଥିଲେ ବା କ୍ଷମା କରି ପାରୁଥିଲେ । ଆଉ କେତେକଜଣ ବିଶିଷ୍ଟ ବ୍ରାହ୍ମଣମାନଙ୍କୁ ମନ୍ତ୍ରୀ ଗୁରୁଆଦି ପଦରେ ନିଯୁକ୍ତ କରିଥିଲେ । ବ୍ରହ୍ମପୁରା ଅଦ୍ୟାବଧି ଅଛି ।

ରାଜା ରମାଇଦେଓଙ୍କ ସମୟରେ ଦୁଇଜଣ କର୍ଣ୍ଣାଟୀୟ ବୀରପୁରୁଷ ଥିଲେ । ସେମାନଙ୍କର ନାମ ଖୁରଖୁସ ସେଠା ଓ

ଫଲ୍‌ଅସାଦା ଅଟେ । ଏଠାରୁହେଁ ଖାଇଥିଲେ । ବଡ଼ଭାଇ କୁଡ଼ାସିଂହା ନିକଟସ୍ଥ ଗୁଡ଼ା ଡୁଙ୍ଗୁରରେ ଥିଲି । ସାନଭାଇ ଜରାସିଂହାରେ (ଦେଗାଁର ପଶ୍ଚିମରେ ଥିବା ଚନ୍ଦ୍ରପୁରରେ) ଗୋଟିଏ ଗଡ଼କରି ରହୁଥିଲି । ଏହାକୁ ଗୁଡ଼ୀଗଡ଼ ବୋଲି-ଯାଉଥିଲି । ସେ ଦୁଇଜଣ ବଡ଼ ଅତ୍ୟାଗ୍ରୁରି ଥିବାରୁ ରାଜା ଦମାଇଗଣ୍ଡର ପୁଅ ପିମାରେ କେତେ ସୈନ୍ୟ ଦେଇ ଯୁଦ୍ଧ-କରିବାକୁ ପଠାଇଲେ । ଦମାଇଗଣ୍ଡର ପୁଅ ସେମାନଙ୍କ ସହ ଲଢ଼ାଇକରି ସମୂଳରେ ସେମାନଙ୍କୁ ବିନାଶକଲି । ରାଜା ଏହାକୁ ବସ୍ତୁତ ଅତି ସନ୍ତୁଷ୍ଟ ହୋଇ ସେହି ଭୂମିକା ଅର୍ପଣ କଲେ । ସେ ସେଠାରେ ଜଟ୍‌ଗୁରି ଗଡ଼ ନାମରେ ଗୋଟିଏ ଗଡ଼କରି ରହିଲା । ଶେଷରେ ସେହି ନାମ ଜରସିଂହା ନାମରେ ଅପଭ୍ରଷ୍ଟ ହେଲା । ତତ୍ପରେ ସେ ଡୋସରା ଗଡ଼କୁ ପରିବର୍ତ୍ତିତ ହେଲା ।

ରାଜା ରମାଇଦେଓ ପାଟଣାର ଅଧିଷ୍ଠାତ୍ରୀ ଦେବୀଙ୍କ ପୂଜା-ନିମନ୍ତେ ଦେଉଳଗାଁ, କଳଙ୍ଗାପାଲି, ଡିଅଡୁମେର, ଜଟବାଲି, ଘୁନଘୁଟି ପାଲିଗ୍ରାମ, ମାଫି ଦେଇଥିଲେ । ସେ ୧୨୧୧ ଖ୍ରୀ:ଅ:ରେ ପରଲୋକ ଗମନକଲେ । ଏହାଙ୍କ ରାଜତ୍ୱ ସମୟରେ ପାଟଣା ରାଜ୍ୟର ସୀମା ପଶ୍ଚିମରେ ବେନ୍ଦ୍ରା ନୂଆଗଡ଼, ଉତ୍ତରରେ ମହାନଦୀ, ଦକ୍ଷିଣରେ ତେଲନଦୀ ଓ ପୂର୍ବରେ ବୌଦ ରାଜ୍ୟର ପୂର୍ବସୀମା ଥିଲା ।



## ମହାଲିଙ୍ଗ ଦେଓ

### ୧୨୧୧—୧୨୧୭ ଖ୍ରୀ:ଅ:

ମହାରାଜା ରମାଇଦେଓଙ୍କ ପରେ ତାଙ୍କ ପୁତ୍ର ମହାଲିଙ୍ଗ-ଦେଓ ପାଟଣା ସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ ପ୍ରଜାବତ୍ସଳ ରାଜାଥିଲେ । ପ୍ରଜାମାନେ ଏହାଙ୍କ ରାଜତ୍ୱ

ସମୟରେ ଅତ୍ୟଧିକ ଧନ ଲୁଟିଥିଲେ । ସେ ୧୨୧୭ ଖ୍ରୀ:ଅ:ରେ ପରଲୋକ ଗମନକଲେ ।

———✱———

## ବଜ୍ରରାଜ ଦେଓ ।

### ୧୨୧୭—୧୨୪୭ ଖ୍ରୀ: ଅ:

ପିତାଙ୍କ ମୃତ୍ୟୁପରେ ବଜ୍ରରାଜ ଦେଓ ପିତୃ ସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ ଚୌହାନ ରାଜବଂଶର ଶ୍ରେଷ୍ଠ ରାଜା ଅଟନ୍ତି । ଏ ରାଜସୈନ୍ୟ ବିଭାଗର ବିଶେଷ ଉନ୍ନତି କରିଥିଲେ । ସୈନ୍ୟମାନଙ୍କ ବ୍ୟବହାର ନିମନ୍ତେ ୩୨୦୦୦ ଖଣ୍ଡା ତିଆର କରାଇ ଥିଲେ । ଓ ସେହି ଅନୁପାତରେ ତାଙ୍କର ସୈନ୍ୟ ମଧ୍ୟ ଥିଲେ । ସେହି ସୈନ୍ୟ ମାନଙ୍କ ଦ୍ୱାରା ପାଟଣାର ସୀମା ସ୍ଥିତ ରାଜ୍ୟମାନ ଜୟ କରି ବାମଣ୍ଡା ରାଜ୍ୟ ଆକ୍ରମଣ କଲେ । ପାଟଣା ଓ ବାମଣ୍ଡା ଉଭୟ ରାଜାଙ୍କ ମଧ୍ୟରେ ବାମଣ୍ଡା ରାଜ୍ୟର ସୀମାରେ ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ବାମଣ୍ଡା ରାଜା ପରାଜିତ ହେଲେ । ବାମଣ୍ଡା ରାଜା ଅନେକ ଗୁଡିଏ ହାତୀ ପ୍ରତିବର୍ଷ ଧରୁ ଥିବାରୁ ପ୍ରତିବର୍ଷ ୧୭ ଘର ଲେଖାଏ ହାତୀ ପାଟଣା ରାଜ୍ୟକୁ କର ସ୍ୱରୂପ ଦେବାକୁ ପାଟଣା ରାଜା ସ୍ଥିର କରି ଦେଲେ ଓ ବାମଣ୍ଡାକୁ ସାମନ୍ତ ରାଜାକରି ରଖିଲେ ।

ଅନନ୍ତର ମହାରାଜ ବଜ୍ରରାଜ ଦେଓ ବିପୁଳ ବାହିନୀ ନେଇ ଗାଙ୍ଗପୁର ଆକ୍ରମଣ କଲେ । ଗାଙ୍ଗପୁର ରାଜା ମଧ୍ୟ ଅନେକ ସୈନ୍ୟ ସଂଗ୍ରହ କରି ଯୁଦ୍ଧ କରିବାକୁ ବାହାରିଲେ । ଦୁହିଁଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ଗାଙ୍ଗପୁର ରାଜା ହାରି ଯିବାରୁ ପାଟଣା ରାଜ୍ୟକୁ ଅନେକ ଧନ ରତ୍ନ ହାତୀ ଘୋଡ଼ା ଦେଇ ସାମନ୍ତ ରାଜା ହୋଇ ରହିଲେ ।

ତତପରେ ମହାରାଜ ବସ୍ତ୍ରରାଜ ଦେଓ ବଣାଇ ଆକ୍ରମଣ କରିବାକୁ ବାହାରିଲେ । ବଣାଇ ରାଜା ଏହାଙ୍କ ପ୍ରବଳ ପରାକ୍ରାନ୍ତ ବାହିନୀ ଦେଖି ବିନା ଯୁଦ୍ଧରେ ଏହାଙ୍କ ଶରଣାପନ୍ନ ହୋଇ ସାମନ୍ତ ରାଜା ହୋଇ ରହିଲେ ।

ମହାରାଜ ବସ୍ତ୍ରରାଜ ଦେଓଙ୍କ ଗୋଟିଏ ଦୁହିତା ଥିଲେ । ସେ ପ୍ରାପ୍ତ ବୟସ୍କା ହେବାରୁ ତାଙ୍କ ପାଇଁ ବର ଖୋଜିଲେ । ଅନେକ ସ୍ଥାନରେ ଖୋଜି ୨ ଶେଷରେ ବସ୍ତର ଯୁବରାଜଙ୍କ ସହ ବିବାହ କରାଇବାକୁ ପ୍ରସ୍ତାବ କଲେ । ଏହା ଶୁଣି ବସ୍ତର ରାଜା କହିଲେ ଯେ ପାଟଣା ରାଜ ପଦ ତାଙ୍କର ପୂର୍ବପୁରୁଷର ରମାଇ ଖଣ୍ଡା ଦେବେ ତେବେ ତାଙ୍କ ପୁତ୍ର ସଙ୍ଗେ ପାଟଣା ରାଜନନ୍ଦିନୀଙ୍କ ଶୁଭ ପରିଣୟ କରାଇବାକୁ ତାଙ୍କର ସ୍ୱୀକାର ଅଛି ନତୁବା ନାହିଁ । ଏହା ଶୁଣି ମହାରାଜ ବସ୍ତ୍ରରାଜ ଦେଓ ଦୁଃଖିତ ହେଲେ । କିନ୍ତୁ ଏଣେ କେମାନଙ୍କର ବିବାହ ନ କଲେ ଚଳିବ ନାହିଁ ବୋଲି ଖଣ୍ଡା ଦେବାକୁ ସ୍ୱୀକାର କଲେ । ବିବାହକାର୍ଯ୍ୟ ଶେଷ ହେଲାପରେ ରମାଇ ଖଣ୍ଡାକୁ ଗୋଟିଏ ପାଲିଙ୍କିରେ ରଖି ଅନ୍ୟ ପାଲିଙ୍କିରେ କେମାଙ୍କୁ ବସାଇ ବସ୍ତରକୁ ପଠାଇ ଦେଲେ । ବସ୍ତରରେ ପହୁଞ୍ଚିଲା ମାତ୍ରେ ବସ୍ତର ରାଜା ଓ ଯୁବରାଜ ଖଣ୍ଡା ଗ୍ରହଣ କରିବାର ଲୋଭରେ ପାଲିଙ୍କି ନିକଟକୁ ଆସି ପାଲିଙ୍କିର କବାଟ ମେଲି କଲାକ୍ଷଣି ଦେଖିଲେ ସେ ଖଣ୍ଡା ନିକଟରେ ଗୋଟିଏ ବୃହତ ନାଗ ସର୍ପ ଫେଣା ଟେକି ଏମାନଙ୍କୁ ଦଂଶନ କରିବାର ଚେଷ୍ଟା କରୁଅଛି । ଏହା ଦେଖି ପିତା ପୁତ୍ର ଉଭୟ ଭୟରେ କମ୍ପି ହଟି ଯାଇ ପାଲିଙ୍କିର ଦ୍ୱାର ବନ୍ଦ କରିଦେଲେ । ପାଟଣା ରାଜା ଆମ୍ଭମାନଙ୍କୁ ମାରିବା ଉଦ୍ଦେଶ୍ୟରେ ପାଲିଙ୍କିରେ ସାପ ଗୋଟିଏ ପଠାଇ ଦେଇ ଛନ୍ତି ବୋଲି ନିନ୍ଦା କଲେ । ଏହା ଶୁଣି

କେମାମଣି ଅତିଶୟ ଅପମାନିତା ହେଲେ । କେତେଦିନ ପରେ ପାଟଣା ମହାରାଜାଙ୍କୁ ଲଜ୍ଜାଦେବା ଅଭିପ୍ରାୟରେ ସେ ଦୁଇଟି କୁକ୍କୁର ପୋଷିଲେ । ଗୋଟିଏ କୁକ୍କୁରକୁ ବତ୍ସରାଜ ଓ ଅନ୍ୟଟିକୁ ବତ୍ସରାଜଙ୍କ ଭାଇ ବଳରାମ ଦେଓ ବୋଲି ନାମଦେଲେ ବତ୍ସରାଜ ଦେଓ ଓ ବଳରାମ ଦେଓ ବୋଲି ଡାକିଲା ମାତ୍ରେ କୁକ୍କୁର ପୋଷକ ରାଜାଙ୍କ ପାଟକୁ ଧାଇଁ ଆସୁଥିଲେ । ଏହାପରେ କେତେଦିନ ଗଲାରୁ ପାଟଣା ରାଜା ପାଟଣାର କେତେ ଭଦ୍ର ଲୋକଙ୍କ ଦ୍ୱାରାରେ କେତେ ସାମଗ୍ରୀ କେମାମଣୀଙ୍କ ନିକଟକୁ ପଠାଇଲେ । ସେମାନେ ବସ୍ତରରେ ପହଞ୍ଚି ଏହି ବିଷୟ ଦେଖି ଅତିଶୟ ଦୁଃଖିତ ହୋଇ ଫେରି ଆସି ବତ୍ସରାଜ ଦେଓଙ୍କୁ ଜଣାଇଲେ । ଏହା ଶୁଣି ମହାରାଜା ଅତିଶୟ ରାଗାନ୍ୱିତ ହୋଇ ଭାଇ ବଳରାମଙ୍କ ଦ୍ୱାରାରେ ପାଟଣା ରାଜ୍ୟର ଶାସନ ଭାର ଅର୍ପଣ କରି ବିଶାଳ ବାହିନୀ ଘେନି ବସ୍ତର ବିରୁଦ୍ଧରେ ଯୁଦ୍ଧ ଯାତ୍ରା କଲେ । ଏହାଙ୍କର ଗତି ରୋଧ କରିବାକୁ ବସ୍ତର ରାଜା ଅନେକ ସୈନ୍ୟ ପଠାଇ ଥିଲେ । ଗଡ଼ ବାହାରରେ ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ବସ୍ତର ରାଜାଙ୍କ ପ୍ରେରିତ ସୈନ୍ୟ ପରାଜିତ ହୋଇ ଗଡ଼ ମଧ୍ୟକୁ ପଳାଇ ଗଲେ । ଏହି ଗଡ଼ ଅତି ଦୁର୍ଭେଦ୍ୟ ଥିଲା । ତାହାର ନାମ ଦନ୍ତବାଡ଼ା ଗଡ଼ ଅଟେ । ଦନ୍ତେଶ୍ୱରୀ ଦେବୀ ଗଡ଼ର ଅଧିଷ୍ଠାତ୍ରୀ ଦେବୀ ଥିଲେ । ପାଟଣା ସୈନ୍ୟମାନେ ଅନେକ ଚେଷ୍ଟା କରି ସୁଦ୍ଧା ଗଡ଼ ମଧ୍ୟକୁ ପ୍ରବେଶ କରି ପାରିଲେ ନାହିଁ । ଗଡ଼ ଅବରୋଧ କରି ଛାଉଣି କରି ରହିଲେ । ଗଡ଼ର ଅଧିଷ୍ଠାତ୍ରୀ ଦେବୀ ପ୍ରତ୍ୟହ ୨ ଗୌଡୁଣୀ, ମାଳୁଣୀ, କେଉଟୁଣୀ, ଗୁଡିଅଣୀ ବେଶରେ ସୈନ୍ୟ ଛାଉଣୀକୁ ଗୋରସ, ଦହି, ମହି, ସାଗ; ଫୁଲ, ଖିଅ,

ଭୁଜା-ଭଙ୍ଗୁଡ଼ା ଆଦି ବିକି କରିବାକୁ ଅଣୁଥିଲେ । ଯେଉଁ ଲୋକ ତାହା କିଣି ଖାଉଥିଲା ସେ ମୃତ୍ୟୁ ମୁଖରେ ପତିତ ହେଉଥିଲା । ଏପରି ପାଟଣା ସୈନ୍ୟ ମାନଙ୍କ ମଧ୍ୟରୁ ପ୍ରତ୍ୟହ ଅନେକ ସୈନ୍ୟ ମରିବାକୁ ଲାଗିଲେ ।

ଏପରି ସମୟରେ ହୀରା ଓ ମଦନ ନାମରେ ଦୁଇଟି ଭାଇ ନନ୍ଦପୁରରୁ ପାଟଣା ଗଡ଼କୁ ଆସିଲେ । ସେ ଦୁହେଁ ମଲ୍ଲ ବିଦ୍ୟାରେ ନିପୁଣ ଥିଲେ । ରାଜ ଭ୍ରାତ ବଳରାମ ଦେଓ ସେମାନଙ୍କ ହସ୍ତରେ ପତ୍ର ଦେଇ ସେମାନଙ୍କୁ ସେନାପତି କାର୍ଯ୍ୟରେ ନିଯୁକ୍ତ କରିବାକୁ ଅଗ୍ରଜଙ୍କ ନିକଟକୁ ବସ୍ତରକୁ ପଠାଇଲେ । ମହାରାଜା ବସ୍ତ୍ରରାଜ-ଦେଓ ପତ୍ରପଢ଼ି ସେମାନଙ୍କୁ ଉକ୍ତ କାର୍ଯ୍ୟରେ ନିଯୁକ୍ତ କରିଦେଲେ । କେତେଦିନ ପରେ ହୀରା ଓ ମଦନ ଦେଖିଲେ ଯେ ଜଣେ ବୁଢ଼ୀ ପ୍ରତ୍ୟହ ଫଳମୂଳ ସୈନ୍ୟ ମଧ୍ୟକୁ ବିକି ଅଣୁଅଛି । ଓ ସୈନ୍ୟମାନେ ତାହା ଖାଇ ମରୁଅଛନ୍ତି ସେମାନେ ବୁଢ଼ୀକୁ ଗଡ଼ର ଦେବୀ ବୋଲି ସ୍ଥିରକରି ବୁଢ଼ୀକୁ ନିଜର ବସାକୁ ନେଇ ସେବାପୂଜାରେ ତୁଷ୍ଟ କରିବାକୁ ଲାଗିଲେ । ଜଣକେତେ ଲୋକଯାଇ ରାଜାଙ୍କୁ ଏବିଷୟରେ କହିଲେ । ମହାରାଜା ହୀରା ଓ ମଦନଙ୍କୁ ଡକାଇ ସମସ୍ତ ବିଷୟ ବୁଝି ସନ୍ତୁଷ୍ଟ ହୋଇ ରହିଲେ । ଓ ସେମାନଙ୍କୁ ଉତ୍ସାହିତ କଲେ । ଏପରି କେତେଦିନ ଗଲାରୁ ଦିନେ ଦେବୀ ପ୍ରସନ୍ନାହୋଇ କହିଲେ ତୁମ୍ଭେ କଣଚାହଁ ? ହୀରା ଓ ମଦନ ଉତ୍ତରଦେଲେ ଅମ୍ଭେମାନେ ଏହିଗଡ ଜିଣିବାକୁ ଚାହୁଁ । ଦେବୀ କହିଲେ ତୁମ୍ଭେମାନେ ଗଡ଼ଜିଣିଲେ ମୁଁ କେଉଁଠି ରହିବି ? ଏମାନେ କହିଲେ ତୁମ୍ଭେ ଅମର ପାଟଣାରାଜ୍ୟରେ ରହିବ । ଦେବୀ—ପାଟଣାରେ ତ ପାଟଣେଶ୍ୱରୀ ଦେବୀ ଅଛି ? ଏମାନେ କହିଲେ—ସେଗଡ଼ରେ ରହିବେ । କିନ୍ତୁ ତୁମ୍ଭେ

ପାଟଣାରାଜ୍ୟର ସମସ୍ତ ଗ୍ରାମରେ ରହି ପୂଜା ପାଇବ । ଏଥିରେ ଦେବୀ ସନ୍ତୁଷ୍ଟ ହୋଇ କହିଲେ "କାଲି ପ୍ରଭାତରୁ, ଜଣେ ଗର୍ଭିଣୀ ସ୍ତ୍ରୀଦ୍ୱାର ଖୋଲିବ । ସେ ପୂନର୍ବାର ଗଡ଼-ମଧ୍ୟକୁ ପ୍ରବେଶ କରିବା ପୂର୍ବରୁ ତାକୁ ହାଣିଦେଇ ଗଡ଼ମଧ୍ୟକୁ ପ୍ରବେଶ କରିବ ।" ଏତିକି କହି ଦେବୀ ଅଦୃଶ୍ୟ ହୋଇଗଲେ । ହୀର ଓ ମଦନ ଆନନ୍ଦରେ ଯାଇ ଏବିଷୟ ମହାରାଜାଙ୍କୁ ଜଣାଇଲେ । ମହାରାଜା ତତ୍କ୍ଷଣାତ୍ ସୈନ୍ୟ ସଜ୍ଜିତକରି ଅତି ସାବଧାନ ଭାବରେ ଜଗାଇଲେ । ଅନ୍ୟଦିନ ପ୍ରଭାତରୁ ଜଣେ ଗର୍ଭିଣୀ ସ୍ତ୍ରୀଦ୍ୱାର ଖୋଲିବାମାତ୍ରେ ତାକୁ ହାଣିଦେଇ ଗଡ଼ମଧ୍ୟକୁ ପ୍ରବେଶକଲେ । ଗଡ଼ମଧ୍ୟରେ ବସ୍ତର ରାଜାଙ୍କ ସହ ଅତି ଭୟଙ୍କର ଭାବରେ ଯୁଦ୍ଧହେଲା । ଯୁଦ୍ଧରେ ପାଟଣା ମହାରାଜାଙ୍କ ଜୟହେଲା । ଓ ବସ୍ତରରାଜା ନିହତ ହେଲେ । ପାଟଣାରାଜା ବସ୍ତରରାଜାଙ୍କ ଭାଇଙ୍କୁ ବସ୍ତରରାଜ ସିଂହାସନରେ ପାଟଣାରାଜ୍ୟର ସାମନ୍ତରାଜା ପଦରେ ଅଭିଷେକ କଲେ ଓ ପାଟଣା ରାଜ୍ୟକୁ ପ୍ରତିବର୍ଷ ଟଙ୍କା କର-ଦେବାକୁ ସ୍ଥିର କରିଦେଲେ । ଏହି ଟଙ୍କା ନିୟମିତ ଭାବରେ ଦେବାକୁ ଭିକ୍ଷାନନ୍ଦ ନାମକ ସେଠାରେ ଜଣେ ଦେଓ୍ୱାନ ଯାମିନ ହେଲେ । ଅନନ୍ତର ମହାରାଜା ରମାଇଗଣ୍ଡାକୁ ସେଠାରୁ ଧରି ଆସି ପାଟଣାରେ ସ୍ଥାପନ କଲେ । ମହାରାଜାଙ୍କ ଆଦେଶରେ ପାଟଣାର ସମସ୍ତଗ୍ରାମରେ ଦନ୍ତେଶ୍ୱରୀ ଦେବୀଙ୍କ ଅସ୍ଥାନ ତୟାରକରାଇ ଦେବୀଙ୍କୁ ସ୍ଥାପନ କଲେ ଓ ଦେବୀ ସ୍ତେତେନ ଦେବୀ ନାମରେ ପୂଜା ପାଇଲେ । ଅଦ୍ୟାବଧି ଏହି ଦେବୀ ଏହି ନାମରେ ଗ୍ରାମେ ୨ ପୂଜାପାଇ ଆସୁଅଛନ୍ତି ।

କିଛିଦିନ ପରେ ବସ୍ତରରାଜ୍ୟର କେତେଜଣ ସେନାପତି କେତେକ ସୈନ୍ୟ ନେଇ ପାଟଣା ମହାରାଜାଙ୍କ ବିରୁଦ୍ଧରେ

ଯୁଦ୍ଧକଲେ । ସେମାନେ ବାହାରେ ପାଟଣାଗଡ଼ ଅବରୋଧ କଲେ । ପାଟଣାଗଡ଼ସ୍ଥ ଦୁର୍ଗ ଉପର ଅଟ୍ଟାଳି ଉପର ଲକ୍ଷ୍ୟକରି ଶତ୍ରୁ ସେ ପାଖରେ ଥାଇ ତୋପ ଫୁଟାଇଲେ । ଧୁମ୍ ୨ କରି ଅନେକାନେକ ଗୋଳା ନିକ୍ଷେପ କଲେ । ନୈଶ ଗଗନ କମ୍ପିଉଠିଲା । କ୍ରମେ ୨ ସମସ୍ତ ଗୋଳା ବାରୁଦ ଶେଷହେବାରୁ ପ୍ରଭାତରୁ ଦେଖିଲେ ଯେ ତାଙ୍କର ସମୁଦାୟ ଗୋଳା ଦୁର୍ଗର ପାଣିରେ ପଡ଼ି ନଷ୍ଟ-ହୋଇ ଯାଇଛି । ଏଥିରେ ସେମାନେ ଅତ୍ୟନ୍ତ ଲଜ୍ଜିତହୋଇ ଫେରିଗଲେ । ପାଟଣା ମହାରାଜଙ୍କ ଏହି ସମ୍ବାଦ ପାଇ ହଠାତ୍ ଶେଦମନ୍ତ୍ରୀ ଗଡ଼ତ୍ୟାଙ୍କୁ ଆଦେଶଦେଲେ ଯେ ଫେରିଯାଉଥିବା ଶତ୍ରୁର ସୈନ୍ୟମାନଙ୍କ ସଙ୍ଗେ ଲଢ଼ାଇକରି ଜୟୁକରନ୍ତୁ । ଆଦେଶପାଇ ଗଡ଼ତ୍ୟା ତାଙ୍କର ସୈନ୍ୟନେଇ ଶତ୍ରୁର ସୈନ୍ୟ ମାନଙ୍କୁ ରେଢ଼ାରେ ନଦୀ ଶେଷ ନିକଟରେ ଭେଟି ଯୁଦ୍ଧକଲେ । ଅନେକ ସୈନ୍ୟ ମୃତ୍ୟୁମୁଖରେ ପଡ଼ିଲେ । କେତେଜଣ ଲୁଚି-କରି ଯାଇ ବୁଢ଼ିକୁରାଡ଼ି ଜଙ୍ଗଲରେ ଲୁଚି ରହିଲେ । ଏହାରି ଭାବରେ ଗଡ଼ତ୍ୟା ଯୁଦ୍ଧ ଜୟକରି ଫେରିଗଲେ । ଏ ସମୟରେ ଦଶହରା ମାସ ଚାଲିଥିଲା । ପାଟଣେଶ୍ୱରୀ ଦେବୀଙ୍କ ବଳୀ ସାଲେପାଲି ଓ ଗଙ୍ଗାସାଗର ମଧ୍ୟସ୍ଥ ଜଙ୍ଗଲକୁ ନାଣ ୨ ଗଲା ସମୟରେ ସେହି ଲୁଚିଥିବା ଶତ୍ରୁମାନେ ଆସି ବଳୀର ମୁଣ୍ଡ କାଟିନେଇ ଶତ୍ରୁଙ୍କୁ ବାହାରପାଟ ଦନ୍ତେଶ୍ୱରୀ ଦେବୀଙ୍କ ପାଖରେ ସ୍ଥାପନକରି ପୂଜାକଲେ । ଏଣେ ଗଣ୍ଡିଟି ନାଣ ୨ ପାଟଣାଗଡ଼କୁ ଆସି ମନ୍ଦିରମଧ୍ୟକୁ ପ୍ରବେଶ ନକରି ମନ୍ଦିର ବାହାରରେ ଗୋଟିଏ ଚମ୍ପାଗଛ ତଳରେ ପଡ଼ିରହିଲା । ସେଦିନଠାରୁ ଚମ୍ପାତଳିଏକ ନାମରେ ଉକ୍ତସ୍ଥଳରେ ପାଟଣାର ପାଟଣେଶ୍ୱରୀ ଦେବୀଙ୍କୁ ଅନ୍ନଗୋଟିଏ ପୂଜା ହୋଇ ଆସୁଅଛନ୍ତି ।

ଏହି ଅନ୍ତ ମହାରାଜ ବସ୍ତ୍ରରାଜଦେଓ ଖେମଣ୍ଡି ଅଧିପ ରାଜା-ମାନଙ୍କ ସହ ଯୁଦ୍ଧକରି ସେମାନଙ୍କ ରାଜ୍ୟମାନଙ୍କୁ ପାଟଣା ରାଜ୍ୟର ଅନ୍ତର୍ଭୁକ୍ତ କଲେ । ମହାରାଜ ବସ୍ତ୍ରରାଜଦେଓ ୧ ପାଟଣା ୨ ସମ୍ବଲପୁର ସୋନପୁର ୩ ଢେଙ୍କାନାଳ ୪ ବାମଣ୍ଡା ୫ ବେଢ଼ାଖୋଲ ୬ ଜୟପୁର ସିଣିଥିବା ନନ୍ଦପୁର ୭ ଅନୁଗୁଳ ୮ ଗଙ୍ଗପୁର ୯ ଖଡ଼ିଆଳ ୧୦ ଭେଦ୍ରା ନୂଆଗଡ଼ ୧୧ ବୁଡ଼ାସମ୍ବର ୧୨ ଫୁଲଝର ୧୩ ଖେମଣ୍ଡି ୧୪ ଗଙ୍ଗାମ ୧୫ ଅଠମଲ୍ଲିକ ୧୬ ବଉଦ ୧୭ ବସ୍ତର ୧୮ ବଣାଇ ଏହି ଅଠର ଗଡ଼ର ଏକ ଛତ୍ର ପତି ମହାରାଜା ହେଲେ । ଇତି ପୂର୍ବେ ତାଙ୍କ ବଂଶରେ ରାଜା ଉପାଧି ଥିଲା । ବସ୍ତ୍ରରାଜ ଦେଓ ମହାରାଜା ଉପାଧି ଘୋଷଣା କଲେ । ତ୍ରିକଳିଙ୍ଗନାଥ ଉପାଧି ଗ୍ରହଣ କରିବାକୁ ତାଙ୍କର ଇଚ୍ଛା ଥିଲା ତେଣୁ ସେ ପାଟଣା ଓ ସମସ୍ତ ସାମନ୍ତ ରାଜ୍ୟର ପ୍ରକାଣ୍ଡ ବାହିନୀ ସଂଗ୍ରହକରି ଓଡ଼ିଶା ରାଜାଙ୍କ ବିରୁଦ୍ଧେ ଯୁଦ୍ଧ ଯାତ୍ରାକଲେ । ଓଡ଼ିଶା ରାଜା ପ୍ରକାଣ୍ଡ ଓଡ଼ିଆ ସୈନ୍ୟ ସଂଗ୍ରହକରି ଯୁଦ୍ଧକୁ ବାହାରିଲେ । ଉଭୟଙ୍କ ମଧ୍ୟରେ ଢେଙ୍କା-ନାଳର ପୂର୍ବ ସୀମାରେ ପ୍ରବଳ ଭାବରେ ଯୁଦ୍ଧ ହେଲା । ଯୁଦ୍ଧରେ ପାଟଣା ରାଜା ପରାଜିତ ହୋଇ ସୋନପୁର ଗଡ଼କୁ ଫେରି ଆସିଲେ । ଓଡ଼ିଶା ରାଜା ତାଙ୍କୁ ଗୋଡ଼ାଇ ଆସି ସୋନପୁରରେ ତିନି ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କଲେ । ସେଠାରୁ ପାଟଣା ରାଜା ଫେରି ଆସି ପାଟଣା ଗଡ଼ରେ ରହିଲେ । ଏହି ଗଡକୁ ମଧ୍ୟ ଓଡ଼ିଶା ରାଜା ଗୋଡ଼ାଇ ଆସି ତିନିମାସ ପର୍ଯ୍ୟନ୍ତ ଲଢ଼ାଇ କଲେ । ପରେ ପାଟଣା ମହାରାଜା ଖରିଅଡ଼ର ଗୁରୁଗଡକୁ ଫେରିଆସି ଲଢ଼ାଇକଲେ । ଏହି ଗଡ଼ ପର୍ବତ ଉପରେ ଥିବାରୁ ଅତି ଦୁର୍ଭେଦ୍ୟ ଥିଲା । ପର୍ବତ ଉପରେ ବଡ଼ ବଡ଼ ପଥର ସଜ୍ଜିତ ଥିବାରୁ ପଥର ଗଡାଇ ଗଡାଇ ଓଡ଼ିଶା ରାଜାଙ୍କ ବହୁତ ସୈନ୍ୟଙ୍କୁ ବିନାଶ

କଲେ । ଓଡ଼ିଶା ରାଜା କୌଣସି ମତେ ଗଡ଼ ଅଧିକାର କରି ପାରିଲେ ନାହିଁ । ତେଣୁ କୃତ୍ରିମ ବନ୍ଧୁତା ସ୍ଥାପନ କରି ପାଟଣା ମହାରାଜାଙ୍କୁ ଗଡ଼ରୁ ବାହାର କରି କନ୍ଦୀକୃତ କଲେ । ଓ ତାଙ୍କ ପୁତ୍ର ବୈଜଳ ଦେଓଙ୍କୁ ପାଟଣା ରାଜ୍ୟରେ ସାମନ୍ତ ରାଜା କରିଦେଲେ ଓ ପାଟଣା ରାଜ୍ୟ ଓଡ଼ିଶା ସଙ୍ଗେ ଯୁକ୍ତ କରିଦେଲେ ।

———✱———

## ବୈଜଳ ଦେଓ

### ୧୨୯୬—୧୩୧୧ ଖ୍ରୀ: ଅ:

ମହାରାଜା ବତ୍ସରାଜ ଦେଓଙ୍କ ଅନ୍ତେ ବୈଜଳ ଦେଓ ମହାରାଜା ହେଲେ ଏ ଜଣେ ବିଜ୍ଞ ଓ ସୁଶାସକ ରାଜାଥିଲେ । ଏହାଙ୍କ ସମୟରେ ତୁଗାନ ଖାଁ ନାମକ ଜଣେ ମୁସଲମାନ ଓଡ଼ିଶା ରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ବିରୁଦ୍ଧେ ଯୁଦ୍ଧଯାତ୍ରା କଲା । ଯୁଦ୍ଧରେ ଓଡ଼ିଶା ରାଜାଙ୍କ ଦ୍ୱାରା ପରାଜିତ ହୋଇ ଫେରିଗଲା । କିଛିଦିନ ପରେ ପୁନର୍ବାର ସେ ଯୁଦ୍ଧ ଅଭିଯାନ କଲା । ଏହି ସମୟରେ ଓଡ଼ିଶା ରାଜା ବୈଜଳ ଦେଓଙ୍କୁ ସସୈନ୍ୟ ଅସି ଯୁଦ୍ଧ କରିବାକୁ ଆଦେଶ ଦେଲେ । ତେଣୁ ତୁଗାନ ଖାଁ ଓ ବୈଜଳ ଦେଓଙ୍କ ମଧ୍ୟରେ ଯୁଦ୍ଧହେଲା । ତୁଗାନ ଖାଁ ଦୁଇଥର ଯୁଦ୍ଧରେ ଜୟଲାଭ କରି ତୃତୀୟଥର ବୈଜଳ ଦେଓଙ୍କ ଦ୍ୱାରା ପରାଜିତ ହେଲା । ଏଥିରେ ଓଡ଼ିଶା ରାଜା ସନ୍ତୁଷ୍ଟ ହୋଇ ବୈଜଳ ଦେଓଙ୍କୁ ଅନେକ ଧନ ରତ୍ନ ଉପହାର ଦେଇ ବିଦାୟ କଲେ ।

ଗନ୍ଧମାଦନ ପର୍ବତରେ ଗୋ ୩୨ ଟି ଝରଣା ଅଛି । ତହିଁ ମଧ୍ୟରୁ ଗୋଟିଏ ଝରଣା ନିକଟରେ ଗୋଟିଏ ରକମର କନ୍ଦମୂଳ ମିଳୁଥିଲା । ଏହାକୁ ଠିଠାକନ୍ଦା କହନ୍ତି । ତେଣୁ

ଏହି ଫଳଟିକୁ କନ୍ଦାଗାଡ଼ ଫଳବୋଲି କହୁଥିଲେ । ସେହି କନ୍ଦାକୁ ଖାଦ୍ୟ ରୂପରେ ନିକଟବର୍ତ୍ତୀ କନ୍ଧ ଓ ଅନ୍ୟାନ୍ୟ ଜାତିର ଲୋକମାନେ ବ୍ୟବହାର କରୁଥିଲେ । ଦିନେ ସମୁନା ନାମରେ ଜଣେ କନ୍ଧୁଣୀ କନ୍ଦା ଖୋଳୁଥିବା ସମୟରେ ମାଟି ଭିତରୁ ଲୋହସର ଧାର ବାହାରିଲା । ତାହା ଦେଖି ସେ ଭୟ ତାହାର ସ୍ୱାମୀକୁ ଡ଼ାକିଆଣି ସେହା ଦେଖାଇଲା । କନ୍ଧ ଖଣତିରେ ମାଟି ଖୋଳି ମାଟି ଭିତରୁ ଗୋଟିଏ ପଞ୍ଚମୂର୍ତ୍ତି ପାଇଲା । ସ୍ତ୍ରୀ ପୁରୁଷ ଦୁହେଁ ମୂର୍ତ୍ତିକୁ ଘରକୁ ନେଲେ । ରାତ୍ରିରେ ମୂର୍ତ୍ତି କନ୍ଧକୁ ସ୍ୱପ୍ନରେ କହିଲେ ଅମ୍ଭେ ନରସିଂହ ନାଥ ଅଟୁଁ; ଅମ୍ଭଙ୍କୁ ସେବାକର ତୋର ମଙ୍ଗଳ ହେବ । କନ୍ଧ ଭଗବାନଙ୍କୁ ସେବାକର ବିଷୟଟି ମହାରାଜାଙ୍କୁ ଜଣାଇଲା । ମହାରାଜା ବୈଜଳ ଦେଓ ସେଠାରେ ଗୋଟିଏ ମନ୍ଦିର ନିର୍ମାଣ କରାଇ ନରସିଂହ ମୂର୍ତ୍ତିଙ୍କୁ ସ୍ଥାପନକରି ପୂଜାପାଇଁ ବନ୍ଦୋବସ୍ତ କରିଦେଲେ ।

ମହାରାଜା ବୈଜଳ ଦେଓଙ୍କ ରାଣୀ ଦୁର୍ଲ୍ଲଭା ଦେବୀ ମଧ୍ୟ ସ୍ୱପ୍ନରେ ଦେଖିଲେ ଯେ ପର୍ବତର ଅନ୍ୟ ପାର୍ଶ୍ୱରେ ହର ଶଙ୍କରଙ୍କ ଯୁଗ୍ମମୂର୍ତ୍ତି ଅଛନ୍ତି । ତେଣୁକରି ରାଣୀ ପର୍ବତର ଅନ୍ୟ ପାଖରେ ଗୋଟିଏ ମନ୍ଦିର ତିଆରି କରାଇ ହର ଶଙ୍କର ମୂର୍ତ୍ତିଙ୍କୁ ନେଇ ସ୍ଥାପନ କରି ପୂଜାପାଇଁ ବନ୍ଦୋବସ୍ତ କରାଇ ଦେଲେ । ନରସିଂହ ନାଥଙ୍କର ସେବା ପୂଜାପାଇଁ ମହାରାଜ ଲୁହସିଂହା ଗ୍ରାମ ମାଫି ଦେଲେ । ମହାରାଜା ଓ ମହାରାଣୀ ସମୟ ୨ ରେ ଏ ସ୍ଥାନକୁ ଦେଖି ଆସିବା କରୁଥିଲେ । ରାସ୍ତାରେ ପାଣି ନ ଥିବାରୁ ବୈଜଳ ସାଗର ନାମରେ ଗୋଟିଏ ପ୍ରକାଣ୍ଡ କଟା ରାସ୍ତା ମଧ୍ୟରେ ଖୋଳାଇଲେ । ଓ ତହିଁ ପାଖରେ ବୈଜଳ ସାଗର ନାମରେ ଗୋଟିଏ ଗ୍ରାମ ମଧ୍ୟ ବସାଇଲେ ।

ସେ ୨୫ ବର୍ଷ ରାଜତ୍ୱ କରି ୧୩୧୧ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ଭୋଜରାଜ ଦେଓ

### ୧୩୧୧—୧୩୪୫ ଖ୍ରୀ: ଅ:

ବୈଜଳ ଦେଓଙ୍କ ପରେ ମହାରାଜ ଭୋଜରାଜ ଦେଓ ପାଟଣା ସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ କୋମଳ ପ୍ରକୃତିର ରାଜା ଥିବାରୁ ଏହାଙ୍କ ସମୟରେ ପାଟଣାର ଅନେକ ସାମନ୍ତରାଜା ପାଟଣା ରାଜ୍ୟରୁ ବିଚ୍ଛିନ୍ନ ହୋଇ ଓଡ଼ିଶା ରାଜାଙ୍କ ସହିତ ମିଶିଗଲେ । ପାଟଣା ରାଜା ତାଙ୍କୁ ଅନେକ ମନା-କଲେ କିନ୍ତୁ ସେମାନେ ମାନିଲେ ନାହିଁ । ଏହିପରି ସେ ୩୦ ବର୍ଷ ରାଜତ୍ୱ କରି ୧୩୪୫ ଖ୍ରୀ: ଅ:ରେ ପରଲୋକ ଗମନ-କଲେ । ସେ ମଧ୍ୟ ଓଡ଼ିଶା ରାଜାଙ୍କ ସାମନ୍ତରାଜା ଥିବାରୁ ସେ ତାଙ୍କଠାରେ କର ଦାଖଲ କରୁଥିଲେ ।

---

## ବୀର ମଲ୍ଲଦେଓ

### ୧୩୪୬—୧୩୬୬ ଖ୍ରୀ:ଅ:

ମହାରାଜା ଭୋଜରାଜ ଦେଓଙ୍କ ପରେ ତାଙ୍କ ପୁତ୍ର ବୀର ମଲ୍ଲଦେଓ ମହାରାଜ ପଦରେ ଅଭିଷିକ୍ତ ହେଲେ । ଏ ଜଣେ ଅତି ଉଗ୍ରପ୍ରକୃତିର ରାଜାଥିଲେ । ତାହାଙ୍କର ଚେହେରା ଅତି ଭୟଙ୍କର ଥିଲା । ଅତଏବ କେହି ତାଙ୍କୁ ସାକ୍ଷାତକାର କରିଷ୍ଟ କହିପାରୁ ନଥିଲେ । ଅବଶେଷ ସାମନ୍ତ ରାଜାମାନେ ମଧ୍ୟ ତାଙ୍କଠାରୁ ବିଚ୍ଛିନ୍ନହୋଇ ଓଡ଼ିଶାରାଜାଙ୍କ ସହ ମିଶିବାକୁ ସାହାସ କରିପାରିଲେ ନାହିଁ । ସେ ବିଧିମତେ କର ଅସୁଲ କରି ଓଡ଼ିଶା ରାଜାଙ୍କ ଠାରେ ସମର୍ପଣ କରୁଥିଲେ । ଓ

ତାହାଙ୍କର ଆଦେଶ ପାଳନକରୁଥିଲେ । ସେ ପାଠଣାରାଜ୍ୟର ସୈନ୍ୟବିଭାଗକୁ ବିଶେଷ ଉନ୍ନତ କରିଥିଲେ । ଶତ୍ରୁଅନ୍ତର ଗ୍ରାମଗଡ଼କୁ ଗୋଟିଏ ସହରରୂପରେ ପରିଣତ କରିଥିଲେ । ଏହାଙ୍କ ରାଜତ୍ୱରେ ପ୍ରଜାମାନେ ଆନନ୍ଦରେ ଦିନ କଟାଇ-ଥିଲେ ; ସେ ୧୩୭୫ ଖ୍ରୀ:ଅ:ରେ ପରଲୋକ ଗମନକଲେ ।



## ପ୍ରଥମ ପ୍ରତାପରୁଦ୍ର ଦେଓ ।

### ୧୩୭୫—୧୪୧୪ ଖ୍ରୀ:ଅ

ମହାରାଜା ବୀରମଲ୍ଲ ଦେଓଙ୍କ ପରେ ତାଙ୍କ ପୁତ୍ର ପ୍ରଥମ ପ୍ରତାପରୁଦ୍ର ସିଂହାସନ ଲାଭକଲେ । ଏହି ମହାରାଜ ମଧ୍ୟ ପିତାଙ୍କପରି ଅତି ଉଗ୍ରପ୍ରକୃତିର ଲୋକଥିଲେ । ଏହାଙ୍କ ରାଜତ୍ୱ ସମୟରେ କୌଣସି ଦୁଷ୍ଟଲୋକ କୌଣସି ଅନ୍ୟାୟ ଅନୁଷ୍ଠାନ କରିବାକୁ ସାହାସ କରିପାରି ନ ଥିଲେ । ଏହାଙ୍କର ଦଣ୍ଡବିଧାନ ଶକ୍ତଥିଲା । ସେ ସମୟ ୨ ରେ ନିଜ ରାଜ୍ୟମଧ୍ୟରେ ଟୁର୍ (Tour) କରି ପ୍ରତ୍ୟେକ ବିଷୟ ଦେଖୁଥିଲେ । ସେ ମଧ୍ୟ ଓଡ଼ିଶାରାଜାଙ୍କୁ କରଦେଇ ତାହାଙ୍କର ପ୍ରତ୍ୟେକ ଆଦେଶ ମାନି ଚଳୁଥିଲେ । ସେ ୧୪୧୪ ଖ୍ରୀ:ଅ:ରେ ପରଲୋକ ଗମନକଲେ ।



## ଭୂପାଳ ଦେଓ ।

### ୧୪୧୪—୧୪୬୫ ଖ୍ରୀ:ଅ:

ପ୍ରଥମ ପ୍ରତାପ ରୁଦ୍ରଦେଓଙ୍କ ପରେ ତାଙ୍କ ପୁତ୍ର ଭୂପାଳଦେଓ ପାଠଣା ସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ ବଡ଼ ଦୟାଳୁମହାରାଜା ଥିଲେ । ଦେଶର କୃଷି, ବାଣିଜ୍ୟ, ଶିଳ୍ପ ଉନ୍ନତି କରିବା ନିମନ୍ତେ ପ୍ରଜାମାନଙ୍କୁ ଉତ୍ସାହିତ କରି ସେମାନଙ୍କୁ

ଅର୍ଥିକ ସାହାଯ୍ୟ କରୁଥିଲେ । ସେ ଗନ୍ଧମାଦନ ପର୍ବତସ୍ଥ ଭୋଜପୁର ଗଡ଼ର ବିଶେଷ ଉନ୍ନତି କରିଥିଲେ । ସେଠାରେ ସେ ଗୋଟିଏ ନୂତନ ବସ୍ତି ବସାଇଥିଲେ । ସେହି ବସ୍ତିରେ ପ୍ରାୟ ୨୦୦ ଘର ବାସ କରୁଥିଲେ । ସେମାନଙ୍କ କୃଷିକାର୍ଯ୍ୟ ନିମନ୍ତେ ନିଷ୍କର୍ଷା ଭୂମି ଦାନ ଦେଇଥିଲେ । ପ୍ରଚଳିତ ପ୍ରଥା ଅନୁସାରେ ଓଡ଼ିଶାରାଜାଙ୍କୁ କର ଦେଉଥିଲେ । ସେ ୧୪୨୫ ଖ୍ରୀ:ଅ:ରେ ପରଲୋକ ଗମନକଲେ ।



## ନାଗସିଂହ ଦେଓ ।

### ୧୪୨୫—୧୪୪୫ ଖ୍ରୀ:ଅ:

ଭୂପାଳଦେଓଙ୍କ ପରେ ନାଗସିଂହଦେଓ ପାଟଣାର ମହାରାଜା ହେଲେ । ସେ ଜଣେ ସରଳପ୍ରକୃତିର ମହାରାଜାଥିଲେ । ସେ ଶାନ୍ତିରେ ପାଟଣାରାଜ୍ୟ ଶାସନ କରିଥିଲେ । ସେ ମଧ୍ୟ ନିୟମାନୁସାରେ ଓଡ଼ିଶାରାଜାଙ୍କୁ କର ଦେଉଥିଲେ । ସେ ତାଙ୍କର ଅଦେଶ ପାଳନ କରୁଥିଲେ । ସେ ୧୪୪୫ ଖ୍ରୀ: ଅ: ରେ ପରଲୋକ ଗମନକଲେ ।



## ବିକ୍ରମାଦିତ୍ୟ ଦେଓ ।

### ୧୪୪୫—୧୪୮୯ ଖ୍ରୀ:ଅ:

ନାଗସିଂହ ଦେଓଙ୍କ ପରେ ତାଙ୍କ ପୁତ୍ର ବିକ୍ରମାଦିତ୍ୟଦେଓ ପାଟଣା ରାଜ୍ୟର ମହାରାଜାହେଲେ । ସେ ଜଣେ ସୁଦକ୍ଷ ଶାସକ ଥିଲେ । ସେ ଅଶ୍ୱ ଅରୋହଣରେ ସୁଖ୍ୟାତି ଲାଭ କରିଥିଲେ । ସେ ରାଜସଭାରେ ପଣ୍ଡିତମାନଙ୍କୁ ନିଯୁକ୍ତକରି ସେମାନଙ୍କ ଠାରୁ ବିଦ୍ୟାଶିକ୍ଷା କରୁଥିଲେ । ଧର୍ମଶାସ୍ତ୍ରରେ ତାଙ୍କର ଉତ୍ତମ ଜ୍ଞାନଥିଲା । ଶିଳ୍ପ ବାଣିଜ୍ୟ କୃଷିବିଦ୍ୟାର ଉନ୍ନତି ନିମନ୍ତେ

ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । ଦେଶର ପିଲମାନଙ୍କ ଶିକ୍ଷା ନିମନ୍ତେ ସ୍ଥାନେ ୨ ଗୃହଶାଳ ବସାଇଥିଲେ । ସେ ପ୍ରଜାକୁଳର ହିତପାଇଁ ପାଟଣା ଗଡ଼ରେ ଗୋଟିଏ ବନ୍ଧ ଖୋଳାଇଥିଲେ ଓ କେତେଟା ବନ୍ଧର ପଙ୍କୋଦ୍ଧାର କରାଇ-ଥିଲେ । ସେ ପାଟଣାଗଡ଼ର ଲୋକମାନଙ୍କୁ ଛିହବାଡ ଦେଇ ପାଟଣାଗଡ଼ର ଶ୍ରୀ ବୃଦ୍ଧି କରିଥିଲେ । ଦୀନ ଦୁଃଖୀମାନଙ୍କୁ ଅନ୍ନ ବସ୍ତ୍ର ଦାନ କରିଥିଲେ । ସେ ୧୮୯୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ଦ୍ୱିତୀୟ ବୈଜଳ ଦେଓ

### ୧୪୮୯—୧୫୧୯ ଖ୍ରୀ: ଅ:

ବିକ୍ରମାଦିତ୍ୟ ଦେଓଙ୍କ ପରେ ତାଙ୍କ ପୁତ୍ର ୨ୟ ବୈଜଳ ଦେଓ ପାଟଣା ମହାରାଜା ହେଲେ । ସେ ସଂସ୍କୃତ ବିଦ୍ୟାରେ ଅତି ପାଣ୍ଡିତ୍ୟ ଲାଭ କରିଥିଲେ । ସଂସ୍କୃତ ଭାଷାର କାବ୍ୟ ନାଟକ ଧର୍ମଶାସ୍ତ୍ର ପ୍ରତି ଅଂଶରେ ଜ୍ଞାନ ଲାଭ କରିଥିଲେ । ସେ ସଂସ୍କୃତରେ 'ପ୍ରବୋଧ ଚନ୍ଦ୍ରିକା' ନାମରେ ଖଣ୍ଡେ ବ୍ୟାକରଣ ରଚନା କରିଥିଲେ। ତାହା ଅଦ୍ୟାବଧି ଓଡ଼ିଶାରେ କେତେଗୁଡ଼ିଏ ସଂସ୍କୃତ ଟୋଲରେ ପାଠ୍ୟପୁସ୍ତକ ରୂପରେ ବ୍ୟବହୃତ ହେଉଅଛି । ପାଟଣା ଛାତ୍ରମାନଙ୍କୁ ସଂସ୍କୃତ ଶିକ୍ଷା ଦେବା ଉଦ୍ଦେଶ୍ୟରେ ସ୍ଥାନେ ୨ ସଂସ୍କୃତ ଟୋଲମାନ ବସାଇ ଥିଲେ । ଯୁଦ୍ଧ ବିଦ୍ୟା ଶିକ୍ଷା କରିବାକୁ ସ୍ଥାନେ ୨ ଯୁଦ୍ଧ ବିଦ୍ୟାଳୟ ବା ଅଖଡ଼ା ସ୍ଥାପନ କରିଥିଲେ । ପାଟଣାବାସିଙ୍କୁ କୁସ୍ତି ଖଣ୍ଡା ଗୁଳନା ବନ୍ଧୁକ ମାରିବା ଇତ୍ୟାଦିମାନ ଖୁବ୍ ଯତ୍ନରେ ସେହି ଅଖଡ଼ାମାନଙ୍କରେ ଶିକ୍ଷା ଦିଆ ଯାଉଥିଲା । ସେ କୃଷି, ଶିଳ୍ପ ବାଣିଜ୍ୟର ଉନ୍ନତି ନିମନ୍ତେ ଅନେକ ସାହାଯ୍ୟ କରୁଥିଲେ । ସେ ରାଜ୍ୟ

ମଧ୍ୟରୁ କର ଅଧୁଲ କର ଓଡ଼ିଶା ରାଜାଙ୍କୁ ଦେଇ ତାଙ୍କର ଆଦେଶ ମାନି ଚଳୁଥିଲେ । ସେ ୧୫୧୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ରାଜା ହୀରାଧର ଦେଓ ।

### ୧୭୨୫ — ୧୫୪୯ ଖ୍ରୀ: ଅ:

ମହାରାଜା ବୈଜଳ ଦେଓଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ରାଜା ହୀରାଧର ଦେଓ ପାଟଣା ରାଜସିଂହାସନରେ ଅଭିଷିକ୍ତ ହେଲେ । ଏ ଜଣେ ଜନହିତୈଷୀ ମହାରାଜା ଥିଲେ । କୃଷି ବାଣିଜ୍ୟ ଶିଳ୍ପ, ଶିକ୍ଷା ନିମନ୍ତେ ବହୁତ ଯତ୍ନ କରିଥିଲେ । ଓଡ଼ିଆଭାଷା ର ଉନ୍ନତି ପାଇଁ ଚାଟଶାଳୀର ସଂଖ୍ୟା ବୃଦ୍ଧି କରିଥିଲେ । ରାଜ୍ୟ ମଧ୍ୟରେ ଆୟୁର୍ବେଦ ସ୍କୁଲ ସ୍ଥାପନ କରି ଲୋକଙ୍କୁ ବୈଦ୍ୟ ବିଦ୍ୟା ଶିକ୍ଷା ଦେଉଥିଲେ । ପାଶ କରୁଥିବା ଲୋକମାନଙ୍କୁ ବେତନ ଦେଇ ବୈଦ୍ୟ କାର୍ଯ୍ୟରେ ନିଯୁକ୍ତ କରିଥିଲେ । ଗରିବ ପ୍ରଜାମାନେ ସେମାନଙ୍କଠାରୁ ସାହାଯ୍ୟ ପାଇ ବିଶେଷ ଉପକୃତ ହେଉଥିଲେ । ସେ ସର୍ବସାଧାରଣଙ୍କ ଉପକାର ପାଇଁ ଜଙ୍ଗଲ କଟାଇ ରାଜ୍ୟ ମଧ୍ୟରେ ସଡ଼କ ତିଆରି କରାଇ ଥିଲେ । ଜମି ସମତଳ କରାଇ କୃଷିର ଉପଯୋଗୀ କରିଥିଲେ ।

ଏହାଙ୍କ ରାଜତ୍ୱ ସମୟରେ ଓଡ଼ିଶାରେ ପ୍ରତାପ ଦେବ ରାଜା ହୋଇଥିଲେ । ଓଡ଼ିଶା ରାଜ୍ୟର ସୀମା କୃଷ୍ଣା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହାଙ୍କ ସମୟରେ ଦାକ୍ଷିଣାତ୍ୟର ବିଜୟ ନଗରର ରାଜା କୃଷ୍ଣ ରାଓ ଅନେକ ସୈନ୍ୟ ସାମନ୍ତ ସହ ଓଡ଼ିଶା ଆକ୍ରମଣ କଲେ । ଉଭୟଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଯୁଦ୍ଧରେ ଓଡ଼ିଶା ରାଜାଙ୍କୁ ମୁସଲମାନମାନେ ସାହାଯ୍ୟ କଲେହେଁ ଓଡ଼ିଶା ରାଜା ପରାସ୍ତ ହୋଇ ନିଜ

ଦୁହିତାଙ୍କୁ କୃଷ୍ଣ ରାଓଙ୍କ ସହ ବିବାହ କରାଇ ଦେଲେ । ଓ ଅସ୍ତ୍ରର; ବୈଦ୍ର; ବାମଣ୍ଡା; କଣାଇ; ଗାଙ୍ଗପୁର; ଫୁଲଝର; ଗୁଣ୍ଡାସମ୍ବର; ଝେନ୍ଦ୍ରା ନୂଆଗଡ ଅଦ ରାଜ୍ୟମାନ ବିଜୟ କରାଇ ରାଜାଙ୍କୁ ଦେଇ ସନ୍ଧିକଲେ ।

ବଙ୍ଗ ଦେଶରୁ ହୁସେନ ସା ନାମରେ ଜଣେ ସେନାପତି ସସୈନ୍ୟ ଓଡିଶା ଦୁର୍ଗ ଅବରୋଧ କଲେ । ଅନନ୍ତ ସିଂହ ନାମକ ଜଣେ ଓଡିଶା ରାଜାଙ୍କ ସେନାପତି ଦୁର୍ଗ ରକ୍ଷା କାର୍ଯ୍ୟର ଭାର ପାଇଥିଲେ । ସେ ଓଡିଆ ସୈନ୍ୟ ସଜ୍ଜିତ କରି ହୁସେନ ସା ସଙ୍ଗରେ ବହୁତ ଲଢାଇ କଲେ । କିନ୍ତୁ ପରାଜିତ ହେବାରୁ ଅନନ୍ତ ସିଂହ ସାରଂଗଡକୁ ପଳାଇ ଯାଇ ସେଠାରେ ଆଶ୍ରୟ ନେଲେ । ପ୍ରତାପ ଦେଓ ଏହି ସମ୍ବାଦ ପାଇ ଦାକ୍ଷିଣାତ୍ୟରୁ ଫେରି ଆସି ପାଟଣା ମହାରାଜା ବଜ୍ରହିରାଧର ଦେଓ ଓ ବୌଦ ରାଜା ରାମଚନ୍ଦ୍ର ଦେଓଙ୍କୁ ସୈନ୍ୟ ସହିତ ଆସି ହୁସେନ ସଙ୍ଗେ ଲଢ଼ିବା କରିବାକୁ ଆଦେଶ ପଠାଇଲେ । ମହାରାଜା ବଜ୍ରହିରାଧର ଦେଓଙ୍କ ଦୁଇଟି ପୁତ୍ର ଥିଲେ । ପ୍ରଥମ-ନରସିଂହ ଦେଓ ୨ୟ-ବଳରାମ ଦେଓ ତେଣୁ ସେ ଜ୍ୟେଷ୍ଠ ପୁତ୍ର ନରସିଂହ ଦେଓଙ୍କୁ ପାଟଣା ରାଜ୍ୟର ଶାସନ ଭାର ଅର୍ପଣ କରି ୨ୟ ପୁତ୍ର ବଳରାମଙ୍କୁ ସଙ୍ଗରେ ନେଇ ସୈନ୍ୟ ସହ ଯୁଦ୍ଧ କ୍ଷେତ୍ରକୁ ଗମନ କଲେ । ବୌଦ ଓ ପାଟଣା ରାଜ୍ୟର ରାଜାମାନେ ଏକତ୍ରରେ ହୁସେନ ସା ସଙ୍ଗରେ ଲଢାଇ କରି ତାକୁ ଜୟ କଲେ । ଏହା ଦେଖି ଓଡିଶା ରାଜା ତାଙ୍କ ପ୍ରତି ଅତି ସନ୍ତୁଷ୍ଟ ହୋଇ ଉଭୟ ରାଜାଙ୍କୁ ଅନେକ ସୁନା ରୁପାର ଅଳଙ୍କାର ଉପହାର ଦେଇ ବିଦାୟ କଲେ ।

ମହାରାଜା ବଇଜୁଲ୍ୟଧର ଦେଓ ପାଟଣା ସୈନ୍ୟ ବଳରାମ ଦେଓଙ୍କ କମାଣରେ ପାଟଣାକୁ ପଠାଇ ଦେଇ ଅନ୍ୟ ମାନ୍ୟ ସୈନ୍ୟ ନେଇ ଗଙ୍ଗାସ୍ନାନ କରିବାକୁ ଗଲେ । ସେ ବର୍ଷେ ପରେ ନିଜ ରାଜଧାନୀକୁ ଫେରିଲେ । ଓଡ଼ିଶା ରାଜ୍ୟ ପାଟଣା ଆଦି ରାଜ୍ୟମାନଙ୍କୁ ବିଜୟ ନଗରର ରାଜାଙ୍କ ଅଧୀନ କରାଇ ଦେଇ ଥିବାରୁ ପାଟଣା ମହାରାଜା ରାଜ୍ୟକୁ କର ଅଞ୍ଜଳି କରି ବିଜୟ ନଗର ରାଜାଙ୍କ ଠାରେ ଅର୍ପଣ କରୁଥିଲେ । ଓ ତାଙ୍କର ପ୍ରତ୍ୟେକ ଆଦେଶ ପାଳନ କରି ତାଙ୍କର ସାମନ୍ତ ରାଜା ହୋଇ ରହିଲେ । ସେ ୩୦ ବର୍ଷ ରାଜତ୍ୱ କରି ୧୫୪୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

—•—

## ନରସିଂହ ଦେଓ ।

### ୧୫୪୯—୧୫୭୭ ଖ୍ରୀ:ଅ:

ମହାରାଜା ବଇଜୁଲ୍ୟଧର ଦେଓଙ୍କ ପରେ ମହାରାଜା ନରସିଂହ ଦେଓ ପାଟଣା ରାଜ ସିଂହାସନରେ ଅଭିଷିକ୍ତ ହେଲେ । ଆମ୍ଭେ ପୂର୍ବରେ କହି ସାରିଅଛୁଁ ଯେ ବଇଜୁଲ୍ୟଧର ଦେଓଙ୍କ ଦୁଇପୁତ୍ର ଥିଲେ । ଅଗ୍ରଜ ନରସିଂହ ଦେଓ ଓ ଅନୁଜ ବଳରାମଦେଓ । ଉଭୟ ଭାଇ ଯୁଦ୍ଧବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ । ଏମାନେ ଉପଯୁକ୍ତ ପିତାର ଉପଯୁକ୍ତ ସନ୍ତାନ । ଚୌହାନବଂଶର ଗୌରବ ରବି ।

ଏହାଙ୍କ ରାଜତ୍ୱ ସମୟରେ କୃଷ୍ଣରାଓ ମୃତ ହେବାରୁ ତାଙ୍କ ପୁତ୍ର ଅଚ୍ୟୁତରାଓ ବିଜୟ ନଗରର ରାଜାହେଲେ । ଏହି ରାଜା ପିତାଙ୍କ ପରି କ୍ଷମତାଶାଳୀ ନ ଥିବାରୁ ପାଟଣା ମହାରାଜା ନରସିଂହଦେଓ ଭାଇ ବଳରାମ ଦେଓଙ୍କ ସାହାଯ୍ୟରେ

ପାଟଣାରାଜ୍ୟର ସ୍ୱାଧୀନତା ଘୋଷଣା କରି ବସ୍ତର ରାଜାଙ୍କ ସହ ଯୁଦ୍ଧକଲେ । ବଜ୍ରଧ୍ୱ ନଗରର ରାଜା ବସ୍ତର ରାଜାଙ୍କୁ ସହାଯ୍ୟ କରିଲେ ଯୁଦ୍ଧରେ ସେ ପରାଜିତ ହୋଇ ପାଟଣା ମହାରାଜାଙ୍କ ସାମନ୍ତରାଜା ହୋଇ ରହିଲେ । ପ୍ରତିବର୍ଷ ପାଟଣା ମହାରାଜାଙ୍କୁ କର ଦେଇ ତାହାଙ୍କର ଆବଶ୍ୟକ ସମୟରେ ସୈନ୍ୟ ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହେଲେ । ଏହପରେ ପାଟଣା ରାଜ୍ୟର ଚନ୍ଦ୍ର ଚିହ୍ନିତ ଜୟ ପତାକା ଗୌରବ ମଣ୍ଡିତ ହୋଇ ପାଟଣା ଗଗନରେ ଖେଳି ଉଠିଲା ।

ଏକଦା ମହାରାଣୀ ଗର୍ଭବତୀ ଥିବାରୁ ଦିନେ ରାତିରେ ପ୍ରସବ ବେଦନା ଅନୁଭବ କଲେ । ଧାତ୍ରୀ ବରପଦର ନାମକ ଗ୍ରାମରେ ବାସ କରୁ ଥିଲା । ସେତେବେଳେ ଶ୍ରାବଣ ମାସ ହୋଇ ଥିବାରୁ ଭୟଙ୍କର ବୃଷ୍ଟି ହେତୁ ପାଟଣା ଗଡ଼ ଓ ବର ପଦର ମଧ୍ୟ ସ୍ଥିତ ମାୟାବତୀ ନାମ୍ନୀ ତଟିନୀ ବଢି ଥିଲା । ଧାତ୍ରୀ ଅଭାବରେ ମହାରାଜ ଅନେକ ଅସୁବିଧା ଅନୁଭବ କଲେ । "ଏପରି ଅନ୍ଧକାର ରାତ୍ରିରେ ମାୟାବତୀ ନଦୀ ପାର ହୋଇ କିଏ ବା ବରପଦର ଗ୍ରାମକୁ ଯିବାକୁ ସାହାସ କରିବ" ଏହିପରି ଭାବନାରେ ଥିଲେ । ବଳରାମ ଦେଓ ସମସ୍ତ ଲୋକ ପଛକୁ ପକାଇ ଭାହାଙ୍କୁ କିଛି ନ କହି ସେହି ପ୍ରଳୟଙ୍କରୀ ରଜନୀରେ ଏକା ତାହାଙ୍କର ମାୟାବତୀ ନଦୀ ଅତିକ୍ରମ କରି ବର ପଦର ଗ୍ରାମକୁ ଗଲେ ଓ ଧାତ୍ରୀକୁ ଡାକିଆଣି ନଦୀ ନିକଟରେ ପିଠିରେ ବସାଇ ନଦୀ ପାର ହେଲେ । ଅନନ୍ତର ଧାତ୍ରୀକୁ ମହାରାଣୀଙ୍କ ପ୍ରସୂତ କାର୍ଯ୍ୟରେ ସାହାଯ୍ୟ କରିବାକୁ ନିଯୁକ୍ତ କଲେ । ଧାତ୍ରୀର ସାହାଯ୍ୟରେ ମହାରାଣୀ ଗୋଟିଏ କୁମାର ଜନ୍ମ କଲେ ।

ଅନ୍ୟ ଦିନ ପ୍ରଭାତରୁ ମହାରାଜ ଏ ସବୁ ବିଷୟ ଶୁଣି ବଳରାମ ଦେଓ ପ୍ରତି ସନ୍ତୁଷ୍ଟ ହୋଇ ତାଙ୍କୁ ଆଲିଙ୍ଗନ କରି ପଚାରିଲେ ଭାଇ ତୁମ୍ଭେ କିଅଣ ଚାହଁ ? ବଳରାମ କହିଲେ ଦେଲେ ମତେ ପାଟଣା ରାଜ୍ୟର ପୂର୍ବ ଉତ୍ତର ଅଂଶ ଦିଅନ୍ତୁ । ଓ ତହିଁର ନିକଟବର୍ତ୍ତୀ ଜଙ୍ଗଲ ମୋର ଶିକାର ନିମନ୍ତେ ଦିଅନ୍ତୁ । ମହାରାଜା ଆନନ୍ଦରେ ତାହା ଅର୍ପଣ କଲେ ।

ବଳରାମ ଦେଓ ସେହି ଅଂଶରେ ବଳରାମ ଗଡ ନାମରେ ଗୋଟିଏ ଗଡ ସ୍ଥାପନ କଲେ । ପରେ ତାହା ବଲାଙ୍ଗିର ନାମରେ ଅପଭ୍ରଂଶ ହେଲା । ଏଥି ପରେ ସେ ବଡ଼ ଗଡ ନାମରେ ଆଉ ଗୋଟିଏ ଗଡ଼ ସ୍ଥାପନ କଲେ । ତାହା ପରେ ବଡଗଡ ହୋଇ ଅଛି । ସେ ମହାନଦୀ କୂଳରେ ଭ୍ରମ କରୁ ୨ ଗୋଟିଏ ଗ୍ରାମରେ ଗୁଞ୍ଜନ ପାଇଲେ ବୋଲି ତାକୁ ଗୁଞ୍ଜନ ପୁର ନାମ ଦେଲେ । ପରେ ଏହା ଗୁଞ୍ଜିଁର ପୁର ହୋଇଅଛି । ସେ ଏହି ଗ୍ରାମ ଜଣେ ବ୍ରାହ୍ମଣକୁ ଦାନ କରି ଥିଲେ । ସେହି ବ୍ରାହ୍ମଣର ବଂଶଧରମାନେ ଏ ପର୍ଯ୍ୟନ୍ତ ତାହା ଭୋଗ କରୁ ଅଛନ୍ତି ।

ଦିନେ ମହାନଦୀର ଉତ୍ତର କୂଳରେ ଶିକାର କଲା ସମୟରେ ଗୋଟିଏ ଶଶା ଦେଖିଲେ । ତାହା ପ୍ରତି ତାଙ୍କର କୁକ୍କୁର ମାନଙ୍କୁ ଲଗାଇ ଦେଲେ । ଶଶାଟି କୁକ୍କୁର ମାନଙ୍କୁ ଭୟ ନ କରି ସେମାନଙ୍କ ସହ ଲଢ଼ାଇ କରିବାକୁ ଲାଗିଲା । ଏହା ଦେଖି ବଳରାମ ଦେଓ ଆଶ୍ଚର୍ଯ୍ୟ ହୋଇ ସେହି ସ୍ଥାନଟି ଖଣ୍ଡେ ବୀର-ଭୂମି ବୋଲି ସ୍ଥିର କରି ନିଜ ବସାକୁ ଫେରି ଆସିଲେ । ବସାରେ ଶୟନ କରି ଅଛନ୍ତି ଏମନ୍ତ ସମୟରେ ସ୍ୱପ୍ନରେ ଗୋଟିଏ ଦେବୀ ତାଙ୍କୁ କହିଲେ ମୁଁ ଗୋଟିଏ ଦେବୀ ଅଟେଁ । ଶମ୍ଳି ଗଛ ମୂଳରେ ମୁଁ ଅଛି । ମତେ

ନେଇ ମନ୍ଦିର ମଧ୍ୟରେ ସ୍ଥାପନା କରି ପୂଜା କର । ତୋର ମଙ୍ଗଳ ହେବ । "ଏହା ଶୁଣି ବଳରାମ ଦେଓ ଦେବୀଙ୍କ ନାମରେ ଗୋଟିଏ ମନ୍ଦିର ନିର୍ମାଣ କରାଇ ତହିଁରେ ସ୍ଥାପନ କଲେ । ଏହି ଭୂମି ଖଣ୍ଡିକ ସୁରଗୁଜା ରାଜାଙ୍କ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ତେଣୁ ସେ ସୁରଗୁଜା ରାଜାଙ୍କ ଠାରୁ ଜମି ଖଣ୍ଡିକ ଛଡ଼ାଇ ତହିଁରେ ଗୋଟିଏ ଗ୍ରାମ ବସାଇଲେ । ତେଣୁ ଦେବୀଙ୍କୁ ଶାଲ୍ମଳୀ ଦେବୀ ଓ ଗ୍ରାମର ନାମ ଶାଲ୍ମଳୀ ପୁର ହେଲା । କାଳ କ୍ରମେ ତାହା ସମଲାଇ ଦେବୀ ଓ ସମ୍ବଲପୁର ନାମରେ ଅପଭ୍ରଂଶ ହୋଇଅଛି ।

ଅନନ୍ତର ବଳରାମ ଦେଓ ଭାଇଙ୍କ ଠାରୁ ଭାଗପାଇ ଥିବା ସୀମା ତେଲ ନଦୀ ପର୍ଯ୍ୟନ୍ତ ବୃଦ୍ଧି କରିବାକୁ ଇଚ୍ଛା କରିବାରୁ ନରସିଂହ ଦେଓ ତାହାଙ୍କର ସେହି ଇଚ୍ଛାରେ ବାଧା ଦେଲେ । ଏଣୁ ଉଭୟଙ୍କ ମଧ୍ୟରେ କଳହ ହେଲା । ରାଜ ମାତା ଉଭୟ ପୁତ୍ରଙ୍କୁ ନେଇ ସୁରଙ୍ଗୀ ନଦୀକୁ ଗଲେ । ରାଜମାତା ନଦୀ ମଧ୍ୟରେ ପୂର୍ବକୁ ମୁହଁ କରି ବସି ବଡ଼ ପୁଅକୁ ଦକ୍ଷିଣ ଅଂଶରେ ଓ ସାନ ପୁଅକୁ ବାମ ଅଂଶରେ ବସାଇ କହିଲେ "ଏହି ସୁରଙ୍ଗୀ ନଦୀ ମୋର ଅଙ୍ଗ ଅଟେ ଏହି ଅଙ୍ଗର ଦକ୍ଷିଣ ଅଂଶ ବଡ଼ ଓ ବାମ ଅଂଶ ସାନ ପୁଅର ହେଲା । ତୁମ୍ଭେମାନେ ଏହା ଅତିକ୍ରମ କଲେ ମାତୃ ଆଦେଶର ଅପମାନନା କରିବାର ଜାଣିବି" । ଉଭୟେ ଆନନ୍ଦରେ ଉଭୟ ଅଂଶ ଗ୍ରହଣ କରି ରହିଲେ । ସେ ଦିନ ଠାରୁ ସୁରଙ୍ଗୀ ନଦୀର ନାମ ଅଙ୍ଗ ନଦୀ ହେଲା । ଓ ଅଙ୍ଗ-ନଦୀ ପାଟଣା ଓ ସମ୍ବଲପୁରର ସୀମା ହେଲା ।

ଏପରି ଭାବରେ ବଳରାମ ଦେଓ ରାଜ୍ୟ ଭାଗ ପାଇ ସମଲାଇ ଦେବୀଙ୍କୁ ତାଙ୍କର ଅଧିଷ୍ଠାତ୍ରୀ ଦେବୀ କରି ପୂଜାକଲେ ।

ଭାଇ ଦୁହେଁ ପୃଥକ ହେଲେ ମଧ୍ୟ ଉଭୟ ରାଜ୍ୟକୁ ଯେପରି ରାଜ୍ୟ ବୋଲି ଓ ଉଭୟ ଘରକୁ ଯେପରି ଘର ବୋଲି ବିଚାର କରୁଥିଲେ । ନେତ୍ରସିଂହ ଦେଓଙ୍କ ରାଜତ୍ୱ ସମ୍ବନ୍ଧରେ ସମ୍ବଲପୁର ଇତିହାସରେ ବର୍ଣ୍ଣିତ ହୋଇଅଛି । ମହାରାଜା ନରସିଂହ ଦେଓ ୧୫୫୭ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ହମ୍ମିର ଦେଓ ।

## ୧୧୬୭—୧୬୭୦ ଖ୍ରୀ: ଅ:

## ଓ ତାଙ୍କ ମହାରାଣୀ ।

## ୧୬୭୧—୧୬୭୯ ଖ୍ରୀ: ଅ:

ମହାରାଜା ନରସିଂହ ଦେଓଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ହମ୍ମିର ଦେଓ ପାଟଣା ରାଜ ସିଂହାସନରେ ଅଭିଷିକ୍ତ ହେଲେ । ଏହାଙ୍କ ସମୟରେ କୌଣସି ବିଶେଷ ଘଟଣା ଘଟି ନଥିଲା । ସେ ଚାରି ବର୍ଷ ମାତ୍ର ରାଜତ୍ୱ କରି ୧୫୬୦ ଖ୍ରୀ: ଅ: ରେ ପରଲୋକ ଗମନ କଲେ । ତାଙ୍କ ମୃତ୍ୟୁ ସମୟରେ ତାହାଙ୍କର ଏକମାତ୍ର ପୁତ୍ର ପ୍ରତାପଦେଓଙ୍କ ୭ମ ବର୍ଷମାତ୍ର ବୟସ ହୋଇଥିଲା । ଏଣୁ ମହାରାଣୀ ମନ୍ତ୍ରୀମାନଙ୍କ ସାହାଯ୍ୟରେ ପାଟଣା ରାଜ୍ୟ ଶାସନ କରିବାକୁ ଲାଗିଲେ । କିନ୍ତୁ ମନ୍ତ୍ରୀମାନେ ରାଜ୍ୟ ମଧ୍ୟରେ ବିଶେଷ ଅତ୍ୟାଚାର କରିବାରୁ ସମ୍ବଲପୁର ରାଜା ବଳରାମ ଦେଓ ସମ୍ବଲପୁରରୁ ଆସି ମନ୍ତ୍ରୀମାନଙ୍କୁ ବିତାଡିତ କରିଦେଲେ । ଏହି ସମୟରେ ମହାରାଣୀ ମଧ୍ୟ ମନ୍ତ୍ରୀମାନଙ୍କ କୁମନ୍ତ୍ରଣାରେ ପଡି ଶିଶୁକୁ ଧରି ନିକଟ-କାପଡ଼ର ନନ୍ଦପୁରକୁ ଚାଲି ଗଲେ ଏ ସମୟରେ ଯୁବରାଜଙ୍କ ବୟସ ଦାଦଶ

ମାତ୍ର ହୋଇ ଥିଲା । ପାଟଣା ରାଜ୍ୟ ଅରାଜକ ହେବାରୁ ବୈଶିଷ୍ଟ ରାଜା ବଳରାମ ଦେଓ ନିଜ ଜ୍ୟେଷ୍ଠ ପୁତ୍ର ହୃଦେ ନାରାୟଣଦେଓଙ୍କୁ ନବାଳକପଣରୁ ମହାରାଜା କରାଇଦେଇ ପାଟଣା ରାଜ୍ୟର ଶାସନ ଭାର ତାଙ୍କ ହସ୍ତରେ ଅର୍ପଣ କରି ଦେଲେ ।



## ହୃଦେ ନାରାୟଣ ଦେଓ
## ୧୬୬୯—୧୬୮୪ ଖ୍ରୀ: ଅ:

ପିତାଙ୍କ ଆଦେଶ ମତେ ହୃଦେ ନାରାୟଣ ଦେଓ ପାଟଣା ରାଜ୍ୟର ମହାରାଜା ହୋଇ ପିତାଙ୍କଠାରୁ ସମସ୍ତ ବିଷୟ ବୁଝି ରାଜ କାର୍ଯ୍ୟ ଚଳାଇଲେ । ପ୍ରତାପ ଦେଓଙ୍କ ନାବାଳକ ଅବସ୍ଥା ଅତିକ୍ରାନ୍ତ ହେଲାରୁ ବଳରାମ ଦେଓ ହୃଦେ ନାରାୟଣ ଦେଓଙ୍କୁ କହିଲେ "ତୁମ୍ଭେ ପାଟଣା ରାଜ୍ୟର ଜମିଦାର ଜମ୍ମର ଅଦଙ୍କୁ ସଙ୍ଗେ ନେଇ ନନ୍ଦପୁର ଯାଇ ପ୍ରତାପ ଦେଓଙ୍କୁ ଆଣି ପାଟଣା ରାଜ୍ୟରେ ରାଜା କରାଇ ଦିଅ ।"

କଳାହାଣ୍ଡିର ଦକ୍ଷିଣରେ ଜୟପୁର ରାଜ୍ୟ ମଧ୍ୟରେ ନନ୍ଦପୁର ରାଜ୍ୟ ଅଛି । ସେ ସମୟରେ ବାଧବା ମହାରାଣୀଙ୍କ ଭାଇ ବଣ୍ଡମୁଣ୍ଡ ଦେଓ ରାଜା ଥିଲେ । ହୃଦେ ନାରାୟଣ ଦେଓ ପାଟଣା ରାଜ୍ୟର ଜମିଦାର ଜମ୍ମ-ଙ୍କୁ ସଙ୍ଗେ ନେଇ ନନ୍ଦପୁରରେ ପହଞ୍ଚି ପାଟଣା ରାଜାର ଯବରାଜଙ୍କୁ ଛାଡ଼ ଦେବାକୁ ରାଜାଙ୍କୁ କହିଲେ । ରାଜା ଏହା ଶୁଣି ଉତ୍ତର ଦେଲେ "ଅଳ୍ପ କେତେଦିନ ପରେ ଛାଡ଼ି ଦେବୁଁ ।" ଏପରି ଶୁଣି ହୃଦେ ନାରାୟଣ ପାଟଣା ରାଜ୍ୟକୁ ଫେରି ଆସିଲେ । ନନ୍ଦପୁର ରାଜାଙ୍କର ଏହା ଇଚ୍ଛା ଥିଲା ଯେ ସେ କନ୍ୟାଙ୍କୁ ବିବାହ କରାଇ ତାଙ୍କ ରାଜ୍ୟକୁ ପଠାଇ ଦେବେ ।

ଏହି ସମୟରେ ବଙ୍ଗର ଗଭର୍ଣ୍ଣର ସୁଲେମାନ ଓଡ଼ିଶା ରାଜାଙ୍କ ସଙ୍ଗେ ଲଢ଼ାଇ କରିବାକୁ ସୈନ୍ୟ ଘେନି ଆସିଲେ । ଏଣୁ ଓଡ଼ିଶା ରାଜା ରାମଚନ୍ଦ୍ର ଦେଓ ତାହାଙ୍କର ସାମନ୍ତ ରାଜାମାନଙ୍କ ନିକଟକୁ ଖବର ଦେଲେ ଯେ ସେମାନେ ନିଜ୨ ସୈନ୍ୟ ସହ ଆସି ସୁଲେମାନ ସଙ୍ଗେ ଯୁଦ୍ଧ କରନ୍ତୁ । ଏହାଶୁଣି ନନ୍ଦପୁର ରାଜା ପ୍ରତାପ ଦେଓଙ୍କ ଜମାରେ ଅନେକ ସୈନ୍ୟ ଦେଇ ଯୁଦ୍ଧ କ୍ଷେତ୍ରକୁ ପଠାଇଲେ । ପ୍ରତାପ ଦେଓ ନିଜର ଓ ଅନ୍ୟାନ୍ୟ ସାମନ୍ତ ରାଜା ମାନଙ୍କର ସୈନ୍ୟ ମାନଙ୍କ ପରିଚାଳନ ଭାର ଗ୍ରହଣ କରି ଯୁଦ୍ଧ କରିବାକୁ ଲାଗିଲେ । ଘୋର ଯୁଦ୍ଧ ହେଲା । ପ୍ରତାପ ଦେଓ ଅତି କୌଶଳୀ ଥିଲେ । ସେ କୌଶଳ ବଳରେ ସୈନ୍ୟ ଚାଳନା କରି ଯୁଦ୍ଧ ଆରମ୍ଭ କଲେ । ଶେଷରେ ପ୍ରତାପ ଦେଓ ଯୁଦ୍ଧରେ ଜୟଲାଭ କରି ସୁଲେମାନଙ୍କୁ ତଡ଼ି ଦେଲେ । ଓଡ଼ିଶା ରାଜା ରାମଚନ୍ଦ୍ର ଦେବ ପାଟଣାଯୁବରାଜଙ୍କ ପ୍ରତି ଅତିସନ୍ତୁଷ୍ଟ ହୋଇ ତାହାଙ୍କୁ ନିଜ ଭଗିନୀଙ୍କ ସହ ବିବାହ କରାଇଦେଲେ ଓ ଅନେକ ଧନ ସମ୍ପତ୍ତି ଦେଇ ବିଦାୟ କଲେ । ଯୁବରାଜ ଯୁଦ୍ଧ କ୍ଷେତ୍ରରୁ ଫେରି ଆସି ମାମୁଁଙ୍କ ଠାରେ ସମସ୍ତ ବିଷୟ ପ୍ରକାଶ କଲେ । ମାମୁଁ ଖୁସି ହେଲେ ।

ନନ୍ଦପୁର ଓ ଖେମଣ୍ଡି ରାଜ୍ୟର ସୀମା ଲଗା ଲଗି । କୌଣସି ବିଷୟ ନେଇ ପ୍ରତାପ ଦେଓ ଓ ଖେମଣ୍ଡି ରାଜାଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଲା । ଏଣୁ ପ୍ରତାପ ଦେଓ ସସୈନ୍ୟେ ଖେମଣ୍ଡି ରାଜାଙ୍କ ବିରୁଦ୍ଧେ ଯାତ୍ରା କଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ଖେମଣ୍ଡି ରାଜା ପରାଜିତ ହୋଇ ପ୍ରତାପଦେଓଙ୍କ ଅଧୀନତା ସ୍ୱୀକାର କଲେ । ଏହି ସମୟରେ ସମ୍ବଲପୁର ରାଜା ବଳରାମ ଦେଓ

୧୫୮୦ ଖ୍ରୀ: ଅ:ରେ ପରଲୋକ ଗମନ କଲେ । ତେଣୁ ହୃଦେ ନାରାୟଣ ଦେଓ ପୁନର୍ବାର ପାଟଣା ରାଜ୍ୟର ଜମିଦାର ଉମରା ମାନଙ୍କୁ ସଙ୍ଗେ ନେଇ ନନ୍ଦପୁର ଯାଇ ଯୁବରାଜ ପ୍ରତାପ ଓ ତାଙ୍କର ମାତାଙ୍କୁ ପାଟଣାଗଡ଼କୁ ଆଣି ପାଟଣା ରାଜଗାଦିରେ ପ୍ରତାପଦେଓଙ୍କୁ ମହାରାଜା କରାଇଦେଇ ସମ୍ବଲପୁରକୁ ଫେରିଆସି ସମ୍ବଲପୁର ସିଂହାସନରେ ଅଭିଷିକ୍ତ ହେଲେ । ବିଧବା ମହାରାଣୀଙ୍କ ସଙ୍ଗେ କେତେକଜଣ ମନ୍ତ୍ରୀ ନନ୍ଦପୁର ଯାଇ ରହିଥିଲେ । ତେଣୁ ସେମାନେ ମଧ୍ୟ ସେଠାରୁ ଫେରିଆସି ପୁନର୍ବାର ମନ୍ତ୍ରୀ-କାର୍ଯ୍ୟ କରିବାକୁ ଲଗିଲେ । ସେମାନେ ପୂର୍ବବତ୍ ଅତ୍ୟାଚାର ଆରମ୍ଭ କରିବାରୁ ପାଟଣା ପ୍ରଜା ସମ୍ବଲପୁର ରାଜା ହୃଦେ ନାରାୟଣ ଦେଓଙ୍କ ଠାରେ ଆପତ୍ତି କଲେ । ସମ୍ବଲପୁର ରାଜା ଏହା ଶୁଣି ଅନେକ ସୈନ୍ୟ ଧରିଆସି ମନ୍ତ୍ରୀମାନଙ୍କୁ ବିତାଡ଼ିତ କଲେ । କେତେକଙ୍କୁ ନିହତ କଲେ ଓ ରାଜ୍ୟ ନିଷ୍କଣ୍ଟକ କରି ପ୍ରତାପ ଦେଓଙ୍କୁ ଶାସନ ବିଷୟରେ ଅନେକ ଉପଦେଶ ଦେଇ ସମ୍ବଲପୁରକୁ ଫେରି ଗଲେ ।

---

## ପ୍ରତାପ ଦେଓ ।

### ୧୫୮୫—୧୫୯୦ ଖ୍ରୀ: ଅ:

ପ୍ରତାପ ଦେଓଙ୍କ ୨ଟି ପୁତ୍ର ଥିଲେ । ଜ୍ୟେଷ୍ଠ ବିକ୍ରମାଦିତ୍ୟ ଓ କନିଷ୍ଠ ଗୋପାଳ ରାଏ । ସେ ଜ୍ୟେଷ୍ଠ ପୁତ୍ରଙ୍କୁ ପାଟଣା ରାଜ୍ୟ ଓ କନିଷ୍ଠଙ୍କୁ ଖରିଅଡ଼ ରାଜ୍ୟ ଦେଇ ୧୫୯୦ ଖ୍ରୀ:ଅ:ରେ ପରଲୋକ ଗମନ କଲେ । ଏହି ଗୋପାଳ ରାଏ ଖରିଅଡ଼ର ରାଜା ହେଲେ । ଏହାଙ୍କ ବିଷୟରେ ଖରିଅଡ଼ ଇତିହାସରେ ବର୍ଣ୍ଣିତ ହେବ ।

---

## ଦ୍ୱିତୀୟ ବିକ୍ରମାଦିତ୍ୟ ।

### ୧୬୯୦—୧୭୨୧ ଖ୍ରୀ: ଅ:

ମହାରାଜା ପ୍ରତାପ ଦେଓଙ୍କ ମୃତ୍ୟୁ ପରେ ଦ୍ୱିତୀୟ ବିକ୍ରମାଦିତ୍ୟ ଦେଓ ପାଟଣା ରାଜ୍ୟର ରାଜା ହେଲେ । ଖରିଅଳ୍ପ ରାଜ୍ୟ ପୃଥକ ହୋଇ ଥିଲେହେଁ ଏହାଙ୍କ ସାମନ୍ତ ରାଜ୍ୟ ହୋଇ ଥିଲା । ସେପରି ବେନ୍ଦ୍ରା ନୂଆଗଡ଼ ମଧ୍ୟ ସାମନ୍ତ ରାଜ୍ୟ ହୋଇ ଥିଲା । ସେ ପ୍ରଜାମାନଙ୍କ ନିମନ୍ତେ ଅନେକ ସଦନୁଷ୍ଠାନ କରି ଥିଲେ । ସେ ୧୭୨୧ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ମକୁନ୍ଦ ଦେଓ ।

### ୧୭୨୧—୧୭୬୧ ଖ୍ରୀ:ଅ:

ମହାରାଜ ବିକ୍ରମାଦିତ୍ୟ ଦେଓଙ୍କ ପରେ ମକୁନ୍ଦ ଦେଓ ମହାରାଜ ହେଲେ । ଏହାଙ୍କ ସମୟରେ ଖରିଅଡ ପାଟଣା ସମ୍ବଲପୁର ପୃଥକ ୨ ହୋଇ ଥିଲେହେଁ ଗୋଟିଏ ରାଜ୍ୟ ଓ ଗୋଟିଏ ପରିବାର ହୋଇଥିଲେ । ତେଣୁକରି ସମ୍ବଲପୁରର ଉନ୍ନତି ନିମନ୍ତେ ପାଟଣା ଓ ଖରିଅଡ଼ ସମ୍ବଲପୁରକୁ ସାହାଯ୍ୟ ଦେଇ ତାହାର ଉନ୍ନତି ନିମନ୍ତେ ଅନେକ ଯତ୍ନ କରୁଥିଲେ । ଅତଏବ ସମ୍ବଲପୁର ରାଜ୍ୟ ଧୀରେ ୨ ଉନ୍ନତ କରିବାକୁ ଲାଗିଲା ଓ ପାଟଣା ରାଜ୍ୟ ଧୀରେ୨ ଅବନତି ପ୍ରାପ୍ତ ହେଲା । ଏପରି ଭାବରେ ମକୁନ୍ଦ ଦେଓ ୪୦ ବର୍ଷ ରାଜତ୍ୱ କରି ୧୭୬୧ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ବଳରାମ ଦେଓ

### ୧୭୬୧—୧୭୬୯ ଖ୍ରୀ: ଅ:

ମହାରାଜ ମକୁନ୍ଦ ଦେଓଙ୍କ ପରେ ବଳରାମ ଦେଓ ମହା-

ରାଜ ନଥିଲେ । ସେ ମଧ୍ୟ ପ୍ରତ୍ୟେକ ଯୁଦ୍ଧରେ ସମ୍ବଲପୁରକୁ ସାହାଯ୍ୟ କରିବାକୁ ଲାଗିଲେ । ସେ ୮ ବର୍ଷ ରାଜତ୍ୱ କରି ୧୬୫୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ।

——:○:——

## ହୃଦେଶ ଦେଓ ।

### ୧୬୫୯—୧୬୯୧ ଖ୍ରୀ: ଅ:

ମହା ରାଜା ବଳରାମ ଦେଓଙ୍କ ପରେ ହୃଦେଶ ଦେଓ ମହାରାଜା ହୋଇ ତଦ୍ରୂପ ସମ୍ବଲପୁରକୁ ପ୍ରତ୍ୟେକ ବିଷୟରେ ସାହାଯ୍ୟ କଲେ । ସେ ୩୨ ବର୍ଷ ମାତ୍ର ରାଜତ୍ୱ କରି ୧୬୯୧ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

——○——

## ରାଜସିଂହ ଦେଓ ।

### ୧୬୯୧—୧୭୪୬ ଖ୍ରୀ: ଅ:

ମହାରାଜା ହୃଦେଶ ଦେଓଙ୍କ ପରେ ରାଜସିଂହ ଦେଓ ପାଟଣା ରାଜ୍ୟର ମହାରାଜା ହେଲେ । ଏହାଙ୍କ ସମୟରେ ନାଗପୁରରେ ମରହଟ୍ଟା ରାଜାଙ୍କ ପ୍ରାଧାନ୍ୟ ବିଘୋଷିତ ହେଲା। ରଘୁଜି ଭୋନ୍‌ସଲା ନାଗପୁର ରାଜଗାଦି ଅଧିକାର କରି ଦୁଇ ବର୍ଷ ରାଜତ୍ୱ କଲାପରେ ଅତି ପ୍ରବଳ ପରାକ୍ରାନ୍ତ ରାଜାହୋଇ ଉଠିଲେ । ସେ ନିକଟବର୍ତ୍ତୀ ରାଜାମାନଙ୍କ ସହ ଲଢ଼ାଇ କରି ଅଧୀନ କଲେ । ଧୀରେ ୨ ସେ ସମସ୍ତ ଦାକ୍ଷିଣାତ୍ୟ,ତାଞ୍ଜୋର ତ୍ରିଶିନା ପଲ୍ଲି, କର୍ଣ୍ଣାଟ ର ରାଜ୍ୟ ଜୟ କଲାପରେ ୧୭୪୨ ଖ୍ରୀ: ଅ: ରେ ଭାସ୍କର ପନ୍ତ ନାମକ ତାଙ୍କର ଜଣେ ସେନାପତି ଗଡ଼ ମଣ୍ଡଳ ରାଜ୍ୟ ଜୟ କରି ବେହାର ପ୍ରଦେଶ ଆକ୍ରମଣ କଲେ । ରାମଗଡ଼ ଆଦି ଅନେକ ରାଜ୍ୟ ଲୁଟ ପାଟ କରି ଅନେକ ସମ୍ପତ୍ତି ଲାଭ କରିଥିଲେ । ସେ ବଙ୍ଗ ସହିତ ଲଢ଼ାଇ

କରି ଦେଓ ଗଡ଼ର ଶାସନ କର୍ତ୍ତା ଅକବରଙ୍କ ପରାସ୍ତ କରି ଦୂରେଣ ତାଙ୍କୁ ସେଠାରେ ଶାସନକର୍ତ୍ତା ପଦରେ ନିଯୁକ୍ତ କଲେ । ଓଡ଼ିଶା ରାଜାଙ୍କ ସଙ୍ଗେ ଯୁଦ୍ଧ କରି ଜୟ କଲାପରେ ସମ୍ବଲପୁର-ପାଟଣା-ଖଣ୍ଡ ଅନ୍ୟ ରାଜ୍ୟମାନଙ୍କ ସଙ୍ଗେ ଯୁଦ୍ଧ କଲେ । ଯୁଦ୍ଧରେ ସମ୍ବଲପୁର-ପାଟଣା-ଖଣ୍ଡ ପରାସ୍ତ ହୋଇ ତାଙ୍କର ପଦାନତ ହେଲେ । ମହାରାଜ ନରସିଂହ ଦେଓଙ୍କ କୀର୍ତ୍ତି ଧ୍ୱଂସ ହେଲା । ପାଟଣାର ଗୌରବ ରବି ଅସ୍ତମିତ ହେଲା । ଏହିଠାରୁ ପାଟଣା ପରାଧୀନତା ସ୍ୱୀକାର କରି ନାଗପୁର ରାଜାଙ୍କ ସାମନ୍ତ ରାଜା ରୂପରେ ପରିଗଣିତ ହୋଇ ପାଟଣା ରାଜ୍ୟରୁ କର ଅସୁଲ କରି ନାଗପୁର ପତିଙ୍କ ପଦତଳେ ଅର୍ପଣ କଲା । ଅଜ କେବେ ତାର ସେହି ଚନ୍ଦ୍ର ଚିହ୍ନ ବୈରବ ରବି ଗଗନ ଅକାଶରେ ପୁନର୍ବାର ଉଦ୍ଦୀନ ହେବ ତାହା ଭଗବାନଙ୍କୁ ଜଣା ।

ମହାରାଜ ରାଜ ସିଂହ ଦେଓ ପାଟଣାଗଡ଼ ବଳଦେବ ଠାକୁରଙ୍କ ପାଇଁ ଚନ୍ଦନ ଭାଟି ଗ୍ରାମ ମାର୍ଫିରେ ଦେଇ ଥିଲେ । ସେ ୫୫ ବର୍ଷ ରାଜତ୍ୱ କରି ୧୭୪୬ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ଚନ୍ଦ୍ରଶେଖର ଦେଓ
## ୧୭୪୬—୧୭୬୨ ଖ୍ରୀ: ଅ:

ମହାରାଜ ରାଜସିଂହ ଦେଓଙ୍କ ପରଲୋକ ପରେ ତାଙ୍କ ପୁତ୍ର ଚନ୍ଦ୍ରଶେଖର ଦେଓ ପାଟଣା ରାଜ ସିଂହାସନ ଅଧିରୋହଣ କଲେ । ଏହାଙ୍କର ଚାରିଗୋଟି ପୁତ୍ର ଥିଲେ । ପ୍ରଥମ ପୃଥ୍ୱୀରାଜ ଦେଓ, ଦ୍ୱିତୀୟ ବିଶ୍ୱନାଥ ସିଂହ, ତୃତୀୟ ପୁରୁଷୋତ୍ତମ ସିଂହ ଓ ୪ର୍ଥ ହୀରାଲାଲ ସିଂହ ଅଟନ୍ତି । ସେ ବିଶ୍ୱନାଥ ସିଂହଙ୍କୁ

କରସିଂହାର ଶାସନ କର୍ତ୍ତା ପଦରେ ନିଯୁକ୍ତ କରି ଥିଲେ । ପୁରୁଷୋତ୍ତମ ସିଂହଙ୍କୁ କର୍ତ୍ତା ଗଡ଼ତିଆ ପଦରେ ନିଯୁକ୍ତ କରିଥିଲେ । ଓ ହୀରାଲାଲ୍‌ଙ୍କୁ କୁସୁଡେଲ୍ ଅଦ ଖଣ୍ଡ ଗ୍ରାମ ମାଫିରେ ଦେଇଥିଲେ । ବିଶ୍ୱନାଥ ସିଂହ ୧୫ବର୍ଷ କରସିଂହା ରାଜ୍ୟ ଶାସନକଲା ପରେ ତାଙ୍କର ଶାସନ କାର୍ଯ୍ୟ ଉତ୍ତମ ନ ହେବାରୁ ତାଙ୍କୁ କର୍ତ୍ତା ଗଡ଼ତିଆ କରି ପୁରୁଷୋତ୍ତମସିଂହଙ୍କୁ କରସିଂହାର ଶାସନ ଭାର ଦିଆଗଲା । ପରେ ତାଙ୍କୁ ମଧ୍ୟ ଅନ୍ତର କରାଗଲା; ଏ ସମ୍ବନ୍ଧରେ ରାମଚନ୍ଦ୍ର ଦେଓଙ୍କ ରାଜତ୍ୱରେ ବର୍ଣ୍ଣନା କରା ଯାଇ ଅଛି ।

ଏହି ପରି ରାଜା ଚନ୍ଦ୍ରଶେଖର ଦେଓ ବର୍ଷ ମାତ୍ର ପାଟଣା ରାଜ୍ୟ ଭୋଗ କରି ୧୭୬୨ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ପ୍ରଥମ ପୃଥ୍ୱୀରାଜ ଦେଓ

### ୧୭୬୨—୧୭୬୫ ଖ୍ରୀ: ଅ:

ମହାରାଜା ଚନ୍ଦ୍ରଶେଖର ଦେଓଙ୍କ ପରେ ତାଙ୍କପୁତ୍ର ପୃଥ୍ୱୀରାଜଦେଓ ପ୍ରଥମ ପାଟଣା ରାଜ୍ୟର ମହାରାଜ ହେଲେ । ସେ ପୂର୍ବବର୍ତ୍ତୀ ମହାରାଜାଙ୍କପରି ନାଗପୁର ରାଜାଙ୍କୁ କର ଦେଇ ସୈନ୍ୟ ସହିତ ସାହାଯ୍ୟ କରୁଥିଲେ । ଓ ନାଗପୁର ରାଜାଙ୍କ ଆଦେଶ ପାଳନ କରୁଥିଲେ । ଏହିପରି ଭାବରେ ସେ ବର୍ଷ ରାଜ୍ୟ ଶାସନ କରି ୧୭୬୫ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



# ଦ୍ୱିତୀୟ ରାମଚନ୍ଦ୍ର ଦେଓ

## ୧୭୭୫—୧୮୨୦ ଖ୍ରୀ: ଅ:

ମହାରାଜା ପ୍ରଥମ ପୃଥ୍ୱୀରାଜ ଦେଓଙ୍କ ପରେ ଦ୍ୱିତୀୟ ରାମଚନ୍ଦ୍ର ଦେଓ ପାଠଣାର ମହାରାଜ ହେଲେ । ପ୍ରଥମ ପୃଥ୍ୱୀରାଜ ଦେଓଙ୍କ ମୃତ୍ୟୁପରେ ତାହାଙ୍କର ଏକମାତ୍ର ପୁତ୍ର ଏହି ରାମଚନ୍ଦ୍ର ଦେଓ ମାତୃ ଗର୍ଭରେ ଥିଲେ । ଏଣୁ କେତେକଣ ଲୋକ ପୃଥ୍ୱୀରାଜଙ୍କ ନିକଟ ଉମ ସମ୍ବନ୍ଧୀ କୁମ୍ଭମେଲର ସର୍ଦ୍ଦାର ସିଂହଙ୍କ ପିତା ଅପୂର୍ବ ସିଂହଙ୍କୁ ପାଠଣା ରାଜ ଗାଦିରେ ରଜା କରିବାକୁ ପ୍ରସ୍ତୁତ ହେଲେ । କିନ୍ତୁ ଅଠଗାଁ ବଙ୍ଗୋମୁଣ୍ଡା ଜମିଦାର ଏଥିରେ ଅସ୍ୱୀକାର କରି କହିଲେ ସ୍ୱର୍ଗୀୟ ମହାରାଜାଙ୍କ ମହାରାଣୀ ଗର୍ଭବତୀ ଅଛନ୍ତି । ତାଙ୍କର ପ୍ରସବ ପର୍ଯ୍ୟନ୍ତ ଅପେକ୍ଷା କରିବା ଉଚିତ । ଯଦି ମହାରାଣୀଙ୍କ ଗର୍ଭରୁ କୁମାର ଜନ୍ମ ହେବ ତେବେ ଅପୂର୍ବସିଂହଙ୍କୁ କପଟ ରାଜଗାଦି ଅର୍ପଣ କରାଯିବ । ଅନନ୍ତର ଏହି ପ୍ରସ୍ତାବରେ ଅପୂର୍ବ ସିଂହ ଆଦି ଅନ୍ୟାନ୍ୟମାନେ ସ୍ୱୀକାର କଲେ ।

କ୍ରମେ ଦଶହରା ମାସ ପୂର୍ଣ୍ଣ ଅନ୍ତେ ମହାରାଣୀ ଗୋଟିଏ ନବ କୁମାର ଜନ୍ମ କଲେ । କାଳେ ଅପୂର୍ବସିଂହ କୁମାର ଜନ୍ମ ହେଲା ବୋଲି ଶୁଣିଲେ ଅତ୍ୟାଗ୍ରହ କରିବ ଏହି ଭୟରେ କୁମାରୀ ଜନ୍ମ ହୋଇଛି ବୋଲି ପ୍ରକାଶ କଲେ । ଅପୂର୍ବସିଂହ ଏହି ସମ୍ବାଦ ପାଇ ଆନନ୍ଦ ହେଲେ । ଏକୋଇଶିଆ ଦିନହେଲା ଏକୋଇଶିଆ ଉପଲକ୍ଷରେ ପାଠଣା ରାଜ୍ୟର ସମସ୍ତ ଜମିଦାର ଜମିଦାର ଗୌନ୍ତିଆମାନଙ୍କୁ ନିମନ୍ତ୍ରଣ କରାଯାଇ ପୁଅଟିଏ ହୋଇଥିବାର ପ୍ରକାଶ କରି ନବଯୁବରାଜଙ୍କୁ ସମସ୍ତଙ୍କୁ ଦେଖାଇ ଦେଇଥିଲେ । ସମସ୍ତେ ଏ ବିଷୟ ଶୁଣି ଅତି ଆନନ୍ଦ ଅନୁଭବ କଲେ । ଅପୂର୍ବ ସିଂହଙ୍କ ରାଜ୍ୟ ଲାଭ ଆଶା

ହୋଇଥିଲା । ଯୁବରାଜଙ୍କ ନାମ ରାମଚନ୍ଦ୍ର ଦେଓ ରଖାହେଲା ।

ଯୁବରାଜଙ୍କ ନାବାଳକ ଅବସ୍ଥା ହେତୁରୁ ଯୁବରାଜଙ୍କ ପକ୍ଷରୁ ମହାରାଣୀ ମନ୍ତ୍ରୀମାନଙ୍କ ସାହାଯ୍ୟରେ ରାଜ୍ୟ ଶାସନ କରିବାକୁ ଲଗିଲେ । ସେ ବିଧିମତେ ରାଜ୍ୟରୁ କର ଅସୁଲ କରି ନାଗପୁର ରାଜାଙ୍କଠାରେ ଅର୍ପଣ କରିବାକୁ ଅବହେଳା କରୁଥିଲେ ।

ରାମଚନ୍ଦ୍ର ଦେଓଙ୍କୁ ୬ବର୍ଷ ହେଲା ସମୟରେ ନାଗପୁର ରାଜା ସମ୍ବଲପୁର, ପାଟଣା, ସୋନପୁର ରାଜା ମାନଙ୍କୁ ଧରି ନେଇ ବନ୍ଦକରି ରଖିବାକୁ ସୈନ୍ୟ ପଠାଇଲେ । ସେଓଁ ସୈନ୍ୟମାନେ ପାଟଣାକୁ ଆସିଲେ ସେମାନେ ନାଗପୁର ରାଜାଙ୍କ ଆଦେଶ ଶୁଣାଇ ଯୁବରାଜ ଓ ବିଧବା ରାଣୀଙ୍କୁ ନାଗପୁରକୁ ନେଇଗଲେ । ନାଗପୁର ରାଜାଙ୍କ ଆଦେଶରେ ବିଧବା ରାଣୀ ପୁଅ ସଙ୍ଗରେ ଗୃହାରେ ରହିଲେ ।

•ସେଠାରେ ସେ ବ ୧୪ର୍ଷ କାଳ ଅତିବାହିତ କଲାରୁ ଦିନେ ନାଗପୁର ରାଜା ଗୋ ଟିଏ ଅତି ଦୁଷ୍ଟଘୋଡ଼ା ଆଣି ରାମଚନ୍ଦ୍ର ଦେଓଙ୍କୁ ଚଢ଼ିବାକୁ ଆଦେଶ ଦେଲେ ଓ କୌଣସି ଗୋଟିଏ ନିରୁପିତ ସ୍ଥାନକୁ ଯାଇ କିଛି ସଙ୍କେତ ଆଣିବାକୁ କହିଲେ । ଆଦେଶ ମତେ ରାମଚନ୍ଦ୍ର ଦେଓ ଘୋଡ଼ାକୁ ଚଢ଼ିବାକୁ ଅନେକ ଚେଷ୍ଟା କଲେ କିନ୍ତୁ ପାରିଲେ ନାହିଁ । ଶେଷରେ ଇଷ୍ଟଦେବୀ ପାଟଣେଶ୍ୱରୀଙ୍କୁ ସ୍ମରଣ କରି ବାଲିଟିକିଏ ଘୋଡ଼ାର ମୁଣ୍ଡରେ ପକାଇ ଦେବାରୁ ଘୋଡ଼ା ଶାନ୍ତ ହୋଇ ରହିଲା । ଅନନ୍ତର ଯୁବରାଜ ଘୋଡ଼ାରେ ଚଢି ନିରୁପିତ ସ୍ଥାନକୁ ଯାଇ ସଙ୍କେତ ଆଣିଲେ ଏହା ଦେଖି ନାଗପୁର ରାଜା ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ କହିଲେ“ ତୁମ୍ଭେ କଅଣ ଗୃହ” ? ଯୁବରାଜ ଉତ୍ତର ଦେଲେ ମତେ ମୋର ନିଜ ରାଜ୍ୟରେ ରାଜା

ତଥର ଧାଅନ୍ତୁ ।” ନାଗପୁର ରାଜା ଏହା ଶୁଣି ପ୍ରୀତ ହୋଇ ତାଙ୍କ ସହ ଜଣେ ସୁବା ( ଅଫିସର ) ଓ କେତେକ ସୈନ୍ୟ ଦେଇ ପାଟଣା ରାଜ୍ୟକୁ ପଠାଇ ଦେଲେ ।

ସେ ସମୟରେ ସାଲେଭଟାରେ ଜଣେ ରାଜବଂଶୀୟ ଲୋକ ଗଡ଼ତିଆ ଥିଲେ । ମହାରାଜା ରାମଚନ୍ଦ୍ର ଦେଓ ସାଲେଭଟାରେ ପହୁଞ୍ଚି ରସଦ ଆଦର ବନ୍ଦୋବସ୍ତ କରିବାକୁ ସାଲେଭଟାର ଜନାର୍ଦ୍ଦନ କଣ୍ଟିଆଳଙ୍କୁ ଗଡ଼ତିଆ ନିକଟକୁ ପଠାଇଲେ । ଗଡ଼ତିଆ ରାଜାଙ୍କ ହୁକୁମ ଅନାଦର କରି ରସଦ ଆଦର ବନ୍ଦୋବସ୍ତ କଲା ନାହିଁ । ସେଠାରୁ ରାଜା ବାହାରିଆସି ଝାର ବନ୍ଧଲରେ ମୁକାମ କରି ବୁଢ଼ାସମ୍ବର ଜମିଦାରଙ୍କ ନିକଟକୁ ଖବର ପଠାଇଲେ—“ତୁମ୍ଭେ ଅତି ଶୀଘ୍ର ସୈନ୍ୟ ସହ ସାଲେଭଟା ଅବରୋଧ କରି ଗଡ଼ତିଆର ସଙ୍ଗେ ଲଢ଼ାଇ କରି ତାହାର ମୁଣ୍ଡ କାଟି ଆମ୍ଭଠାରେ ଅର୍ପଣ କର ।” ଏହି ଆଦେଶରେ ବୁଢ଼ା ସମ୍ବର ଜମିଦାର ୫୦୦ ସୈନ୍ୟ ନେଇ ସାଲେଭଟା ଗଡ଼ତିଆ ସଙ୍ଗରେ ଲଢ଼ାଇ କରି ତାହାର ମୁଣ୍ଡ କାଟି ନେଇ ପାଟଣା ଗଡ଼ରେ ମହାରାଜାଙ୍କ ଠାରେ ସମର୍ପଣ କଲେ । ମହାରାଜା ତାଙ୍କପ୍ରତି ସନ୍ତୁଷ୍ଟ ହୋଇ ଖପ୍ରାଖୋଲ ଓ ଖୁଲି ପାଣି ଇଲାକା ପୁରସ୍କାର ଦେଲେ । ବୁଢ଼ାସମ୍ବର ଜମିଦାର ଉକ୍ତ ଦୁଇ ଇଲାକା ତାଙ୍କର ଭାଇମାନଙ୍କ ମଧ୍ୟରେ ବାଣ୍ଟି ଦେଲେ । ମହାରାଜା ଶୂରପ୍ରତାପ ଦେଓଙ୍କ ସମୟରେ ସେହି ଦୁଇ ଇଲାକା ବୁଢ଼ା ସମ୍ବର ଜମିଦାରଙ୍କ ଅଧୀନରୁ ଅନ୍ତର ହୋଇ ପାଟଣା ସହିତ ମିଶିଗଲା । ହେଲେ ସେହି ଜମିଦାରଙ୍କ ଭାଇମାନଙ୍କ ବଂଶଧରମାନେ ଏପର୍ଯ୍ୟନ୍ତ ଏହି ଦୁଇଇଲାକା ଭୋଗକରି ଆସୁଅଛନ୍ତି ।

ମହାରାଜାଙ୍କ ସଙ୍ଗରେ ଜଣେ ଗୌଡ଼ ଗୁରୁ ଗୁହାରେ ରହି ତାଙ୍କର ଗୁରୁଭକ୍ତ କରୁଥିଲା । ମହାରାଜା ଦିନେ ତାହାଠାରୁ

ବିରକ୍ତ ହୋଇ ତାହା ଉପରେ ଅର୍ଦ୍ଧଳା ପଣ ପଢାଇ ପାଟଣେଶ୍ୱରୀ ଦେବୀଙ୍କଠାରେ ଅର୍ପଣ କରିବେ ବୋଲି କହିଲେ । କିନ୍ତୁ ପରେ ତାହା ପ୍ରତି ସନ୍ତୁଷ୍ଟ ହୋଇ ଯାନସର ଗ୍ରାମ ମାଫିଦେଲେ ଓ ଗୌନ୍ତ ଜାତିର ପଦ୍ମୁଆଁ କରି ଦେଇଥିଲେ । ଏହି ଗ୍ରାମ-ମହାରାଜ ଶୂରପ୍ରତାପ ଦେଓଙ୍କ ରାଜତ୍ୱ ସମୟରେ ଗୌନ୍ତି ହୋଇ ଗଲା ।

ଅନନ୍ତର ମହାରାଜା ରାମଚନ୍ଦ୍ର ଦେଓଙ୍କ ଅଭିଷେକ ଉତ୍ସବର ଘୋଷଣା ପାଟଣା ରାଜ୍ୟ ମଧ୍ୟରେ ପ୍ରଚାର କରାଗଲା । ନିରୂପିତ ଦିନରେ ପାଟଣା ରାଜ୍ୟର ସମସ୍ତ ଜମିଦାର ଜମ୍ବୁରା ଗୌନ୍ତିଆ ଉପସ୍ଥିତ ହେଲେ, ଦରବାର ହେଲା । ସରକାରର ସୁବା ମହାରାଜାଙ୍କୁ ଗାଦିରେ ବସାଇ ସମସ୍ତଙ୍କ ସାକ୍ଷାତରେ "ଏ ତୁମ୍ଭମାନଙ୍କର ମହାରାଜା ବୋଲି ପରିଚିତ କରାଇ ଦେଲେ ।" ସମସ୍ତେ ମହାରାଜାଙ୍କୁ ଓ ସୁବାଙ୍କୁ ଜଣ ଜଣ ହୋଇ ପ୍ରଣାମ କଲେ । କିନ୍ତୁ ଗୁନସର ଜମ୍ବୁରା ମହାରାଜାଙ୍କୁ ପ୍ରଣାମକରି ବାମ ହସ୍ତରେ ସୁବାଙ୍କୁ ସଲାମ କଲା । ଏହା ଦେଖି ସୁବା ତାହାର ପରିଚୟ ନିମନ୍ତେ ପ୍ରଧାନ ମନ୍ତ୍ରୀଙ୍କୁ ପଚାରିଲେ । ମନ୍ତ୍ରୀ କହିଲେ ଏ ଜଣେ ବନ ଜାତୀୟ ଅଶିକ୍ଷିତ ଜମ୍ବୁରା ଅଟେ । ଏହା ଶୁଣି ସୁବା ମହାରାଜାଙ୍କୁ କହିଲେ ଆପଣ ଏହି ଅଶିକ୍ଷିତ ରାଜ୍ୟ ପରିତ୍ୟାଗ କରନ୍ତୁ । ଆପଣଙ୍କୁ ଅନ୍ୟ ରାଜ୍ୟ ଦିଆଯିବ । ରାଜା ଉତ୍ତର କଲେ ନା ଏହା ମୋର ପିତୃ ପୁରୁଷ ଅର୍ଜିତ ଭୂମି ଏହାକୁ ଛାଡି ଅନ୍ୟକୁ ଯିବାକୁ ମୋ ଇଚ୍ଛା ନାହିଁ । ଏହା ମୋର ପକ୍ଷରେ ଅତି ଆଦରର ଧନ ଅଟେ । ପରେ ଦରବାର ଭାଙ୍ଗିଲା । ସୁବା ସେଠାରେ କେତେ ଦିନ ରହି ନାଗପୁରକୁ ଫେରି ଗଲେ ।

ତେତେବେଳେ ଗଜପତି ମହାରାଜ ରାଜ୍ୟମଧ୍ୟରେ ଗସ୍ତ (Tour) କରିବାକୁ ବାହାରିଲେ । ସଙ୍ଗରେ କେତେ ସୈନ୍ୟ ମଧ୍ୟ ନେଇଥିଲେ । ସେ ଗୁନସରରେ ପହଞ୍ଚିଲାରୁ ଗୁନସର ଜମିଦାର ସାଗୋ ମାଝି ପୂର୍ବପରି ମହାରାଜାଙ୍କୁ ହତାଦର କରି ମାନିଲା ନାହିଁ । ତେଣୁ ମହାରାଜା ତାହାସଙ୍ଗେ ଲଢ଼ାଇ କରି ତାକୁ ବନ୍ଦୀ କରି ବଲାଙ୍ଗିରକୁ ଧରି ଆଣିଲେ । ଏ ସମୟରେ କେଶବ ଗୌନ୍ତିଆ ନାମରେ ଜଣେ ଗୌନ୍ତିଆ ଥିଲେ । ସେ ୫୦୦ ସ୍ୱର୍ଣ୍ଣ ମୁଦ୍ରା ରାଜାଙ୍କଠାରେ ଅର୍ପଣ କରି ସାଗୋ ମାଝିର ଜୀବନ ଭିକ୍ଷା କଲେ । ମହାରାଜା ସାଗୋ ମାଝିକୁ ଖଲାସ କରି ଛାଡ଼ି ଦେଲେ ।

ମହାରାଜା ରାମଚନ୍ଦ୍ର ଦେଓଙ୍କ ଚାରି ମୂର୍ତ୍ତି ରାଣୀ ଥିଲେ । ପ୍ରଥମ ବିମଳା ଦେବୀ ୨ୟ ମଣିଦେଇ ଗୋଷାଣୀ ୩ୟ ଜଳନ୍ଦ ରାଣୀ ୪ର୍ଥ ରାଇପୁର ଇଲାକାର ବରଗାଁ ଜମିଦାରଙ୍କ ଝିଅ ଥିଲେ । ପ୍ରଥମ ରାଣୀଙ୍କ ଗର୍ଭରୁ ଭୂପାଳ ଦେଓ ଜନ୍ମ ହୋଇଥିଲେ । ଦ୍ୱିତୀୟ ରାଣୀ ଅପୁତ୍ରିକ ଥିଲେ ସେ ନିଜର ଖଟି ନାମରେ ପୁଜାପାଲି, କୁଟୁଲ, ଘାଲେଟ, ପୁରୁନାଖଲା ବୁର୍ଦା, ମଧୁଆପାଲି ଗ୍ରାମ ପାଇଥିଲେ । ତୃତୀୟ ରାଣୀଙ୍କ ଗର୍ଭରୁ ଯୁବରାଜ ସଂଗ୍ରାମ ଜନ୍ମ ଗ୍ରହଣ କଲାପରେ ମାଆ ପରଲୋକ ଗମନ କଲେ । ତେଣୁ ଦ୍ୱିତୀୟ ରାଣୀ ତାଙ୍କୁ ପ୍ରତିପାଳନ କଲେ । ୪ର୍ଥ ରାଣୀ ମଧ୍ୟ ଅପୁତ୍ରିକ ଥିଲେ । ସେ ଜଣେ ଜଣା ପ୍ରକୃତିର ସ୍ତ୍ରୀ ଥିଲେ । ତେଣୁ ସେ ସବୁବେଳେ ତାଙ୍କର ନିଜର ଖଟି ଲୁରସିଙ୍ଗା ଗ୍ରାମରେ ବାସ କରୁଥିଲେ ।

ଏହି ସମୟରେ କେଶବ ରାଏ ନାମକ ଜଣେ ବ୍ୟକ୍ତି ଜନାପୁରରେ ଗଉଁତିଆ ହୋଇଥିଲେ । ତାଙ୍କ ପୂର୍ବେ ପଦ୍ମାସ ମଲ୍ଲିକ ନାମରେ ଜଣେ ଗଉତିଆ ଥିଲେ । ବୁଢ଼ା ସମ୍ବର

ଜମିଦାର ସେହି ପଦାସ ମଲ୍ଲିକଙ୍କ ଦ୍ୱାରା ଏହି ଚମରୁ ରାଏଙ୍କୁ ମରାଇ ଦେଲେ । ଚମରୁ ରାଏଙ୍କ ବଂଶଧରମାନେ ତହିଁ ଠାରୁ ଅସି ଗଡ଼ଝାଁ ହୋଇ ବାସ କଲେ । କ୍ରମେ ତହିଁ ଗ୍ରାମର ଏହି ବଂଶର ମୁଖିଆ (ପ୍ରଧାନ) ନରସିଂହ ରାଏ କ୍ଷମତାଶାଳୀ ହୋଇ ମହାରାଜାଙ୍କୁ ମାନିଲେ ନାହିଁ । ତେଣୁ ମହାରାଜା ସେମାନଙ୍କୁ ଦମନ କରିବାକୁ ଅନେକ ଚେଷ୍ଟା କଲେ କିନ୍ତୁ ପାରିଲେ ନାହିଁ । ଶେଷରେ ଗୋବିନ୍ଦ ଦେଓ।ନେ-କୁ ସୋନପୁରରୁ ଅଣାଇ ସେମାନଙ୍କୁ ଦମନ କରିବାର ଭାର ଦେଲେ । ତଗା ଅତି ଦୁର୍ଭେଦ୍ୟ ଗଡ଼ ଥିଲା । ଗୋବିନ୍ଦ ଯୋଦ୍ଧାମାନ କୌଣସି ମତେ ଗଡ଼ ମଧ୍ୟକୁ ପ୍ରବେଶ କରି ନ ପାରିବାରୁ ଛଳନା ଦ୍ୱାରା ନରସିଂହ ରାଏଙ୍କୁ ଗଡ଼ରୁ ବାହାର କରାଇ ହାଣି ଦେଲେ । ଓ ତାହାଙ୍କର ସମସ୍ତ ବଂଶଧରମାନଙ୍କୁ ବିନାଶ କରିବାକୁ ସୈନ୍ୟ ମାନଙ୍କୁ ଅଦେଶ ଦେଲେ । ସୈନ୍ୟମାନେ ସେମାନଙ୍କୁ ଗୋଟିଏ୨ କରି ହାଣି ପକାଇଲେ । କେବଳ ଜଣେ ଲୁଚିକରି ଫୁଲଝରକୁ ପଳାଇ ଯାଇ ଫୁଲଝର ଜମିଦାରଙ୍କ ଅଶ୍ରୟରେ ରହିଲେ । ଯେଉଁମାନେ ଫୁଲଝରକୁ ପଳାଇଲେ ସେମାନେ ନରସିଂହ ରାଏଙ୍କ ବଂଶଧର ଥିଲେ ।

କିଛୁଦିନ ପରେ ମହାରାଜା ରାମଚନ୍ଦ୍ର ଦେଓ ପୀଡ଼ିତ ହେଲେ । ପୀଡ଼ା କ୍ରମେ୨ ପାଗଳାମିରେ ପରିଣତ ହେଲା । ଅନେକ ଔଷଧ କରାଗଲା କିନ୍ତୁ ତାହିଁରେ କିଛି ହେଲା ନାହିଁ । ଦିନେ ପାଟଣେଶ୍ୱରୀ ଦେବୀ ସ୍ୱପ୍ନରେ ମହାରାଜାଙ୍କୁ କହିଲେ ନରସିଂହ ରାଏଙ୍କ ବଂଶଧର ମାନେ ଫୁଲଝରକୁ ପଳାଇ ଯିବା ଦିନରୁ ତାହାଙ୍କର "ଡୋଡୋ" ଦେବୀ ଅପୂଜ୍ୟ ଅବସ୍ଥାରେ ଅଛନ୍ତି ! ସେମାନଙ୍କୁ ଫୁଲଝରରୁ ଅଣି ପୂର୍ବପରି

କନ୍ଦାଦୋ ଦେବୀଙ୍କ ପୂଜା କାର୍ଯ୍ୟରେ ଲଗାଇଲେ ତୁମ୍ଭେ ଆରାମ ହେବ । ଅବଧନ ପ୍ରଭୃତିରୁ ମହାରାଜା ମନ୍ତ୍ରୀଙ୍କୁ ଏସବୁ ବୃତ୍ତାନ୍ତ କହି ନରସିଂହ ରାଏଙ୍କ ପରିବାରଙ୍କୁ ଫୁଲ-ଝରରୁ ଆଣି ଦେବୀଙ୍କ ପୂଜାରେ ଲଗାଇଲେ । ଓ ରାଜା ନିଜ ଇଚ୍ଛା ମତେ ନରସିଂହ ରାଏଙ୍କ ପୁତ୍ର ମୁକୁନ୍ଦ ସିଂହ ରାଏଙ୍କୁ ଲୋଇସିଂହା ଜମିଦାରି ଅର୍ପଣ କଲେ । ଅନନ୍ତର ମହାରାଜା ଧୀରେ୨ ଆରାମ ହେଲେ । ସେହି ମୁକୁନ୍ଦ ରାଏଙ୍କ ବଂଶଧର ମାନେ ଏ ପର୍ଯ୍ୟନ୍ତ ଲୋଇସିଂହା ଜମିଦାରି ଭୋଗ କରି ଆସୁ ଅଛନ୍ତି । ମୁକୁନ୍ଦ ରାଏଙ୍କ ପରେ ରଘୁନାଥ ରାଏ ତାଙ୍କପରେ ନାରାୟଣସିଂହ ରାଏ ଜମିଦାର ହେଲେ । ସେ ଲୋଇସିଂହାର ନାରାୟଣୀ ସାଗର ଖୋଳାଇ ଥିଲେ । ତାଙ୍କପରେ ସଦାନନ୍ଦ ରାଏ ତାଙ୍କପରେ ଗଦାଧର ରାଏ ଜମିଦାର ହେଲେ । ଗଦାଧର ରାଏଙ୍କ ପୁଅ ନଥିବାରୁ ତାଙ୍କ-ଭାଇ ଚକ୍ରଧର ରାଏ ଜମିଦାର ହେଲେ । ସେ ମୃତ ହେବାରୁ ତାଙ୍କପୁଅ ଶତ୍ରୁଘ୍ନ ସିଂହ ବର୍ତ୍ତମାନର ଜମିଦାର ଅଛନ୍ତି । ଏ ରାଇପୁର କଲେଜରେ ପାଠ ପଢ଼ି ଶିକ୍ଷା ଲାଭ କରୁ ଅଛନ୍ତି ।

କନ୍ଧାନ ଇଲାକାରେ ୩ ଜଣ ଜମିଦାର ଥିଲେ, ସେମାନେ କନ୍ଧଜାତୀୟ ଥିବାରୁ ଭାରି ମଦ୍ୟପାୟୀ ଥିଲେ । ଯାହା ଯାହା ଯେଉଁଠାରୁ ପାଉଥିଲେ ସବୁ ମଦରେ ଖର୍ଚ୍ଚ କରୁଥିଲେ । ତେଣୁ ମାଲଗୁଜାରି ଅସୁଲ ଦେବାରେ ତ୍ରୁଟି କରୁଥିଲେ । ମହାରାଜାଙ୍କ ଆଦେଶରେ ଗୋବିନ୍ଦ ଦେଓ୍ୱାନ ଯାଇ ସେମାନଙ୍କ ସହ ଲଢ଼ାଇ କରି ସବୁ ମାଲଗୁଜାରି ଅସୁଲ କଲେ । ଏହି ସମୟରେ ଅଠେଗାଁ ଓ କାମସରା ଗ୍ରାମରେ ବହୁତ ଚୋର ଥିଲେ । ସେମାନେ ଚୋରି କରି

ପାଡ଼ା ପାଇ ଥିଲେ ଅଠଗାଁ ଓ ଉପସ୍ତବା ଜମିଦାର ମାନଙ୍କୁ ଉଭୟଙ୍କୁ ଭୂଗ ଦେଇ ଥିବାରୁ ସେମାନେ ସବୁବେଳେ ସେ-ମାନଙ୍କୁ ସାହାଯ୍ୟ ଦେଇ ଥିଲେ । ଓ ଶୈର୍ଯ୍ୟ ବୃତ୍ତିର ପ୍ରଶ୍ରୟ ଦେଇଥିଲେ । ଏଣୁ ଦେଶରେ ଅନେକ ଅଶାନ୍ତି ଜାତହେଲା । କେହୁ ଧନ ପ୍ରାଣ ନେଇ ସୁଖରେ ଦିନ କଟାଇ ପାରିଲେ ନାହିଁ । ମହାରାଜା ଅଠଗାଁ ଜମିଦାର ଠାକୁର ମାଝିଙ୍କୁ ଭଗାଁ ଗଡ଼କୁ ଡ଼କାଇ ନେଇ ସେଠାରେ ତାଙ୍କୁ ଅସ୍ତ୍ରାଘାତ କରନ୍ତା ସମୟରେ ଠାକୁର ମାଝି ପ୍ରାଣ ଭୟରେ ଅଠଗାଁକୁ ପଳାଇ ଆସିଲେ । କିନ୍ତୁ ବଞ୍ଚିଲେ ନାହିଁ, ମରିଗଲେ । ତାଙ୍କର ପରିବାର ବୃଦ୍ଧ ସମ୍ବର ଜମିଦାରଙ୍କ ଆଶ୍ରୟ ନେଲେ ।

ମହାରାଜା ରାମଚନ୍ଦ୍ର ଦେଓ ସମସ୍ତ ରାଣୀମାନଙ୍କ ମଧ୍ୟରୁ ଦ୍ୱିତୀୟ ରାଣୀଙ୍କୁ ଅତି ସ୍ନେହ କରୁଥିଲେ । ତେଣୁ ତାଙ୍କର ଅନୁରୋଧରେ ଯୁବରାଜ ସିଂହଙ୍କୁ ଅଠଗାଁ ଜମିଦାରୀ ଦେବାକୁ ଇଚ୍ଛା କଲେ । ରାଣୀ ଅସ୍ୱୀକାର କରିବାରୁ ଯୁବରାଜ ସିଂହଙ୍କୁ ଜରାସିଂହା ଇଲାକା ଦେଇ ପୃଥ୍ୱୀସ୍ତମ ସିଂହଙ୍କୁ ଭଗାଁ ଗଡ଼ର ଗନ୍ତିଆ ପଦରେ ପରିବର୍ତ୍ତନ କରି ଦେଲେ । ଦ୍ୱିତୀୟ ରାଣୀ ମହାରାଜାଙ୍କୁ ଓ କୁମାରଙ୍କୁ ନେଇ ଜରାସିଂହାରେ ରହିଲେ । ଏହି ଯୁବରାଜ ସିଂହଙ୍କ ପରେ ଚନ୍ଦ୍ରଭାନୁ ସିଂହ ଜମିଦାର ହେଲେ । ତାଙ୍କ ପରେ ତାଙ୍କପୁତ୍ର ଜଗନ୍ନାଥ ସିଂହ ବର୍ତ୍ତମାନର ଜମିଦାର ବା ଖୋରାକ ପୋଷାକ ଦାର ଅଛନ୍ତି ।

ଏହି ସମୟରେ ନାଗପୁର ଭୋନ୍ସଲ ସମ୍ରାଟ ଓ ଇଂରାଜଙ୍କ ମଧ୍ୟରେ ଯୁଦ୍ଧହେଲା । ଯୁଦ୍ଧରେ ଭୋନ୍ସଲ ସମ୍ରାଟ ପରାଜିତ ହେବାରୁ ଇଂରେଜ ଶାସନ କର୍ତ୍ତାଙ୍କୁ ଅନ୍ୟାନ୍ୟ ରାଜ୍ୟ ସହିତ ପାଟଣା, ସୋନପୁର, ସମ୍ବଲପୁର; ରାଜ୍ୟ ଅର୍ପଣ କରି ସନ୍ଧି

ସ୍ଥାପନ କଲେ । ଖରିଅଡ଼ ଓ ବୁଢ଼ାସମ୍ବର ଜମୀଦାର ଦ୍ୱୟ ପାଟଣାସଙ୍ଗେ ଗୋଲମାଲ କରି ପୃଥକ ହୋଇଗଲେ । ସୋନପୁର ରାଜା ସୋନପୁର ନଗର ମଧ୍ୟସ୍ଥ ଗୋଲକଢ଼ଠାରୁ କମସର ଓ ଲଛୁପୁର ଇଲକାର ୬୦ଖଣ୍ଡ ଗ୍ରାମ ବଳକାର ଅଧିକାର କରନେଲେ । ମହାରାଜା ରାମଚନ୍ଦ୍ର ଦେଓ ଇଂରାଜ ସରକାରଙ୍କ ସାମନ୍ତ ରାଜା ହୋଇ ଥିବାରୁ ଏ ସମ୍ବନ୍ଧ ଇଂରାଜ ସରକାରଙ୍କଠାରେ ଆପତ୍ତି କଲେ ତହିଁର ଫଳାଫଳ ଶୁଣିବା ପୂର୍ବରୁ ମହାରାଜା ଜଗସିଂହା ଗଡ଼ରେ ୧୮୬୦ ଖ୍ରୀଃ ଅଃରେ ପରଲୋକ ଗମନକଲେ । ସୋନଗଡ଼ ନଦୀ କୂଳରେ ମହାରାଜାଙ୍କୁ ଦାହ କରାଯାଇ ଥିଲା । ୪ର୍ଥ ରାଣୀ ସତୀଗଲେ । ସେଦିନଠାରୁ ସେସ୍ଥାନକୁ ସତୀଘାଟ ବୋଲି କହୁ ଅଛନ୍ତି ।



## ଭୂପାଳ ଦେଓ ।

### ୧୮୬୦—୧୮୪୮ ଖ୍ରୀଃଅଃ

ମହାରାଜା ରାମଚନ୍ଦ୍ର ଦେଓଙ୍କ ପରଲୋକ ପରେ ଇଂରେଜ ସରକାର ଭୂପାଳ ଦେଓଙ୍କୁ ପାଟଣା ରାଜ ସିଂହାସନରେ ଅଭିଷେକ କଲେ । ମହାରାଜା ରାମଚନ୍ଦ୍ର ଦେଓ ଯେଉଁ ୬୦ ଖଣ୍ଡ ଗ୍ରାମ ନିମନ୍ତେ ଇଂରେଜ ସରକାରଙ୍କଠାରେ ସୋନପୁର ରାଜାଙ୍କ ବିରୁଦ୍ଧରେ ଅର୍ଜି କରିଥିଲେ ସେ ସମ୍ବନ୍ଧେ ଅନୁସନ୍ଧାନ କରି ନିଷ୍ପତ୍ତି କରିବାକୁ ବ୍ରିଟିଶ ଗଭର୍ଣ୍ଣର ଜେନେରେଲଙ୍କ ଆଦେଶରେ ଟ୍ରିବ୍ୟୁଟରି ମହାଲର ସୁପରିଣ୍ଟେଣ୍ଡେଣ୍ଟଙ୍କ ଏସିସଟେଣ୍ଟ ଏଜେଣ୍ଟ ମେଜର ମିଃରଫସିଜ ସାହେବ ପାଟଣା ଗଡ଼କୁ ଆସି ରାଜା ଭୂପାଳ ଦେଓଙ୍କୁ ନୋଟିସକଲେ । ନୋଟିସ

ପାଇ ମହାରାଜା ଉପସ୍ଥିତ ନ ହେବାରୁ ତାହାଙ୍କୁ ଉରଷ୍ଟ କେମ୍ପରେ ହାଜର ହେବାକୁ ନୋଟିସ ଦେଲେ । ସେଠାରେ ସେ ମଧ୍ୟ ଉପସ୍ଥିତ ନ ହେବାରୁ ସୋନପୁରରେ ହାଜର ହେବାକୁ ନୋଟିସଦେଲେ । ସେଠାରେ ମଧ୍ୟ ସେ ଉପସ୍ଥିତ ନ ହେବାରୁ ପରଶେଷରେ ବିଳକାମୁଣ୍ଡାମରେ ଉପସ୍ଥିତହେବାକୁ ନୋଟିସ ଦଲେ । ସେଠାରେ ମଧ୍ୟ ଉପସ୍ଥିତ ନ ହେବାରୁ ସାହେବ ସୋନପୁର ରାଜାଙ୍କୁ ଏକ ତରଫା ଡିକ୍ରୀ ଦେଇ ଫେରିଗଲେ । ଏହାପର ମହାରାଜା ଭୂପାଳଦେଓ ୬୦ଖଣ୍ଡ ଗ୍ରାମ ହାରାଇଲେ । ସୋନପୁର ରାଜାଙ୍କ ଅନୁରୋଧରେ ଭୂପାଳ-ଦେଓଙ୍କ ପିତାମହ ଏହି ଗ୍ରାମମାନ ତାଙ୍କୁ ଦେଇ ଥିବାରୁ ଭୂପାଳଦେଓ ପିତାମହଙ୍କ ବାକ୍ୟ ଲଙ୍ଘନକରି ନପାରି ମୋକଦମାରେ ହାଜର ହେଲେ ନାହିଁ ।

ମହାରାଜା ଭୂପାଳଦେଓଙ୍କ ତିନିଜଣ ରାଣୀଥିଲେ । ୧ ଲକ୍ଷ୍ମୀଦେବୀ ୨ ବିମଳାଦେବୀ ୩ ଅହଲ୍ୟାଦେବୀ । ୧ମ ମହାରାଣୀଙ୍କ ଗର୍ଭରୁ ବଜ୍ରହୀରାଧର ଦେଓ ଜନ୍ମହେଲେ ଦ୍ୱିତୀୟା ରାଣୀ ଅପୁ-ତ୍ରିକ ଥିଲେ । ତୃତୀୟା ରାଣୀଙ୍କ ୬ଟି ପୁତ୍ରଥିଲେ । ୧ ବୈଜଳ-ସିଂହ ୨ ଅଜମ୍ବରସିଂହ ୩ ହଟ୍ଟ ହମିରସିଂହ ୪ ହମିରସିଂହ ୫ ଧବ୍ୟସିଂହ ୬ ମୁକୁନ୍ଦସିଂହ ଅଟନ୍ତି । ମହାରାଜା ଭୂପାଳଦେଓ କନିଷ୍ଠ ୬ଜଣ ପୁତ୍ରଙ୍କୁ ଅଠଗାଁ, ଟେଲ୍ଲଇସିଂହା, ସାଲେଭଟା, ଓ ଲୁଠାସିଂହାରୁ କସ୍ତୁାପାଠ ପର୍ଯ୍ୟନ୍ତ ଇଲକା ଦେଇଥିଲେ ।

ଭୂପାଳଦେଓ ଗଦିନସିନ ହେଲା ସମୟରେ ବୁଢ଼ାସମ୍ବର ଜମୀଦାର ମହାରାଜାଙ୍କ ପାଗ ବାନ୍ଧଦେଇ ପୂର୍ବ ପ୍ରଥା ଅନୁ-ସାରେ କେତେଖଣ୍ଡ ଗ୍ରାମ ମାଗିବାରୁ ବଳଭଦ୍ରରାଏ ଦେଓ୍ୟାନ କହିଲେ ଏହି ପାଗବନ୍ଧା ନିମନ୍ତେ ତୁମ୍ଭଙ୍କୁ ଅଗଲପୁର ବେଲପଡ଼ା ଘସିଏନ ଅାଦ ଅନେକ ଗ୍ରାମ ଦିଆଗଲାଣି ଅଢ଼

ଦଅଯିବ ନାହିଁ । ଏଣୁ ବୁଢ଼ାସମ୍ବର ଜମୀଦାର ମନରେ ପ୍ରତି-ହିଂସା ଭାବରଖି ଫେରିଗଲେ ।

ମହାରାଜ! ରାମଚନ୍ଦ୍ର ଦେଓ ଠାକୁରଦାସ ମାଝିଙ୍କୁ ଯାହ ଯେଉଁ ଜମୀଦାରୀ ଅଣିଥିଲେ ମହାରାଜା ଭୂପାଳଦେଓ ତାଙ୍କ ରାଜତ୍ୱ ସମୟରେ ସେହି ଜମୀଦାରୀକୁ ଠାକୁରଦାସ ମାଝିଙ୍କର ବଂଶଧର ଲୋକନାଥ ମାଝିଙ୍କୁ ପ୍ରତ୍ୟର୍ପଣ କରିଦେଲେ । ସେହି ଦିନଠାରୁ ଲୋକନାଥ ମାଝି ମହାରାଜାଙ୍କ ପ୍ରତି କୃତଜ୍ଞତା ଦେଖାଇ ମହାରାଜାଙ୍କର ଇଚ୍ଛା ଅନୁସାରେ କାର୍ଯ୍ୟକରି ଆସିଲେ । ଓ ମହାରାଜାଙ୍କୁ ଉଚିତ ଭକ୍ତି ଦେଖାଇ ଥିବାରୁ ମହାରାଜା ତାଙ୍କୁ ସିଂହ ଉପାଧି ଦେଲେ । ଲୋକ ନାଥ ସିଂହ ମାଝିଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଧର୍ମସିଂହ ମାଝି ଅଟଗାଁର ଜମୀଦାର ହେଲେ । ସେ ରାଜ ନୀତି କାର୍ଯ୍ୟରେ ଅତିପାରଦର୍ଶୀ ଥିବାରୁ ମହାରାଜା ଭୂପାଳ ଦେଓ ତାଙ୍କୁ ଦେୱାନ କାର୍ଯ୍ୟରେ ନିଯୁକ୍ତ କଲେ ଓ ତାଙ୍କୁ ମଧ୍ୟ ବଳଭଦ୍ର ରାଏଙ୍କ ପରି ପୂର୍ଣ୍ଣ କ୍ଷମତା ଦେଲେ ।

ସେହି ସମୟରେ ଇଂରେଜ ଶାସନ କର୍ତ୍ତାଙ୍କ କୋର୍ଟ ଅଫଓ୍ୱାର୍ଡସ୍ କ୍ଷମତା ଥିଲେ ମଧ୍ୟ ଭୋନ୍ସଲା ମାନେ ସୁ ନେଇ ଲଟାର କରି ଅନେକ ଧନ ସମ୍ପତ୍ତି ଲୁଟ ପାଟ କରି ନେଉଥିଲେ । ମଥୁଆଜି ନାମରେ ଜଣେ ମରହଟ୍ଟା ସେନାପତି କେତେ ସୈନ୍ୟ ଧରି ପାଟଣା ମହାରାଜଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଆସିଲା । ତାହାର ଦୁଇଟି ଭାର୍ଯ୍ୟା ଥିଲେ । ୧— ଅଦୀ ବାଈ ୨— ଦରହା ବାଈ । ସେମାନେ ମଧ୍ୟ ପତି ସଙ୍ଗରେ ଯୁଦ୍ଧ କ୍ଷେତ୍ରକୁ ଆସିଥିଲେ । ସେମାନେ ପାଟଣାରେ ପହଞ୍ଚିଲା ମାତ୍ରେ ଲୁଟପାଟ ଆରମ୍ଭ କଲେ । ଏହା ଦେଖି ପାଟଣା ମହାରାଜା ପାଟଣା ସୈନ୍ୟ ନେଇ ସେମାନଙ୍କ ସହ ଯୁଦ୍ଧ

କଲେ । ମହାରାଜା ଯୁଦ୍ଧରେ ପରାଜିତ ହୋଇ ଭୋଜପୁର ଗଡ଼ରେ ଆଶ୍ରୟ ନେଲେ । ଭୁବନପୁର ଓ ଭୋଜପୁରର ଗଡ଼ତିଆମାନଙ୍କୁ ଏମାନଙ୍କ ସଙ୍ଗରେ ଲଢ଼ାଇ କରିବାକୁ ଆଦେଶ ଦେଲେ । ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ପୃଥ୍ୱୀରାଜ ନିହତ ହେଲେ । ଅନନ୍ତର ତାହାଙ୍କର ପୁତ୍ର ପଚ୍ଛୀ ହାତୀ ଉପରେ ବସି ଲଢ଼ାଇ କରିବାକୁ ଲାଗିଲେ । ଭୋଜପୁର ଗଡ଼ର କବାଟ ହାତୀ ଦ୍ୱାରା ଭାଙ୍ଗି ଭିତରକୁ ପ୍ରବେଶ କରିବାର ଚେଷ୍ଟା କଲେ । ଗଡ଼ ଦ୍ୱାର ରକ୍ଷୀ ଅଦଲ ମଲ୍ଲିକ କାଣ୍ଡରେ ହାତୀକୁ ମାରି ଦେବାରୁ ପାଟଣା ଓ ପରହନ୍ଥା ସୈନ୍ୟ ମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଅବଶେଷରେ ଗୋଟିଏ ଗୋଲି ଆସି ଅଦଲ ମଲ୍ଲିକର ଗୋଡ଼ରେ ବାଜିବାରୁ ସେ "ରଙ୍କା ସର୍ଣ୍ଣୀ" ଗଡ଼କୁ ପଳାଇ ଆଶ୍ରୟ ନେଲା । ଏହି ଗଡ଼ ଦ୍ୱାରରେ ଅଜ ଜଣେ ଜଗି ରହିଲା । କ୍ରମେ୨ ପାଟଣା ସୈନ୍ୟମାନଙ୍କ କାଣ୍ଡ ଶେଷ ହେବାକୁ ବସିବାରୁ ଗଡ଼ର ଅଧିଷ୍ଠାତ୍ରୀ ଦେବୀ ବାଉଁଶର ଧନୁ କାଣ୍ଡରେ ଲଢ଼ାଇ କରିବାକୁ ଆଦେଶ ଦେଲେ । ପାଟଣା ସୈନ୍ୟମାନେ ସେହି ବାଉଁଶର ଧନୁ କାଣ୍ଡରେ ଲଢ଼ାଇ କରି ଯୁଦ୍ଧରେ ଜୟୀ କଲେ । ପରହିନ୍ଥା ସୈନ୍ୟ ମାନେ ହାରି ପଳାଇ ଗଲେ । ମହାରାଜା ଏହା ଶୁଣି ଆନନ୍ଦ ହୋଇ ପାଟଣା ଗଡ଼କୁ ଫେରିଗଲେ ।

ଏହାପରେ ବୁଢ଼ା ସମ୍ବର ଜମୀଦାର ରାମଲାଲ ବରିହା ବଳଭଦ୍ର ରାଏ ଦେଓ୍ୟାନ ତାହାଙ୍କ ଦାବୀ ଉଠାଇ ଦେଲେ ବୋଲି ସେଇଁ ପ୍ରତିହିଂସା ନେବାକୁ ସଂକଳ୍ପ କରି ଥିଲେ ତହିଁ ନିମନ୍ତେ ସେ ସୈନ୍ୟ ସଜ୍ଜ ଆସି ବାଦବାହାଲରେ ଥିବା ବଳଭଦ୍ର ରାଏଙ୍କ ସଙ୍ଗେ ଲଢ଼ାଇ କଲେ । ଯୁଦ୍ଧରେ ରାମଲାଲ ବରିହା ବଳଭଦ୍ର ରାଏଙ୍କୁ ପରାସ୍ତ କରି ତାଙ୍କ ମୁଣ୍ଡ କାଟି

ନେଲେ । ତାହାଙ୍କୁ ଦଅ ଯାଇଥିବା ଦେଓ୍ୟାନ ମୃଦଟି ମଧ୍ୟ ଫିଟାଇ ନେଲେ । ଅଙ୍ଗ ନଦୀ ମଧ୍ୟରେ କଜସ୍ବ ପଡ଼ଳା ଗାଡ଼ ଦେଇ ବୁଢ଼ା ସମ୍ବରକୁ ଫେର ଗଲେ ।

ଏହା ଶୁଣି ମହାରାଜା ଭୂପାଳ ଦେଓ ବୁଢ଼ା ସମ୍ବର ଜମୀଦାର ରାମଲାଲ ବରିହା ବିରୁଦ୍ଧରେ ଯୁଦ୍ଧ ଯାତ୍ରା କଲେ । ରାଇ ସିଲଟି ଗ୍ରାମରେ ସୈନ୍ୟ ଛାଉଣୀକର ଗୋଟିଏ ଘରରେ ଗୋଲା ବାରୁଦ ରଖି ଥିଲେ । ଅକସ୍ମାତ୍ ତହିଁରେ ନିଆଁ ଲଗି ଯିବାରୁ ସମସ୍ତ ପୋଡ଼ି ନଷ୍ଟ ହୋଇଗଲା । ତେଣୁ ସେ ଖାଲି ସୈନ୍ୟ ନେଇ ଲଢ଼ାଇ ଇଚ୍ଛା କରି ବୁଢା ସମ୍ବଲଗଲେ କିନ୍ତୁ ପରାଜିତ ହୋଇ ଫେର ଆସିଲେ । ରାମଲାଲ ବରିହା ୩୦୦୦ ସୈନ୍ୟ ଧରି ମହାରାଜା ସାଲେଭଟାରେ ଅଛନ୍ତି ବୋଲି ଲଢ଼ାଇ କରିବାକୁ ଅସିଲେ । ରାସ୍ତାରେ ସୁଖା ଜମୀଦାର ଭାଵ ସିଂହ ତାଙ୍କୁ କହିଲେ । "ଅପଣ ବୃଥାରେ ବାହିଁକି ଲଢ଼ାଇ କରିବାକୁ ଯାଉ ଅଛନ୍ତି । ପାଟଣା ମହାରାଜ ଅନେକାନେକ ସୈନ୍ୟ ନେଇ ସାଲେଭଟାରେ ଅଛନ୍ତି । ଅପଣଙ୍କ ଏହି ଅଳ୍ପ ମାତ୍ର ସୈନ୍ୟ ମୂହୁର୍ତ୍ତକ ମଧ୍ୟରେ ଦଳି ହୋଇ ଯିବେ । ବୃଥାରେ ଯାଅନ୍ତୁ ନାହିଁ । ଏହିଠାରୁ ଫେର ଯାଅନ୍ତୁ ।" ଏହାଶୁଣି ରାମ ଲାଲ ବରିହା ଭୟ ପାଇ ସେଠାରୁ ଫେରଗଲେ । ମହାରାଜା ସୁଖାଜମୀଦାରଙ୍କ ପ୍ରତି ସନ୍ତୁଷ୍ଟ ହୋଇ ବହୁ ମୂଲ୍ୟ ଅଳଙ୍କାର ଉପହାର ଦେଲେ ଓ କେତେ ବର୍ଷ ପର୍ଯ୍ୟନ୍ତ ଫାଂସଡ଼ା ଅଦ କେତେ ଖଣ୍ଡ ଗ୍ରାମର ମାଲ ଗୁଜାର ଭୋଗ କରିବାକୁ ଅଦେଶ ଦେଲେ ।

ଅନନ୍ତର ବୁଢ଼ା ସମ୍ବର ଜମୀଦାରଙ୍କଠାରୁ ପ୍ରତିଶୋଧ ନେବାକୁ ମହାରାଜା ଭୁପାଳ ଦେଓ ଅଟଗାଁ ଜମୀଦାର ଧର୍ମ ସିଂହଙ୍କ ଜମାରେ କେତେ ସୈନ୍ୟ ଦେଇ ରାମଲାଲ ବରିହା

ସଙ୍ଗେ ଲଢ଼ାଇ କରିବାକୁ ପଠାଇଲେ । ଧର୍ମ ସିଂହ ଓ ରାମଲାଲ୍ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ରାମଲାଲ୍ ପରାସ୍ତ ହୋଇ ଯିବାରୁ ଧର୍ମ ସିଂହ ତାଙ୍କୁ ମହାରାଜାଙ୍କ ନିକଟକୁ ଧରି ଆଣିଲେ । ରାମଲାଲ୍ ମହାରାଜାଙ୍କ ଗୋଡ଼ ତଳେ ପଡ଼ି କ୍ଷମା ପ୍ରାର୍ଥନା କରିବାରୁ ମହାରାଜା ତାଙ୍କୁ ବନ୍ଧନରୁ ମୁକ୍ତ କରି ଭବିଷ୍ୟତରେ ଏପରି ନ କରିବାକୁ ତାକିଦ୍ କରି ଛାଡ଼ିଦେଲେ ଓ ଧର୍ମସିଂହ ଜମୀଦାରଙ୍କ ପ୍ରତି ଅତିଶୟ ସନ୍ତୁଷ୍ଟ ହୋଇ ମାନଧାତା ଉପାଧି ଦେଲେ । ଏବଂ ପଇତା ବ୍ୟବହାର କରିବାକୁ ଆଦେଶ ଦେଲେ । ସେ ଦିନଠାରୁ ତାଙ୍କର ବଂଶଧର ମାନେ ମାନଧାତା ଉପାଧି ଗ୍ରହଣ କରି ପଇତା ବ୍ୟବହାର କରି ଆସୁଅଛନ୍ତି ।

କିଛିଦିନ ପରେ ବସ୍ତର ବେନ୍ଦ୍ରା ନୂଆ ଗଡ଼ ଓ ପାଟଣା ମଧ୍ୟରେ ସୀମା ସମ୍ବନ୍ଧରେ ଗୋଲମାଲ୍ ହେଲା । ତେଣୁ ମହାରାଜା ଧର୍ମସିଂହଙ୍କ ଜିମାରେ କେତେ ସୈନ୍ୟ ଦେଇ ଗୋଲ୍ ମାଲ୍ କାରୀଙ୍କୁ ଧରି ଆଣିବାକୁ ଆଦେଶ ଦେଲେ । ଆଦେଶ ଅନୁସାରେ ଧର୍ମ ସିଂହ ସେମାନଙ୍କୁ ଧରି ଆଣି ଦଣ୍ଡ ଦେଲେ । ଘଣ୍ଟ ପଡ଼ା ଇଲାକାରେ କେତେ ଜଣ କିଚାଏତ ବାହାରି ଅତ୍ୟାଚାର କରିବାରୁ ଧର୍ମ ସିଂହ ଜମୀଦାର ଅନେକ ସୈନ୍ୟ ନେଇ ସେମାନଙ୍କ ସଙ୍ଗରେ ଲଢ଼ାଇ କରି ଦମନ କଲେ । ଓ ରାଜ୍ୟ ମଧ୍ୟରେ ଶାନ୍ତି ସ୍ଥାପନ କଲେ । ଏହି ହେତୁରୁ ମହାରାଜା ତାଙ୍କ ପ୍ରତି ବିଶେଷ ସନ୍ତୁଷ୍ଟ ହୋଇ ଅଠଗାଁ ଜମୀଦାରୀ ପୁତ୍ର ପୌତ୍ରାଦି କ୍ରମେ ଭୋଗ କରିବାକୁ ଆଦେଶ ଦେଲେ । ତେଣୁ କରି ଧର୍ମସିଂହଙ୍କ ଉତ୍ତରାଧିକାରୀମାନେ କ୍ରମରେ ସେହି ଜମୀଦାରୀ ଭୋଗ କରି ଆସୁଅଛନ୍ତି । ଧର୍ମ ସିଂହ ମାନଧାତାଙ୍କ ଉତ୍ତାରୁ ଉଦେ ସିଂହ ମାନଧାତା ଜମୀଦାର ହେଲେ ।

ତାଙ୍କପରେ କୁମର ସିଂହ ମାନଧାତା ତାଙ୍କପରେ ତାଙ୍କ ପୁତ୍ର କ୍ଷିତୀନ୍ଦ୍ର ସିଂହ ମାନଧାତା ବର୍ତ୍ତମାନର ଜମିଦାର୍ ହୋଇ ଅଟଗାଁ ଜମୀଦାରୀ ଭୋଗ କରୁ ଅଛନ୍ତି । ଏ ଜଣେ ପରୋପକାରୀ ଜମୀଦାର ଅଟନ୍ତି ।

ମହାରାଜା ଭୂପାଳ ଦେଓ ଅତି ଦୟାଳୁ ଓ ଦାନଶୀଳ ରାଜା ଥିଲେ । ସେ ବ୍ରାହ୍ମଣମାନଙ୍କୁ ଅର୍ଥଦାନ ଓ ଭୂମିଦାନ କରି ଚିରସ୍ମରଣୀୟ ହୋଇଅଛନ୍ତି ।

ତାଙ୍କର ଦାନର ତାଲିକା ନିମ୍ନରେ ଦିଆ ଗଲା ।

୧—ପାଟଣା ଗଡ ବଳଦେବ ଠାକୁରଙ୍କ ପୂଜା ନିମନ୍ତେ ଶିବତଳା । ଭଟଲି ଓ ହଲି ଗ୍ରାମ ମାଫିରେ ଦେଇ ଥିଲେ ।

୨—ଗଙ୍ଗା ଷଡଙ୍ଗୀ ନାମକ ଜଣେ ବ୍ରାହ୍ମଣଙ୍କୁ ଖମାର ମୁଣ୍ଡା ଗ୍ରାମ ମାଫିରେ ଦାନ କରି ଥିଲେ ।

୩—ଗଙ୍ଗାଧର ମିଶ୍ର ନାମକ ଜଣେ ବ୍ରାହ୍ମଣଙ୍କୁ ଗୋଟିଏ ଜଙ୍ଗଲ ଦେଇଥିଲେ ତହିଁରେ ସେ ଦାଣ୍ଡପାଲି ଓ ଖଲିଅ ପାଲି ଗ୍ରାମ ଦୁଇଖଣ୍ଡ ବସାଇ ଅଛନ୍ତି ।

୪—ଲଛନୁ ପୁରୋହିତଙ୍କୁ ବିଲାଇ ସାଥି ଗ୍ରାମ ଦେଇ ଥିଲେ ।

୫—ଗୋବିନ୍ଦ ବାବୁଙ୍କୁ ଧର୍ମ ଉଦ୍ଦେଶ୍ୟରେ ସର୍ଣ୍ଣୀକଟା ଗ୍ରାମ ମାଫି ଦେଲେ ।

୬—ହରିଅର ସିଂହ ନାମକ ଜଣେ ତାଙ୍କର ଭୃତ୍ୟଙ୍କୁ ଲଛଠୋର, ବାଲି ଖମାର ଓ ସେମଲିଅ ଗ୍ରାମ ମାଫି ଦେଇ ଥିଲେ ।

୭—ଜଙ୍ଗ ବାହାଦୁରଙ୍କୁ ଅଗଲ୍ପ ପାଲି ଗ୍ରାମ ମାଫି ଦେଲେ । ଏହି ଜଙ୍ଗ ବାହାଦୁର ମହାରାଜା ଭୂପାଳ ଦେଓଙ୍କ ଅନ୍ୟର ପୁତ୍ରର ପୁତ୍ର ଅଟନ୍ତି ।

୮—ପ୍ରତାପ ସିଂହଙ୍କୁ ଉପର-ଲଡ଼୍ହାର ଗ୍ରାମ ଦେଲେ ।

୯—ବଳରାମ ସିଂହ ବାବୁଙ୍କୁ ଦେଓ୍ୟାନ ପାଲି, ବରବହାନି, ଚରଇ ମଣ୍ଡ, ଗ୍ରାମ ମାଫି ଦେଲେ ।

୧୦—ମହାରାଜାଙ୍କ ମାତା କମଳା ଦେବୀ ? ଓଡ଼ିଶା ଜଗନ୍ନାଥଙ୍କୁ ଡୁମେରପାଲି ଗ୍ରାମ ଚଢ଼ାଇ ଦେଲେ ।

୧୧—ମହାରାଜା ଭୂପାଳ ଦେଓ ପୁରୁଷୋତ୍ତମ ସିଂହଙ୍କ ଦୁହିତାଙ୍କୁ ରାଣୀ କରି ଥିବାରୁ ତାଙ୍କୁ ରଣ୍ଡା, ମେହର-ମୁଣ୍ଡା, ଗଢ଼ଚାୟା ମୁଣ୍ଡା ଚନ୍ଦ୍ରପୁର, ଖୋରାକ ପୋଷାକ ଦାର ସ୍ୱରୂପ ଦେଲେ ।

୧୨—ସମଲେଶ୍ୱରୀ ଦେବୀଙ୍କ ପୂଜା ପାଇଁ ଗୁଣ୍ଡି ସମଲାଇ ଗ୍ରାମ ମାଫି ଦେଲେ ।

୧୩—ଧର୍ମ ବେହେରା ନାମକ ଜଣେ ଭିତରିଆ ଗୃହକରଙ୍କୁ ଗୃହକର୍ମ ନିମନ୍ତେ କିରବାହାଲ ଗ୍ରାମ ମାଫି ଦେଲେ ।

୧୪—ସାଢ଼ନ୍ତାଇ ଦେବୀଙ୍କ ପୂଜା ନିମନ୍ତେ ତେରଙ୍ଗାବାହାଲ ଅଇଁଲା ସାରଗ୍ରାପ ମାଫିରେ ଦେଲେ ।

ଏହାଙ୍କ ରାଜତ୍ୱ ସମୟରେ ତୃତୀୟ ରଘୁଜି ଭୋନ୍ସଲାଙ୍କ ନାବାଳକ ଅବସ୍ଥା ଅତିକ୍ରାନ୍ତ ହେଲାରୁ ଇଂରାଜ ସରକାର ତାଙ୍କୁ ନାଗପୁର ରାଜ ଗାଦିରେ ବସାଇ କ୍ଷମତା ଦେଲେ ଓ ତାଙ୍କର ରାଜ୍ୟ କୋର୍ଟଅଫ ଓ୍ୟାର୍ଡ୍ସରୁ ମୁକ୍ତ କରି ଦେଲେ । ତେଣୁ କରି ମହାରାଜା ଭୂପାଳ ଦେଓ ଏହି ରଘୁଜି ଭୋନ୍ସଲାଙ୍କ-ଠାରେ କର ଦାଖଲ କରି ତାହାଙ୍କର ସାମନ୍ତ ରାଜା ହୋଇ ଥିଲେ ।

ସେ ୧୮୪୮ ଖ୍ରୀଃ ଅଃ ରେ ପରଲୋକ ଗମନ କଲେ ।



## ହୀରା ବଜ୍ରଧର ଦେଓ ।

## ୧୮୪୮—୧୮୭୬ ଖ୍ରୀ: ଅ:

ମହାରାଜା ଭୂପାଳ ଦେଓଙ୍କ ପରେ ମହାରାଜା ହୀରା ବଜ୍ରଧର ଦେଓ ପାଟଣା ସିଂହାସନରେ ଅଭିଷିକ୍ତ ହେଲେ । ଏହି ମହାରାଜା ମଧ୍ୟ ନାଗପୁର ରାଜା ୩ୟ ରଘୁଜି ଭୋନ୍ସଲଙ୍କ ସାମନ୍ତ ରାଜା ସ୍ୱରୂପ ହୋଇ ରହି ନାଗପୁରକୁ କର ପଠାଉଥିଲେ । ୧୮୫୩ ଖ୍ରୀ: ଅ: ରେ ୩ୟ ରଘୁଜି ଭୋନ୍ସଲ ଅପୁତ୍ରିକ ହୋଇ ମୃତ୍ୟୁ ହେବାରୁ ବ୍ରିଟିଶ ଗଭର୍ଣ୍ଣର ଜେନେରେଲ ମାର୍କୁଇଶ ଅଫ ଡ଼େଲ୍ହଉସି ନାଗପୁର ଓ ତହିଁର ସମସ୍ତ ସାମନ୍ତ ରାଜ୍ୟ ଅଧିକାର କରି ଇଷ୍ଟ ଇଣ୍ଡିଆ କମ୍ପାନିର ଅଧିକାର କରି ଦେଲେ । ଏପରି ଭାବରେ ପାଟଣା ସମ୍ବଲପୁର ଓ ଖଡ଼ିଆଳ ରାଜ୍ୟ ଇଂରାଜ ସରକାରଙ୍କ ଅଧୀନ ହେଲା । ସେହି ଦିନଠାରୁ ପାଟଣା ଆଦି ରାଜ୍ୟର ରାଜାମାନେ ଇଂରେଜ ସରକାରଙ୍କ ଠାରେ ଟକୋଲି ସ୍ୱରୂପ କର ଦାଖଲ କଲେ ।

୧୮୫୭ ଖ୍ରୀ: ଅ: ସେପ୍ଟେମ୍ବର ମାସରେ ଭାରତୀୟ ସିପାହି ବିଦ୍ରୋହ ଆରମ୍ଭ ହେଲା । ସେ ସମୟରେ ଜୟନ୍ତ ସାଏ (ଉଜ୍ଜ୍ୱଳ ସାଏ) ଓ ସୁନ୍ଦର ସାଏ ସମ୍ବଲପୁର ଗାଦି ନିମନ୍ତେ ଗୋଲମାଲ କରିବାରୁ ଇଂରେଜ ସରକାର ସେମାନଙ୍କୁ ଧରି-ନେଇ ହଜାରିବାଗ ଜେଲରେ ବନ୍ଦକରି ଥିଲେ । ବିଦ୍ରୋହୀ ସିପାହିମାନେ ସେମାନଙ୍କୁ ଜେଲଖାନାରୁ ମୁକ୍ତ କରି ଦେବାରୁ ସେମାନେ ସମ୍ବଲପୁରକୁ ଫେରିଆସି ସମ୍ବଲପୁରର ସମସ୍ତ ଜମୀଦାର ଓ ଜମିଦାରମାନଙ୍କୁ ମେଳକରି ଜୟନ୍ତ ସାଏ ବଳ ପୂର୍ବକ ସମ୍ବଲପୁର ଗାଦି ଅଧିକାର କରିବାର ଚେଷ୍ଟା-କଲେ ଓ ସମ୍ବଲପୁରର ରାଜା ବୋଲି ସବୁ ଆଡ଼େ ପ୍ରଚାର

କଲେ । ଏ ସମୟରେ ଏସିଷ୍ଟେଣ୍ଟ ଗଭର୍ଣ୍ଣର ଅଫ ଇଣ୍ଡିଆ କେପଟେନ ଲିଙ୍କ ଅଧୀନରେ ଏହି ସମ୍ବଲପୁର ଆଦି ରାଜ୍ୟମାନ ଥିଲା । ସେ ଅନେକ ଗୁଡ଼ିଏ ମାନ୍ଦ୍ରାଜୀ ପଲଟନ ନେଇ ଏହାଙ୍କ ସଙ୍ଗରେ ଲଢ଼ାଇ ଆରମ୍ଭ କଲେ । ଉଦନ୍ତ ସାଏ ଓ ସୁନ୍ଦର ସାଏ ଯୁଦ୍ଧରେ ହାରିବାରୁ ପାହାଡ଼ ପର୍ବତକୁ ବାହାରି ଯାଇ ଲୁଚିଲେ । ଏମାନଙ୍କୁ ଅନୁସନ୍ଧାନ କରି ବାହାର କରିବାକୁ କେପଟେନ ଲି ଅନେକ ସୈନ୍ୟ ପଠାଇଲେ । ସେମାନେ ଅନେକ ସ୍ଥଳରେ ଖୋଜି ଚାହିଁ ପାଇଲେ ନାହିଁ । ଶେଷରେ ହତାଶ ହୋଇ ଫେରି ଗଲେ । ଏଥି ଉତ୍ତାରୁ ଉଦନ୍ତ ସାଏ ପାଟଣା ଗଡ଼କୁ ଲୁଚି ବାହାରି ଆସି ମହାରାଜା ହୀରାବଜ୍ର ଧର ଦେଓଙ୍କ ଅଧୀନରେ ରହିଲେ । ସେ ସମୟରେ ହରିଅର ସିଂହ ପାଟଣା ରାଜ୍ୟର ମନ୍ତ୍ରୀ ଥିଲେ ।

ଇଂରେଜ ସରକାରଙ୍କ ସେନାପତି ରୂପ ସିଂହ ଏହି ଖବର ପାଇ ପାଟଣାକୁ ଆସି ଦେଓମାନଙ୍କ ସଙ୍ଗରେ ପରାମର୍ଶ କରି ଏହାଙ୍କୁ ଧରି ନେବାର ଚେଷ୍ଟା କଲେ । ସେମାନେ ଦୁହେଁ ( ହରିଅର ସିଂହ ଓ ରୂପ ସିଂହ ) ମହାରାଜାଙ୍କୁ ଅନେକ ଭୟ ଦେଖାଇ ଉଦନ୍ତ ସାଏଙ୍କୁ ଛାଡ଼ି ଦେବାକୁ କହିବାରୁ ମହାରାଜା କହିଲେ ମୁଁ ନିଜେ ତାଙ୍କୁ ନେଇ ଇଂରାଜ ସରକାରଙ୍କଠାରେ ସମର୍ପଣ କରି ଆସିବି, ଅନନ୍ତର ରୂପସିଂହ ସମ୍ବଲପୁରକୁ ଫେରିଗଲେ । କିଛିଦିନ ପରେ ପାଟଣା ମହାରାଜ ତାଙ୍କୁ ନେଇ ଇଂରେଜ ସରକାରଙ୍କ ଅଧୀନ କରି ଦେଲେ ।

୧୮୫୮ ଖ୍ରୀ: ଅ: ରେ ଇଷ୍ଟ ଇଣ୍ଡିଆ କମ୍ପାନି ଅଧିକୃତ ରାଜ୍ୟମାନ କମ୍ପାନିଙ୍କ ହସ୍ତରୁ ଚାଲି ଯାଇ ଇଂରେଜ ସମ୍ରାଟଙ୍କ ଅଧୀନରେ ରହିବାରୁ ପାଟଣା ଆଦି ରାଜ୍ୟର କର ସମ୍ରାଟଙ୍କ

ଖାଲସାରେ ଯାଇଁଲା ହେଲା ଓ ରାଜାମାନେ ଇଂରେଜ ସରକାରଙ୍କ ସାମନ୍ତ ରାଜା ହୋଇ ରହିଲେ । ତାହାଙ୍କର ସବୁ ଆଦେଶ ମାନି ଚଳିଲେ ।

ମହାରାଜା ସ୍ୱର୍ଗୀୟ ବଜ୍ରଧର ଦେଓଙ୍କ ତିନି ପୁତ୍ର ଥିଲେ । ୧—ଶୂରପ୍ରତାପ ଦେଓ ୨—ବିଶ୍ୱନାଥ ସିଂହ ୩—ଦଳଗଞ୍ଜନ ସିଂହ । ଏହାଙ୍କ ସମୟରେ ମଧ୍ୟ କଳାହାଣ୍ଡିରେ ଟଙ୍କା ପଇସା କିଛି ନ ଥିବାରୁ କଳାହାଣ୍ଡିର ପ୍ରଜାମାନେ ଗାଈ ବଳଦ ପୋଢ଼ ମହିଷୀ ଧାନ ଗୁଡ଼ଲ ଆଦି କର ସ୍ୱରୂପ ଦେଉଥିଲେ । ତାହା କର୍ମଚାରୀମାନଙ୍କୁ ବେତନ ପରି ଦିଆ ଯାଉଥିଲା । ଏହାଙ୍କ ସମୟରେ ସୁବରାଜ ସିଂହଙ୍କ ପାଳିକା ମାତା ମୃତ ହେବାରୁ ତାଙ୍କର ସିନ୍ଦୂର ଟିକା ଗ୍ରାମ ଭାଲେର, ପୁଡ଼ାପାଲି କୁରୁଲ, ଗଇଗ୍ଲା, ଧୁଙ୍ଗିଟିଲା, ଭୁର୍ଜା ଖୋଟ ସଙ୍ଗେ ସାମିଲ ହୋଇ ଗଲା ।

ମହାରାଜା ତାହାଙ୍କର ୨ୟ ପୁତ୍ର ବିଶ୍ୱନାଥ ସିଂହଙ୍କୁ କଳାହାଣ୍ଡି ଇଲାକାରେ ଥିବା ଲୁହା, ବୁଡ଼ୁକା ଓ ବଡ଼ ବୁଡ଼ୁକା ଗ୍ରାମ ସିନ୍ଦେକେଲା ଗଡ଼ତିଆଙ୍କ ଠାରୁ ଛଡ଼ାଇ ସମର୍ପଣ କଲେ । ଓ ସିନ୍ଦେକେଲା ଗଡ଼ତିଆଙ୍କୁ ଏହାଙ୍କର ଅଧୀନ ବୋଲି ଘୋଷଣା କରି ଦେଲେ । ବିଶ୍ୱନାଥ ସିଂହ ସିନ୍ଦେକେଲାରେ ରାଜଧାନୀ କରି ରହିଲେ ।

ବୈଜଳ ସିଂହ, ଅଜାମ୍ବର ସିଂହ, ହଠ ହମିର ସିଂହ, ହୁମେର ସିଂହ, ଦିବ୍ୟସିଂହ, ମକୁନ୍ଦ ସିଂହ ଆଦି ରାଜା ଭୂପାଳ ଦେଓଙ୍କ ଛଅଜଣ ପୁତ୍ରଙ୍କୁ ଦିଆଯାଇ ଥିବା ଅଠଗାଁ, ଲୋଇସିଂହା ସାଲେଭଟା ଇଲାକାମାନଙ୍କରୁ ସେମାନଙ୍କୁ ବେଦଖଲ କରି ଦେବାରୁ ସେମାନେ ଗୋଲମାଲ କରିବାକୁ ଲାଗିଲେ । ସେମାନେ ମହାରାଜାଙ୍କ ବିରୁଦ୍ଧେ ଇଂରେଜ ସରକାରଙ୍କଠାରେ

ଅର୍ପି ଦେଲେ । ଅର୍ପିର ଫଳରେ ବୈଜଳ ସିଂହ ଆଦ ଭାଇମାନେ ଅଗଲ ପୁର ମନୁପାଲି ଆଦ ୭୬ ଖଣ୍ଡ ଗ୍ରାମ ଦଖଲ ପାଇଲେ । ତାହା ସେମାନଙ୍କ ମଧ୍ୟରେ ପୃଥକ ୨ ଭାବରେ ବାଣ୍ଟି ଦିଆ ପାଇଥିଲା । ଜ୍ୟେଷ୍ଠ ବୈଜଳ ସିଂହ ଅଗଲ ପୁରରେ ରାଜଧାନୀ କରି ରହିଲେ । ତାହାଙ୍କର ତିନିପୁତ୍ର ଥିଲେ । ୧—ମଦନ ମୋହନ ସିଂହ ୨ ଧ୍ରୁବରାଜ ସିଂହ ୩ ବାଲଅର ସିଂହ । ମଦନ ମୋହନ ସିଂହଙ୍କ ପୁତ୍ର ଚନ୍ଦ୍ର ଶେଖର ସିଂହ । ସେ ବର୍ତ୍ତମାନ ଅଗଲ ପୁରର ଜମୀଦାର ବା ଖୋରାକ ପୋଷାକ-ଦାର ଅଛନ୍ତି । ଧ୍ରୁବରାଜ ସିଂହଙ୍କର ପୁତ୍ର ଲାଲ ଲକ୍ଷ୍ମୀ ନାରାୟଣ ସିଂହ ଅଛନ୍ତି । ସେ ବି: ଏ: ବି: ଏଲ ପାସ କରି ପାଟଣା ଷ୍ଟେଟର ସିଭିଲ ଅଫିସର କାର୍ଯ୍ୟରେ ନିଯୁକ୍ତ ହୋଇ ଅଛନ୍ତି ।

ହୀରା ବଜ୍ରଧର ଦେଓ ଜଣେ ଦାନୀ ରାଜା ଥିଲେ । ସେ ବ୍ରାହ୍ମଣମାନଙ୍କୁ ଯେଉଁ ଗ୍ରାମମାନ ଦାନ କରି ଥିଲେ । ତାହାର ତାଲିକା ନିମ୍ନରେ ଦିଆ ଗଲା ।

୧—ବସ୍ତ୍ରାଧାରିଣୀ ଦେବୀଙ୍କ ପାଇଁ ପୋଡ଼ ମୁଣ୍ଡ, ସାନ ତେଲେନ ବଡ ତେଲେନ, କଙ୍କ୍ରା, ଗର୍ଜନ, ଦେବୋତ୍ତର ମାଫିରେ ଦେଇ ଥିଲେ ।

୨—ଚମର ମିଶ୍ରଙ୍କୁ ଛତା ମଖନା ଗ୍ରାମ ମାଫି ଦେଲେ ।

୩—ଫକୀର ମିଶ୍ରଙ୍କୁ ଧମନା ସର ଗ୍ରାମ ମାଫିଦେଲେ ।

୪—ଗୋପାଳ ପାଣିଗ୍ରାହୀଙ୍କୁ ତଣ୍ଡା ମୁଣ୍ଡା ଗ୍ରାମ ଦେଲେ ।

୫—ଜନାର୍ଦ୍ଦନ ପୋଷଙ୍କୁ ଦେଗାଁ ଗ୍ରାମ ଦେଲେ ।

୬—ହୃଷି ଯୋଷିଙ୍କୁ ବାଙ୍କି ବାହାଲ ଗ୍ରାମ ଦେଲେ ।

୭—ନାରାୟଣ ତ୍ରିପାଠିଙ୍କୁ ରାମ ସିଂହା ଗ୍ରାମ ଦେଲେ ।

୮—ଗୋପାଳ ପାଣିଗ୍ରାହୀଙ୍କୁ ସିନ୍ଦୁର ବାହାଲ ଗ୍ରାମ ଦେଲେ

୯—ଶୂର ପ୍ରତାପ ଦେଓଙ୍କ ରାଣୀ ଅମୃତକୁମାରୀଙ୍କୁ ମାଧିଆ ପାଲି ଗ୍ରାମ ଦେଲେ ।

୧୦—ବୈଜସିଂହ ବାବୁଙ୍କୁ ଭରଥ, ଦମାଇ ପାଲି, ଭଟଲି, କେଗ୍ଲେ ବାହାଲ, ଗଜର ପାଲି, କସ ବାହାଲି, ମଙ୍କସ ଖମନ, ମାଫି ଦେଇଥିଲେ । ଏଥିରୁ ଭଟଲି, କେଗ୍ଲେ ବାହାଲ, କସ ବାହାଲି, ଧଜସ ଖମନ ଷ୍ଟେଟ ସାମିଲ ହୋଇ ଗଲାଣି ।

୧୧—ବୈମତୀ ଦଶମତୀ, ଅଣମତୀ ଦେବୀ ମାନଙ୍କ ପୂଜା ପାଇଁ ଭରତ ବାହାଲ ଗ୍ରାମ ମାଫି ଦେଲେ ।

୧୨—ତାଙ୍କର ପୋଷ୍ୟ ପୁତ୍ର ଭବାନୀ ସିଂହଙ୍କୁ ଝୁଲେନ ବର ସୋଲ ବଲ ଗ୍ରାମ ଦ୍ୱୟ ଖୋରାକ ପୋଷାକ ଦାଏ ପର ଦେଲେ ।

୧୩—ବନବିହାରୀ ମହା ପ୍ରଭୁଙ୍କର ପୂଜା ପାଇଁ ଫାଗତ ଗ୍ରାମ ଦେଲେ ।

୧୪—ଶ୍ୟାମସୁନ୍ଦର ଭଞ୍ଜଙ୍କୁ ନୌକର ପାଇଁ ବାଲଭନା ଗ୍ରାମ ଖୋରାକ ପୋଷାକ ଦେଇଥିଲେ । ସେ ନୌକର ବିଧିମତେ ନ କରିବାରୁ ଗ୍ରାମ ଜପ୍ତ ହୋଇଗଲା ।

୧୫—ନାରାୟଣ ସିଂହଙ୍କ ପୁତ୍ର ଭାବ ସିଂହଙ୍କୁ ଫଟା ଯମୁଣ୍ଡିଅ ଗ୍ରାମ ଖୋରାକ ପୋଷାକ ଦାଏ ସ୍ୱରୂପ ଦେଇ ଥିଲେ ।

୧୬—ମୁକୁନ୍ଦଭଞ୍ଜଙ୍କୁ ବରବାଣ ଗ୍ରାମ ମାଫି ଦେଲେ ।

୧୭—ତାହାଙ୍କର ଅନ୍ୟ ପୁତ୍ର, ଘନ ବାବୁଙ୍କୁ ଖଲିଅପାଲି ଗ୍ରାମ ଦେଇଥିଲେ । କିନ୍ତୁ ଡେପୁଟି କମିସ୍ନର ମିଃ ଏମ୍ଃ ଏମ୍ଃ ବୋଇ ଏହି ଖଲିଅ ପାଲି ଗ୍ରାମର ପୂର୍ବ ଗୌନ୍ତ୍ୟାରୁ ସେହି ଗ୍ରାମ ଓାପସ ଦେଇ ଏହାଙ୍କୁ ରେଙ୍ଗାଲି ଗ୍ରାମ ମାଫିଦେଲେ ।

ଏହି ପାଟଣା ରାଜ୍ୟ ସମ୍ବଲପୁର ସଙ୍ଗେ ମିଶି ୧୮୫୨-୧୮୫୭ ଖ୍ରୀ: ଅ: ପର୍ଯ୍ୟନ୍ତ ଏସିସ୍‌ଟେଣ୍ଟ ଗଭର୍ଣ୍ଣର ଜେନେରେଲ୍ଙ୍କ ଏଓଜଣ୍ଟ ଅଫ୍ ଗ୍ଲେଟନାଗପୁରଙ୍କ ଦ୍ୱାରା ଶାସିତ ହେଲା । ପରେ

ଉଟକ କମିସ୍ନରଙ୍କ ଅଧୀନରେ ବର୍ଷ ରହି ୧୮୬୧ ଖ୍ରୀ:ଅ:ରେ ମଧ୍ୟ ପ୍ରଦେଶ ଗଭର୍ଣ୍ଣମେଣ୍ଟଙ୍କ ଅଧୀନକୁ ଗଲା । ଏଣୁ ମଧ୍ୟ ପ୍ରଦେଶର ଅନ୍ୟାନ୍ୟ ରାଜାମାନଙ୍କ ସହିତ ପାଟଣା ମହାରାଜାଙ୍କୁ ଫ୍ୟୁଡେଟରି ଚିଫ ଉପାଧି ଦିଆଗଲା । ଏହି ଫିଯୁଡେଟରି ଚିଫ ଉପାଧିରେ ମହାରାଜା ହୀରବଜ୍ରଧର ଦେଓ ବିଭୂଷିତ ହୋଇ ୧୮୬୬ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ଶୂରପ୍ରତାପ ଦେଓ ।

### ୧୮୬୬—୧୮୭୧ ଖ୍ରୀ: ଅ:

ମହାରାଜା ହୀରବଜ୍ରଧର ଦେଓଙ୍କ ପରେ ଇଂରେଜ ସରକାର ତାଙ୍କ ପୁତ୍ର ଶୂରପ୍ରତାପ ଦେଓଙ୍କୁ ପାଟଣା ରାଜଗାଦିରେ ଅଭିଷେକ କଲେ । ମହାରାଜା ଶୂରପ୍ରତାପ ଦେଓଙ୍କ ୨ ମୂର୍ତ୍ତି ରାଣୀ ଥିଲେ । ପ୍ରଥମ-ଅମୃତ କୁମାରୀ, ୨ୟ ରାଧିକା କୁମାରୀ ଦେବୀ । ବିଶ୍ୱନାଥ ସିଂହଙ୍କ ଦୁଇ ରାଣୀ ଥିଲେ । ହର ପ୍ରିୟା ଦେବୀ ଓ ରାଜ୍ୟ କୁମାରୀ ଦେବୀ ଓ ଦଳ ଗଞ୍ଜନ ସିଂହଙ୍କ ଦୁଇ ରାଣୀ ଥିଲେ । ୧-ସୁନ୍ଦର କୁମାରୀ ଦେବୀ, ୨ୟ ରାଣୀ ପରଲୋକ ଗାମିନୀ ହୋଇଥିଲେ ।

ମହାରାଜ ଶୂରପ୍ରତାପ ଦେଓ ପାଟଣା ଗଡରେ ରହୁଥିଲେ । ଭିନ୍ନାନ ଇଲାକାର ଲହା, ବୁଡୁବା, ବଡ ବୁଡୁବା ବିଶ୍ୱନାଥ ସିଂହଙ୍କ ଦ୍ୱାରା ଶାସିତ ହେଉଥିଲା । ଏହାଙ୍କର ଦୌର୍ଜନ୍ୟ ପ୍ରଭାବରେ ଉତ୍ପୀଡିତ ହୋଇ କନ୍ଧ ପ୍ରଜାମାନେ ସେଲ ଭର ବିଶ୍ୱନାଥ ସିଂହଙ୍କୁ ମାନିଲେ ନାହିଁ । ସେମାନେ ସ୍ୱଭାବତଃ ମୂର୍ଖ । କର ମାଲଗୁଜାରି କିଛି ଦେଲେନାହିଁ । ତେଣୁ ବିଶ୍ୱନାଥ ସିଂହ କେତେ ଜଣ ମୁଖିଅ ୨ କନ୍ଧଙ୍କୁ ହାଣିଦେଲେ । ଏ ଅତ୍ୟାଚାର ସହ୍ୟ କରି ଇଲାକାର କନ୍ଧମାନେ ମଧ୍ୟ ମହାରାଜା ଶୂରପ୍ରତାପ

ଦେଓଙ୍କୁ ନଜରାଣା ମାଲଗୁଜାରି ଦେଲେ ନାହିଁ । ମାଲଗୁଜାରି ଅସୁଲ କରିବାକୁ ଚପରାଶି ପଠାଇଲେ । ଚପରାଶିମାନେ ଯାଇ ସଇନ୍ତଲା ଜମୀରା ଛତ୍ରନାଥ ଦେଓଙ୍କୁ ମାଲଗୁଜାରି ମାଗିଲେ । ସେ ମାଲଗୁଜାରି ଦେବା ନିମନ୍ତେ ଗୋଲମାଲ କରିବାରୁ ଜଣେ ଚପରାଶି ଛତ୍ରନାଥଦେଓ ଜମୀଦାରଙ୍କ ପେଟରେ ଗୋଟିଏ ବର୍ଚ୍ଛା ବାଡ଼ରେ ଭୁଷି ଦେଇ ( କିଛି କରି ) ପାଟଣା ଗଡ଼କୁ ଫେରି ଯାଇ ମହାରାଜାଙ୍କଠାରେ ଅଭିଯୋଗ କଲା । ଏଣେ କେତେ ଜଣ ଲୋକ ଛତ୍ରନାଥ ଦେଓଙ୍କୁ ଗୋଟିଏ ଦୋଳାରେ ବୋହି ପାଟଣା ଗଡ଼କୁ ନେଇ ମହାରାଜାଙ୍କ ଠାରେ ଅଭିଯୋଗ କଲେ । ମହାରାଜା ଉଭୟ ପକ୍ଷର ଇଜ୍‌ହାର ଶୁଣି ଯେଉଁ ଆଦେଶ ଦେବେ ତହିଁରେ ଲୋକମାନେ କିମ୍ବା ଛତ୍ରନାଥଦେଓ କେହି ସନ୍ତୁଷ୍ଟ ହେଲେ ନାହିଁ । ଅତଏବ ମହାରାଜାଙ୍କଠାରୁ ପ୍ରତିଶୋଧ ନେବାକୁ ମନେ ମନେ ସ୍ଥିର କରି ସେଠାରୁ ଫେରିଅସିଲେ । ଦିନେ ଜଣେ ସୌଦାଗର ରାସ୍ତାରେ ଯାଉଥିବା ସମୟରେ କେତେଜଣ ଲୋକ ତାକୁ ଦେଖି ମହାରାଜାଙ୍କ ସିପାହୀ ଭାବି ତାକୁ ମାରିଦେଲେ । ଏବିଷୟ ଶୁଣି ମହାରାଜା ପ୍ରଧାନ ୨ ତିନିଜଣ ଲୋକଙ୍କୁ ଧରିଅଣି ତିନି ବର୍ଷ ଲେଖାଏ କଏଦ କଲେ ।

ଏହି ସମୟରେ ସୋନପୁର ମହାରାଜା ନିଳାଧରସିଂହ ଯୁବରାଜ ପ୍ରତାପ ରୁଦ୍ରଙ୍କ ବିବାହ ଉଲାହାଣ୍ଡିରେ ... କେମାନଙ୍କ ସହ କରିବାକୁ ସ୍ଥିର ହେଲା । ସୋନପୁର ମହାରାଜା ନିଜେ ପାଟଣା ଗଡ଼କୁ ଆସି ମହାରାଜା ଶୂରପ୍ରତାପଦେଓ, ରଘୁନାଥ ସିଂହ ଓ ବଳଗଞ୍ଜନ ସିଂହ ତିନି ଭାଇଙ୍କୁ ବିବାହରେ ଯୋଗ ଦେବାକୁ ନିମନ୍ତ୍ରଣ କରିଗଲେ । ଏଣୁ ମହାରାଜା ଭାଇମାନଙ୍କୁ ସଙ୍ଗେ ନେଇ ଅନ୍ୟାନ୍ୟ ନୌକର ଚାକର ସହ ବାହାରିଲେ । ତାହାଙ୍କର ସୈନ୍ୟଙ୍କ ମୁକାମରେ

କଣ୍ଡିଦ୍ ବନ୍ଦବସ୍ତ କରିବାକୁ ଜମରା ଷ୍ଟିନ୍ ମେଜରର ଇଲଟଙ୍କୁ ମଟରଗି ପଠାଇଲେ । ଅନନ୍ତର ସହପାତ୍ରିମାନଙ୍କ ସହ ମହାରାଜା ସୈନ୍ୟଙ୍କୁ ଆସି ଦେଖିଲେ ଯେ ରସଦ ଆଦିର କୌଣସି ବନ୍ଦୋବସ୍ତ ହୋଇନାହିଁ । ଜଣେ ଚପରାଶି ବଳପୂର୍ବକ କୁଅଁର ଗାଁର ଗୋଟିଏ ତନ୍ତି ଘରରୁ ବୁଢ଼ା ଗୋଟିଏ ବାନ୍ଧି ଆଣୁ ଥିବାରୁ କେତେଜଣ କନ୍ଧ ଜମା ହୋଇ ତାକୁ ହାଣି ଦେଲେ ଓ ନିଜ ୨ କପାଣମାନ ଘର ଉପରକୁ ନେଇ ସଜୋରରେ ଆଘାତ କଲେ । ତାହାଶୁଣି ଗ୍ରାମେ ୨ ତଦ୍ରୂପ କପାଣ ଧ୍ୱନି ହେଲା । ସଙ୍ଗେ ୨ କନ୍ଧମାନେ ଧନୁ କାଣ୍ଡ ତରବାରି ଖଣ୍ଡା ଆଦି ଅସ୍ତ୍ର ଶସ୍ତ୍ର ଧରି ବାହାରିଲେ । ମହା-ରାଜା ଏହି ଘଟଣା ଦେଖି ହାତୀମାନଙ୍କ ଘଣ୍ଟି କାଟି ଦେଇ ଜଙ୍ଗଲ ମଧ୍ୟରେ ତାଙ୍କ ଭ୍ରାତାଆଦିଙ୍କ ସହିତ ଲୁଚି ୨ ବାହାରି ଗଲେ । କଳାହାଣ୍ଡି ଷ୍ଟେଟର ଦେଉଳ ମୁହାଣ ନାମକ ସ୍ଥାନରେ ପହଞ୍ଚି ସେଠାରୁ କାଶିପୁର ଗଲେ । ବିବାହଘରେ ଫେରିଲା ସମୟରେ କଳାହାଣ୍ଡିରୁ କେତେ ସୈନ୍ୟ ଆଣି ସିନ୍ଧେକେଲ ବାଟେ ସଇନ୍ତଲାକୁ ଆସି କନ୍ଧ ପଲ୍ଲିମାନଙ୍କରେ ନିଆଁ ଲଗାଇ ଧ୍ୱଂସ କରିଦେଲେ । କେତେଜଣ କନ୍ଧଙ୍କୁ ହାଣି କଡ଼ ଅତ୍ୟାଚାର କରିବାକୁ ଲାଗିଲେ । ସଇନ୍ତଲା ଜମୁରା ବନ୍ଦୁସେଏ ଓ ଗୁନ ସର ଜମୁର କୁତ୍ରୁରୁ ମାଟିକୁ ପଠେଃ। ଗଡ଼କୁ ବାନ୍ଧି ନେଲେ । ଏହି ସମୟରେ କେତେ ଜଣ କନ୍ଧ ଜରସିଂହା ଯାଇ ସେଠାରୁ ଜଣେ କନ୍ଧକୁ ସମ୍ବଲପୁର ପଠାଇ ତାହାଦ୍ୱାରା ଡେପୁଟି କମିସନରଙ୍କ ଠାରେ ଅପତ୍ତି କଲେ । ସାହେବ ବାହାଦୁର ଖବର ପାଇଲା ମାତ୍ରେ ପାଟଣା ଗଡ଼କୁ ଆସି ସବୁ ବିଷୟର ଅନୁସନ୍ଧାନ କରି ମହାରାଜା ଶୂର ପ୍ରତାପ ଦେଓ ଓ ବିଶ୍ୱନାଥ ସିଂହଙ୍କୁ ସମ୍ବଲପୁରକୁ ନେଇ-

ଗଲେ । ସେଠାରେ ସେମାନଙ୍କୁ ଏଲାଉନ୍ସ ଦେଇ ରଖିଲେ । ପାଟଣା ଗଡ଼କୁ ଆଉ ଛାଡ଼ ଦେଲେ ନାହିଁ । ସରକାର କନ୍ଧ ମାନଙ୍କୁ ପୁନର୍ବାର ଘର ଉଦ୍ଧାର କରି ରହିବା ନିମନ୍ତେ ଆଦେଶ ଦେଲେ ଓ ପାଟଣା ରାଜ୍ୟକୁ କୋର୍ଟ ଅଫୱାର୍ଡସ କରି ଶାସନ କଲେ ।

ମହାରାଜା ଶୂର ପ୍ରତାପ ଦେଓ ବ୍ରାହ୍ମଣ ମାନଙ୍କୁ ଯେଉଁ ଗ୍ରାମ ମାନ ଦେଇ ଥିଲେ ତାହାଁର ତାଲିକା ନିମ୍ନରେ ଦିଆଗଲା ।

୧—ସିନ୍ଦେକେଲର ଜଗନ୍ନାଥ ମହାପ୍ରଭୁଙ୍କ ପୂଜା ଆରାଧନା ପାଇଁ ମହଗାଁ ଗ୍ରାମ ମାଫି ଦେଇଥିଲେ ।

୨—ଶ୍ରୀରାମ ଦାଶଙ୍କୁ ଜମୁଦିଆ ଗ୍ରାମ ଦେଇଥିଲେ ।

୩—ମହାରାଜା ଶୂର ପ୍ରତାପ ଦେଓଙ୍କ ମଞ୍ଜୁର କ୍ରମେ ବଶ୍ଵନାଥ ସିଂହ ବକ୍ସି ଦାସଙ୍କୁ କୁଶ କେଲ ଓ ତାହାଁର ପାଲି ରାଣୀ ପଦୁଲ, ସର୍ଗୁଲି ଓ ଖଲିଆ ପଡ଼ା ଗ୍ରାମ ମାଫି ଦେଲେ ।

୪—ମହାରାଜା ଶୂର ପ୍ରତାପ ଦେଓ ନିଜ ଭଉଣୀ ବିଶ୍ଵାସ କୁମାରୀଙ୍କୁ ବେଲ୍ ଗାଁ ଓ ଘୋଷରଙ୍ଗ ଦେଇଥିଲେ ।

୫—ମଙ୍ଗଲ ସିଂହଙ୍କୁ ବାରପୁଡ଼ୁଗିଆ ଗ୍ରାମ ଖୋରାକ ପୋଷାକ ଦାବ ସ୍ୱରୂପ ଦେଇ ଥିଲେ ।

———:O:———

## କୋର୍ଟ ଅଫ ଓ୍ୱାର୍ଡ୍ସ
## ୧୮୭୧-୧୮୯୩-ଖ୍ରୀ: ଅ:

ଇଂରେଜ ସରକାର ଏହି ପାଟଣା ରାଜ୍ୟକୁ କୋର୍ଟ ଅଫୱାର୍ଡସ କରି ଶାସନ କରିବାକୁ ଲାଗିଲେ । ରାଜ୍ୟର ସୁଶାସନ ନିମନ୍ତେ

ଅନେକ ମହକୁମା ଖୋଲିଲେ,ଯଥା—ଟୋଲସ,ହାସପୋତାଳ ଇତ୍ୟାଦି ଓ ସେ ସବୁ ପରିଦର୍ଶନ କରିବାକୁ ସୁପରିଣ୍ଟେଣ୍ଡେଣ୍ଟ ମହକମା ଖୋଲିଲେ । ଉକ୍ତବର୍ଷ ପୋଲିଟିକେଲ ଏଜେଣ୍ଟ ସାହେବ ଆସି ରାଜ୍ୟ ପରିଦର୍ଶନ କରିବାକୁ ଲାଗିଲେ । ଗ୍ଲେଟିଲାଟ ସାହେବ ମଧ୍ୟ ସମୟ୍ରେ ଆସିଲେ । ଗୌନ୍ତିଆ ମାନଙ୍କ ସ୍ୱତ୍ୱ ସମ୍ବନ୍ଧ ବିଷୟର ଚୀଫ କମିସନରଙ୍କ ମେମୋ ଅଲଜ ଅନୁସାରେ ଦଖଲି ସ୍ୱତ୍ୱ ଦେଲେ । ମହାରାଜା ଶୂରପ୍ରତାପ ଦେଓ ରାଣୀମାନଙ୍କୁ ଜୀବନମତେ କେତେ ଖଣ୍ଡ ଗ୍ରାମ ଦେଇ ଥିଲେ । ଯଥା— ପାଟଣାଗଡ଼, ଚିତା ଡୁଙ୍ଗୁରି, ବର ପଦର, ଭଲୁବା, କାନ୍ଦୁଅ, କୁସୁମଭାଳି, ବାଞ୍ଜାରି, ଗଇଲ ପିଠା, ବଯଲା, ରୂପରାପାଲି, ବେହେରା ବନ୍ଧ, ରାମପୁର, ସମଲଇପଦର, ଅମ୍ବର ପାଟର । ଏହା ବାହାରେ ଇଂରେଜ ସରକାର ରାଣୀ ମାନଙ୍କୁ ଓ ରାଜ-ଭ୍ରାତା ମାନଙ୍କୁ ପ୍ରଚୁର ପରିମାଣରେ ବୃତ୍ତି ଦେଇ ଥିଲେ । ରାଣୀମାନେ ପରଲୋକ ହୋଇ ଯିବାରୁ ସେମାନଙ୍କୁ ଦିଆଯାଇ-ଥିବା ଗ୍ରାମ ସବୁ ଷ୍ଟେଟ ସାମିଲ କରିଗଲା । କେବଳ ପାଟଣା ବରପଦର ଗ୍ରାମ ମାଫି ଅଛି ।

ପାଟଣାର ପ୍ରଜାମାନେ ଇଂରେଜଙ୍କ ସୁଶାସନ ହେତୁ ଧନ ପ୍ରାଣ ନେଇ ସୁଖରେ କାଳ କଟାଇବାକୁ ଲାଗିଲେ । ଚୋର ଖଣ୍ଟ ଡକାଇତଙ୍କ ଭୟ ରହିଲା ନାହିଁ । ସେ ପାଟଣା ରାଜ୍ୟର ଉନ୍ନତି ନିମନ୍ତେ ବ୍ୟବସାୟ, ବାଣିଜ୍ୟ, କୃଷି ବିଦ୍ୟାଶିକ୍ଷା ଦେଲେ ।

୧୮୭୨ ଖ୍ରୀ: ଅ: ରେ ସମ୍ବଲପୁରରେ ବିଶ୍ୱନାଥ ସିଂହଙ୍କ ଏକ ପୁତ୍ର ଜନ୍ମ ହେଲେ । ମହାରାଜ ଶୂରପ୍ରତାପ ଦେଓଙ୍କ ପୁତ୍ର ନଥିବାରୁ ସେହି ନବଜାତ ଶିଶୁକୁ ପୋଷ୍ୟପୁତ୍ର କରି

ରାମଚନ୍ଦ୍ର ନାମ ଦେଲେ । ତେଣୁ ତାଙ୍କର ନାବାଳକ ଅବସ୍ଥା ଥିବା ପର୍ଯ୍ୟନ୍ତ ଇଂରେଜ ସରକାର ଏହି ରାଜ୍ୟ କୋର୍ଟ ଅଫ ୱାର୍ଡ୍ସ କର ଶାସନ କଲେ । ୧୮୬୮ ଖ୍ରୀ: ଅ: ରେ ମହାରାଜା ଶୂର ପ୍ରତାପ ଦେଓ ପରଲୋକଗମନ କଲେ ।

ଏହି ସମୟରେ କନ୍ଧମାନଙ୍କ ଜମିରେ କୁଲ୍ତା ଓ ଅନ୍ୟାନ୍ୟ ଜାତିର ଲୋକମାନେ ରୟତ ନିଯୁକ୍ତ ହେଉଥିଲେ । ତେଣୁ କଳାହାଣ୍ଡିର କନ୍ଧମାନେ ବିଦ୍ରୋହ କରିବାକୁ ଲାଗିଲେ । ପୋଲିଟିକେଲ୍ ଏଜେଣ୍ଟ ନିୟମ ଜାରି କଲେ ଯେ କନ୍ଧ ଗଣ୍ଡ ଅଧ: ଅଧମ ଲୋକମାନଙ୍କ ଜମିରେ ଅନ୍ୟ କୌଣସି ଜାତିର ଲୋକ ରୟତ ନିଯୁକ୍ତ ହୋଇ ପାରିବେ ନାହିଁ । ଏହି ନିୟମ ବଳରେ କେତେ ଲୋକଙ୍କୁ ବେଦଖଲ କରି କନ୍ଧମାନଙ୍କୁ ସେହି ଜମୀ ଦିଆଗଲା । ମି: ମେକଡୁଗେଲ ସମ୍ବଲପୁର ଡେପୁଟି କମିସନର ସାହେବଙ୍କ ଆଦେଶ ମତେ ବଲାଙ୍ଗିରରୁ ପ୍ରାଚୀନ ବସ୍ତିରୁ ଅଣାଯାଇ ନୂତନ କସ୍ବା ସ୍ଥାପନ କରାଗଲା । ମି: ଏଫ, ସି: ବେଇ ଓ ମି: ସ୍ମିଥ୍ ସାହେବଙ୍କ ଦ୍ୱାରା ପାଟଣାର ରାଜସ୍ୱ ବନ୍ଦୋବସ୍ତ କରାଗଲା । ଏହି ସମୟରେ ସାଲେଭଟା ଠାରୁ ବେଲଗାଁ ପର୍ଯ୍ୟନ୍ତ ପକ୍କା ସଡ଼କ ତିଆର କରା ଗଲା । ଷ୍ଟେଟ ମଧ୍ୟରେ ଅନେକ ସ୍କୁଲ୍ ବସା ଯାଇ ପାଟଣା ଛାତ୍ର ମାନଙ୍କୁ ଶିକ୍ଷା ଦିଆ ଗଲା । ଏହି ସ୍କୁଲ ଆଦି ମହକୁମାମାନ ଚଳାଇବାକୁ ଉପଯୁକ୍ତ ଲୋକ ନିଯୁକ୍ତ କରାଗଲେ । ଏହି ସମୟରେ ପାଟଣା ଗଡ଼ରୁ ରାଜ ଧାନୀ ଉଠାଇ ନେଇ ବଲାଙ୍ଗିର କରା ଗଲା ।

୧୮୭୬ ଓ ୧୮୭୭ ଖ୍ରୀ: ଅ: ରେ ଏହି ପାଟଣା ରାଜ୍ୟରେ ପ୍ରବଳ ଭାବରେ ବିସୂଚିକା ଓ ବସନ୍ତ ହେଲା, ଇଂରେଜ ସର-

କାର ଅନେକ ଚେଷ୍ଟା କଲେ ପୁଣ୍ଡା ଅନେକ ଲୋକ ମୃତ୍ୟୁ ମୁଖରେ ପତିତ ହେଲେ । ସେ ସମୟରେ ଟଙ୍କାକୁ ଗ୍ରହରେ ଗୃହଜାଳ ମିଳୁ ଥିଲା । ପାହା ହେଉ ଇଂରେଜ ସରକାରଙ୍କ ସୁଦୃଷ୍ଟିରୁ ରାଜ୍ୟ ଶାନ୍ତ ହେଲା । ଲୋକେ ପୁନର୍ବାର ସୁଖରେ କାଳ କଟାଇଲେ ।



## ତୃତୀୟ ରାମଚନ୍ଦ୍ର ଦେଓ

### ୧୮୯୩—୧୮୯୬ ଖ୍ରୀ: ଅ:

ମହାରାଜା ଶୁର ପ୍ରତାପ ଦେଓଙ୍କ ପରେ ରାମଚନ୍ଦ୍ର ଦେଓ ମହାରାଜା ହେଲେ । ସେ ବାଲ୍ୟାବସ୍ଥାରେ ସମ୍ବଲ ପୁର ପଠ ନାୟକ ପଢ଼ା ସ୍କୁଲରେ ପଢି ଥିଲେ । ପରେ ଇଂରେଜ ସରକାର ତାଙ୍କୁ ଜବଲ ପୁରକୁ ନେଇ ସେଠାରେ ୨୧ ବର୍ଷ ବୟସ୍କ ହେବା ପର୍ଯ୍ୟନ୍ତ ପାଠ ପଢ଼ାଇଲେ । ଏପର ତାହାଙ୍କର ନାବାଳକ ଅବସ୍ଥା ଗଲାରୁ ତାଙ୍କୁ ସେଠାରୁ ଅଣି ସମ୍ବଲପୁରରେ ଗୋଟିଏ ଦରବାର କର ପାଟଣା ଷ୍ଟେଟର ଜମିଦାର ଜମୁସ୍ଥ ଅଦଙ୍କ ସାକ୍ଷାତରେ ଖିଲତ ଦେଲେ । ଓ ପାଟଣା ରାଜ୍ୟର ଶାସନ ଭାର ଅର୍ପଣ କଲେ । ଫିୟୁଡ଼େଟର ଚିଫ ଉପାଧି ମଧ୍ୟ ଦେଲେ । ସେ ପାଟଣା ଷ୍ଟେଟକୁ ଅସିଲା ସମୟରେ ଜବଲପୁରରୁ ଦଳେ ସୈନ୍ୟ ଅଣି ବଲାଙ୍ଗିରରେ ରଖିଥିଲେ ସେ କଳାହାଣ୍ଡିର ରାଜା ରଘୁକେଶର ଦେଓଙ୍କ ଭଉଣୀଙ୍କୁ ବିବାହ ହୋଇ ଥିଲେ ଓ ରାଣୀଙ୍କର ସିନ୍ଦୁରଟିକା ନିମନ୍ତେ ଗଇନ୍ତଲା ଓ ତହିଁର ପାଞ୍ଚଖଣ୍ଡ ପାଲି ଦେଇଥିଲେ । ସେ ତାଙ୍କର ରାଜତ୍ୱ ସମୟରେ ବଲାଙ୍ଗିରରୁ ତରଭା ପର୍ଯ୍ୟନ୍ତ ସଡ଼କ ତିଆର

କରୁଥିଲେ । ଏହି ମହାରାଜା ବଲାଙ୍ଗିରରେ ଇଂରେଜୀ ସ୍କୁଲ୍ ସ୍ଥାପନ କରିଥିଲେ । ତାହାଙ୍କର ଏକମାତ୍ର ଝିଅ ଥିଲେ । ସେ ତାଙ୍କୁ ସିଂହଭୂମ ଜିଲ୍ଲା ସରାଇକଳାର ବର୍ତ୍ତମାନର ଯୁବରାଜଙ୍କ ସଙ୍ଗେ ବିବାହ ଦେଇଅଛନ୍ତି । ସେ ଜଣେ ସାହାସୀ ପୁରୁଷ ଥିଲେ । ସେ ଅନେକ ବାଘ ମାରିଥିଲେ । ଶେଷରେ ସେ ତାଙ୍କ ରାଣୀଙ୍କୁ ବନ୍ଧୁକରେ ମାରି ଦେଇ ନିଜେ ମଧ୍ୟ ଲକ୍ଷ୍ଣ ହୋଇ ପରଲୋକ ଗମନ କଲେ ।

ସେହି ସମୟରେ ତ୍ର୍ୟମ୍ବକ ମୋରେଶ୍ୱର ସାଠେ ଓ ତ୍ର୍ୟମ୍ବକ ନୀଳକଣ୍ଠ ଦେଶମୁଖ ଦେଓ୍ୱାନ ଥିଲେ । ଦେଶମୁଖ ସାହେବ ଏହି ସମସ୍ତ ବିଷୟରେ ପୋଲିଟିକେଲ୍ ଏଜେଣ୍ଟ ରାଇପୁରଙ୍କ ନିକଟକୁ ରିପୋର୍ଟ କରିବାରୁ ସାହେବ ଆସି ବିଧିକାର୍ଯ୍ୟ କରି ତାହାଙ୍କର କାକା ଦଳଗଞ୍ଜନ ସିଂହଙ୍କୁ ପାଟଣା ରାଜ୍ୟର ମହାରାଜା କରିବାକୁ ଗଭର୍ଣ୍ଣର ଜେନେରେଲଙ୍କ ଠାକୁ ରିପୋର୍ଟ କଲେ ।

---

## ଦଳଗଞ୍ଜନ ସିଂହଦେଓ ।

### ୧୮୯୫—୧୯୧୦ ଖ୍ରୀ: ଅ:

ମହାରାଜା ରାମଚନ୍ଦ୍ର ଦେଓଙ୍କ ପରଲୋକ ପରେ ଦଳଗଞ୍ଜନ ସିଂହଙ୍କୁ ଗଭର୍ଣ୍ଣର ଜେନେରେଲ ଅଫ ଇଣ୍ଡିଆଙ୍କ ମଞ୍ଜୁରି ଅନୁସାରେ ଚିଫ୍ କମିଶନର ଅଫ୍ ସେଣ୍ଟ୍ରାଲ ପ୍ରଭିନ୍ସେସ୍ ନାଗପୁରରେ ଦରବାର କରି ଖିଲତ ଦେଲେ । ସେ ୧୮୫୬ ଖ୍ରୀ: ଅ: ରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ଦୁଇ ରାଣୀ । ପାଟରାଣୀଙ୍କ ଗର୍ଭରୁ ୬ଟି ପୁତ୍ର ଜନ୍ମଗ୍ରହଣ କରିଥିଲେ । ୧—ପୃଥ୍ୱୀରାଜଦେଓ ୨—ବିଷ୍ଣୁରାଜ ସିଂହ ।

୩—ରଘୁରାଜ ସିଂହ ୪—ଭୂଜେନ୍ଦ୍ର ସିଂହ ୫—ମହେନ୍ଦ୍ର ସିଂହ ୬—ବୀରେନ୍ଦ୍ର ସିଂହ ଅଟନ୍ତି । ମହାରାଜା ଦଳଗଞ୍ଜନ ସିଂହ ଇଂରେଜୀ ଭଲ ଲେଖି ପଢ଼ି କହି ପାରୁଥିଲେ । ଓଡ଼ିଆ, ହିନ୍ଦି ବଙ୍ଗଳା ଓ ସଂସ୍କୃତରେ ମଧ୍ୟ ତାଙ୍କର ବିଶେଷ ଜ୍ଞାନ ଥିଲା । ସେ ତାଙ୍କ ରାଜତ୍ୱ ସମୟରେ ବଲାଙ୍ଗିର ଦଳଗଞ୍ଜନ ପ୍ରେସ ବସାଇ ଥିଲେ ।

୧୮୯୯ ଖ୍ରୀ: ଅ: ରେ ଏହାଙ୍କ ରାଜତ୍ୱ ସମୟରେ ବଲାଙ୍ଗିରରେ ୫୬ ସାଲ ଦୁର୍ଭିକ୍ଷ ପଡ଼ିଥିଲା । ଏହା ସଙ୍ଗେ ସଙ୍ଗେ ବିସୂଚିକା ଓ ବସନ୍ତ ମଧ୍ୟ ପ୍ରବଳ ଭାବରେ ହୋଇଥିଲା । ଏଥିରେ ଅନେକ ଲୋକ ଭୋକରେ ଓ ରୋଗରେ ଏଣେ ତେଣେ ପଡ଼ି ମୃତ ହେଲେ । ସର୍ବତ୍ର ହା ହା ରବ ଉଠିଲା । ମହାରାଜା ବିପନ୍ନମାନଙ୍କ ରକ୍ଷା ନିମନ୍ତେ ଅନ୍ନଛତ୍ର ଖୋଲି ଅନ୍ନ ବିତରଣ କଲେ । ଅନେକ ଜାଗାରେ ରିଲିଫ ୱାର୍କମାନ ଜାରି କରିଥିଲେ । ବଲାଙ୍ଗିରରୁ ଉତ୍ତରକୁ ଯାଇଥିବା ସଡ଼କର ୨ ମାଇଲ ନିକଟରେ ପେଣ୍ଡ୍ରି ଜୁଡ଼ିବନ୍ଧ ଅଛି ତାହାଁର ଅନ୍ୟତ ଗୋଟିଏ ରିଲିଫ ୱାର୍କ ଅଟେ । ମହାରାଜା ଅସହାୟଙ୍କ ରକ୍ଷା ନିମନ୍ତେ ଅନେକ ଚେଷ୍ଟା କରି ସୁଦ୍ଧା ଅନେକ ଲୋକ ମୃତ ହୋଇଥିଲେ । ଶେଷରେ ରାଜ୍ୟ ଶାନ୍ତ ହେଲା ।

ଏହି ମହାରାଜାଙ୍କ ରାଜତ୍ୱ ସମୟରେ ଲଖେରଅ ବିଂଝାଲ ନାମକ ଜଣେ ଲୋକ ସାତଶ ଲୋକ ସଂଗ୍ରହ କରି ଗୋଟିଏ ଦଳ ଗଠନ କରି ମହଦାସଣୀ ଗନ୍ଧମାଦନ ପର୍ବତରେ ରହୁଥିଲା । ସେମାନେ ପାଟଣା ଓ ବୁଢ଼ା ସମ୍ବର ଜଉପୁ ସାହୁଙ୍କୁ ଲୁଟି କରି ଲୁଣ୍ଠିତ ଦ୍ରବ୍ୟ ନିଜ ୨ ମଧ୍ୟରେ ବଣ୍ଟନ କରୁଥିଲେ । କ୍ରମଶଃ ସେମାନଙ୍କ ଅତ୍ୟାଚାର ପ୍ରବଳ ହେବାକୁ ବସିଲା । ସେମାନେ କପିଲ କହାଲ ଓ ଜମିଙ୍ଗ

ଗ୍ରାମର ଗୌନ୍ତ୍ୟାମାନଙ୍କୁ ହାଣି ବହୁ ସମ୍ପଦ ଲୁଣ୍ଠନ କରି ନେଇ ଗଲେ । ମହାରାଜ ଏ ସବୁ ଅତ୍ୟାଚାର ଦେଖି ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ରିପୋର୍ଟ କଲେ । ଇଂରେଜ ସରକାରଙ୍କ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ମିଃ ଫେଗନ୍ ପୋଲିସ ସଙ୍ଗେ ଆସି ଏମାନଙ୍କୁ ଗିରଫଦାର କଲେ । ଦଶରଥ କିଂଙ୍ଗଲଙ୍କୁ କଳା ପାଣି ( ଅଣ୍ଡେମାନ ) କୁ ପଠାଗଲା ।

ଏହାଙ୍କ ସମୟରେ ବଲାଙ୍ଗିରର ଦୁଇ ମହଲା ଟଲ୍ଲା କଚେରୀ ନିର୍ମିତ ହେଲା । ମିଃ ଏଃ ଏଚ୍ଃ ଲେ ଫ୍ରେଜର ଲେଫଟ୍‌ନେଣ୍ଟ ଗଭର୍ଣ୍ଣର ଅଫ ବେଙ୍ଗଲ ବଲାଙ୍ଗିରକୁ ଅଗ-ମନ କରି ଥିବାରୁ ତାଙ୍କର ଉପଲକ୍ଷେ ଫ୍ରେଜର ସାରକିଟ ହାଉସ ତିଆର ହେଲା । ବଲାଙ୍ଗିର ଜଗନ୍ନାଥ ମନ୍ଦିର ଓ ସିଦ୍ଧେଶ୍ୱର ମହାଦେବ ମନ୍ଦିର ନିର୍ମିତ ହେଲା । ଶ୍ରୀରାମ ଚନ୍ଦ୍ର ମଲ୍ଲିକ ସ୍କୁଲ ଡେପୁଟି ଇନ୍ସପେକ୍ଟର ଥିବାରେ ପାଟଣା ଷ୍ଟେଟର ପ୍ରାୟ ସମସ୍ତ ପକ୍କା ସ୍କୁଲ ତିଆର ହୋଇ ଥିଲା । ଏହି ସମୟରେ ବଲାଙ୍ଗିରରୁ ଟିଟ୍ଲାଗଡ଼ ଯାଏଁ ସଡ଼କ ତିଆର ହେଲା ।

ଏହି ମହାରାଜାଙ୍କଠାରେ ଧର୍ମ ପରାୟଣ ରାଜା ଥିଲେ । ଏହାଙ୍କର ତତ୍ତ୍ୱାବଧାନରେ ଶ୍ରୀରାମଚନ୍ଦ୍ର ମଲ୍ଲିକ ବଲାଙ୍ଗିରରେ ସନାତନ ଧର୍ମ ସଭା ସ୍ଥାପନ କରି ଥିଲେ । ଏଥିର ସମସ୍ତ ଭାର ଧର୍ମ ପ୍ରାଣ ମହାରାଜାଙ୍କ ହସ୍ତରେ ନ୍ୟସ୍ତ ହେଲା । ମହାରାଜା ମଧ୍ୟ ହିନ୍ଦୁ ଧର୍ମର ପ୍ରଚାର ନିମନ୍ତେ ସନାତନ ଧର୍ମର ବାର୍ଷିକ ଅଧିବେଶନରେ ଆଗ୍ରହ ସହ ଯୋଗ ଦେଇ ସମସ୍ତଙ୍କୁ ଧର୍ମ ପଥରେ ଚାଲିବାକୁ ଉତ୍ସାହିତ କରୁ ଥିଲେ । ହିନ୍ଦୁ-ଧର୍ମର ପ୍ରଚାର ନିମନ୍ତେ ସନାତନ ଧର୍ମ ପତ୍ରିକା ନାମରେ

ଖ୍ରିଷ୍ଟମାସିକ ପତ୍ରିକା ଚଳାଇ ଥିଲେ । ଅଦ୍ୟାପି ସେହି ସନାତନ ଧର୍ମ ସଭା ବଲାଙ୍ଗିରରେ ସ୍ଥାପିତ ହୋଇ ରହିଅଛି ।

ଏହାଙ୍କ ରାଜତ୍ୱ ସମୟରେ ବଙ୍ଗ ଭଙ୍ଗହେଲା । ପୂର୍ବ ବଙ୍ଗ ଓ ଆସାମ ମିଶି ପୂର୍ବ ବଙ୍ଗ ଓ ଓଡ଼ିଶା ବିହାର ଓ ପଶ୍ଚିମବଙ୍ଗ ମିଶିପଶ୍ଚିମବଙ୍ଗ ହେଲା । ପାଟଣା କଳାହାଣ୍ଡି ବାମଣ୍ଡା ରେଢ଼ାଖୋଲ, ସୋନପୁର ଆଦି ମଧ୍ୟ ପ୍ରଦେଶରୁ ବିଚ୍ଛିନ୍ନ କରାଯାଇ ପଶ୍ଚିମ ବଙ୍ଗ ସଙ୍ଗରେ ମିଶାଇ ଦିଆ ଯିବାରୁ ଏହି ଷ୍ଟେଟ୍ ମାନଙ୍କର ଓ ଓଡ଼ିଶାର ଅନ୍ୟାନ୍ୟ ଗଡ଼ଜାତମାନଙ୍କ କାର୍ଯ୍ୟ ଚଳାଇବାକୁ ମି: ଏଲ୍,କବଡ଼େନ ରାମସେ ପ୍ରଥମ ପୋଲିଟକେଲ୍ ଏଜେଣ୍ଟ ନିଯୁକ୍ତ ହେଲେ । ସେ ସମ୍ବଲପୁରକୁ ହେଡ଼କ୍ୱାଟର କରି ସମସ୍ତ ଗଡ଼ଜାତକୁ ତୀକ୍ଷଣ ଦୃଷ୍ଟି ଦେଇ ଚଳାଇଲେ । ମହାରାଜା ଦଳଗଞ୍ଜନ ସିଂହ ଦେଓ ଖ୍ରୀ ୧୯୧୦ ଷ୍ଟାବ୍ଦରେ ସ୍ୱର୍ଗଲାଭ କଲେ ।



## ପୃଥ୍ୱୀରାଜ ଦେଓ

### ୧୯୧୦—୧୯୨୪ ଖ୍ରୀ: ଅ: '

ମହାରାଜ ଦଳଗଞ୍ଜନ ସିଂହ ଦେଓଙ୍କ ପରେ ମହାରାଜ ପୃଥ୍ୱୀରାଜ ଦେଓ ଇଣ୍ଡିଆ ଗଭର୍ଣ୍ଣର ଜେନେରେଲଙ୍କ ମଞ୍ଜୁର ଅନୁସାରେ ଗଦି ନସିନ ହେଲେ । ବଲାଙ୍ଗିର ରାଜଧାନୀରେ ଅଭିଷେକ ବିଧି ସମ୍ପାଦିତ ହେଲା । ରାଜ୍ୟର ସମସ୍ତ ଜମୀଦାର ଜମୁଗ ଓ ଗୌନ୍ତିଆମାନେ ଏହି ଉତ୍ସବରେ ଯୋଗ ଦେଇ ଥିଲେ । ଏହାଙ୍କର ଦୁଇ ଜଣ ରାଣୀ ଥିଲେ । ପ୍ରଥମ କଣୋରା ମଣି ଦେବୀ ୨ୟ ପ୍ରେମ ମଞ୍ଜରୀ ଦେବୀ ଅଟନ୍ତି । ଏହାଙ୍କର ପୁତ୍ର ନଥିବାରୁ ବଡ଼ାଇ କେଲର ବର୍ତ୍ତମାନ ଯୁବରାଜଙ୍କ ପୁତ୍ର ଶ୍ରୀମାନ୍ ରାଜେନ୍ଦ୍ର ନାରାୟଣ ଦେଓଙ୍କୁ ପୋଷ୍ୟ ପୁତ୍ର ଗ୍ରହଣ

କଲେ । ତାହାଙ୍କର ଭାଇମାନଙ୍କ ମଧ୍ୟରୁ ବସନ୍ତରାଜ ସିଂହ ଦେଓ ପଟାସ୍ତୁତ ସାହେବ ଜଣେ ଅନରେରି ମାଜିଷ୍ଟ୍ରେଟ ଅଟନ୍ତି । ଅନ୍ୟଜଣେ ଭାଇ ଲାଲ ରଘୁରାଜ ସିଂହ ଦେଓ ମଧ୍ୟ ଜଣେ ଅନରେରି ମାଜିଷ୍ଟ୍ରେଟ ଅଟନ୍ତି । ସେ ବାଘ ଶିକାରରେ ବିଶେଷ ପାରଦର୍ଶୀ ଅଟନ୍ତି । ସାନଭାଇ ଲାଲ ବୀରେନ୍ଦ୍ର ସିଂହ ଦେଓ ଅନରେରି ଏସିଷ୍ଟାଣ୍ଟ ପୋଲିସ ଇନ୍ସପେକ୍ଟର କାର୍ଯ୍ୟ କରନ୍ତି ।

ଏହାଙ୍କ ସମୟରେ ବିଜୁଳି ବତି, ପଙ୍ଖା, ଟେଲିଫୋନ ବଲାଙ୍ଗିରରେ ସ୍ଥାପିତ ହୋଇଥିଲା । ବଲାଙ୍ଗିର ପୃଥ୍ୱୀରାଜ ହାଇ ଇଂରେଜୀ ସ୍କୁଲ ସ୍ଥାପିତହୋଇଥିଲା । ତା ୧୨।୧୨।୧୯୧୧ରେ ମହାମାନ୍ୟ ଭାରତ ସମ୍ରାଟ ପଞ୍ଚମ ଜର୍ଜଙ୍କ ଅଭିଷେକୋତ୍ସବ ଉପଲକ୍ଷେ ଜର୍ଜ ଲାଇବ୍ରେରି କ୍ଲବ ଓ ଜର୍ଜ ସଂସ୍କୃତ ଟୋଲ ସ୍ଥାପିତ ହେଲା । ବଲାଙ୍ଗିର ସମଲେଶ୍ୱରୀ ଦେବୀଙ୍କ ପାଇଁ ପକ୍କା ମନ୍ଦିର ତିଆରି କରାଗଲା । ସମ୍ବଲପୁରରେ ପାଟଣାରାଜ ପ୍ରାସାଦ ନାମରେ ଗୋଟିଏ ପକ୍କା ତିଆରି କରାଗଲା । ବାଦଲ ମହଲ ନାମରେ ଗୋଟିଏ ପ୍ରକାଣ୍ଡ ସୁରମ୍ୟ ମହଲ ବଲାଙ୍ଗିର-ରେ ତିଆରି ହେଲା । ଏହାଙ୍କ ରାଜତ୍ୱ ସମୟରେ ସାର ଏଲ-ବାର୍ଟ ଗେଟ ଲେଫଟେନେଣ୍ଟ ଗଭର୍ଣ୍ଣର ବିରାଜମାନ କରି ଥିବାରୁ ତଦୁପଲକ୍ଷେ ବଲାଙ୍ଗିରରେ ଗେଟ ସରୋବର ନାମରେ ଗୋଟିଏ ପ୍ରକାଣ୍ଡ ପୋଖରୀ ଖୋଳାହେଲା ଓ ସାର ହେନେରି ହୁଇଲର ଲେଫଟେନେଣ୍ଟ ଗଭର୍ଣ୍ଣର ବଲାଙ୍ଗିରକୁ ବିରାଜମାନ କରିଥିବାରୁ ତଦୁପଲକ୍ଷେ ସୋନଗଡ ନଦୀରେ ହୁଇଲରବ୍ରିଜ ନାମରେ ଗୋଟିଏ ପୋଲ ତିଆରି କରାଗଲା । ପାଟଣା ଗଡ ଓ ଟିଟିଲାଗଡ଼ ଦୁଇଗୋଟି ତହସିଲ ଖୋଲା ହେଲା । ଭାଗ୍ୟର ଦୃଷ୍ଟି ଉଲଟ୍ ଯିବନ୍ତେ ତାହାଙ୍କର ଦେହାନ୍ତ

ଶ୍ରୀଯୁକ୍ତ ବାବୁ ବାଳ ମୁକୁନ୍ଦ ବହୁଦାରଙ୍କ ତତ୍ତ୍ୱାବଧାନରେ କୃଷି ପ୍ରଦର୍ଶନୀ ସବୁ ସ୍ଥାପିତ ହୋଇ ପୁରସ୍କାର ଦିଆଯାଇ ପାଟଣା ଦେଶ ଚାଷୀଙ୍କୁ କୃଷି, ଶିଳ୍ପ, ବାଣିଜ୍ୟର ଉନ୍ନତି ପାଇଁ ଉତ୍ସାହିତ କରାଯାଇଥିଲା । କୃଷକ ମାନଙ୍କ ଶିକ୍ଷା ନିମନ୍ତେ ବାଲାଙ୍ଗିରରେ ଆଦର୍ଶ ବଗିଚା କରାଗଲା । ଖ୍ରୀଷ୍ଟିୟାନ ଧର୍ମ ଯାଜକ ମାନେ ଏହାଙ୍କ ସମୟରେ ବଲାଙ୍ଗିରକୁ ଆସି ବାସକରି ରହି ଖ୍ରୀଷ୍ଟଧର୍ମ ଉପଦେଶ ଦେଲେ । ପଥିକ ମାନଙ୍କ ସୁବିଧା ନିମନ୍ତେ ସଡ଼କର ଉଭୟ ପାର୍ଶ୍ୱରେ ବୃକ୍ଷ ରୋପିତ ହେଲା । ସଡ଼କର ସ୍ଥାନେ୨ କୂପ ଖୋଳା ଯାଇ ଥିଲା । ନୂଆଁ ବନ୍ଧ ମଧ୍ୟସ୍ଥ ଚନ୍ଦନ ଯାତ୍ରାର ଦେଉଳ ନିର୍ମିତ ହେଲା ।

ଏହି ସମୟରେ କଳାହାଣ୍ଡି ତରଫରୁ ଏକଦଳ ହାତୀ ପାଟଣାର ବର୍ଣ୍ଡାଇ ପର୍ବତକୁ ଆସି ଥିଲେ । ମହାରାଜ ହାତୀ-ଧରିବାକୁ ସେଠାକୁ ଯାଇ ଅଧିକ ପରିଶ୍ରମ କରିବାରୁ ପୀଡ଼ିତ ହୋଇ ବଲାଙ୍ଗିରକୁ ଫେରି ଆସି ୧୨।୨।୧୯୨୪ ଇଃ ରେ ପରଲୋକ ଗମନ କଲେ । ପଠାୟତ ସାହେବ ବହୁରାଜ ଦେଓଙ୍କ ପୁତ୍ର ଭୂପାଳ ଦେଓ କ୍ଷଣିକ ନିମନ୍ତେ ପାଟଣା ରାଜ-ଗାଦିରେ ଅଭିଷିକ୍ତ ହୋଇ ମହାରାଜାଙ୍କ ମୃତ ଶରୀର ଅନ୍ତର କରିବାକୁ ଆଦେଶ ଦେଲେ । ବଲାଙ୍ଗିର ଲକ୍ଷ୍ମୀ ଯୋର ଖଣ୍ଡିରେ ମହାରାଜାଙ୍କ ମୃତ ଶରୀର ଦାହ କରାଯାଇ ଥିଲା ।

ଏହି ମହାରାଜାଙ୍କ ପ୍ରଥମ ରାଣୀ ଶ୍ରୀମତୀ କିଶୋରୀ ମଣି ଦେବୀ ବଲାଙ୍ଗିର ମହାଦେବ ମନ୍ଦିର ପଦ୍ୱାରେ ତୟାର କରାଇଲେ । ୨ୟ ରାଣୀ ଶ୍ରୀମତୀ ପ୍ରେମ ମଞ୍ଜରୀ ଦେବୀ ନୂଆଁ ବନ୍ଧ ଆଡ଼ର ତୁଳସୀ ଚଉରା ତୟାର କରାଇ ଥିଲେ । ମହାରାଜଙ୍କ ଜୀବିତ ଅବସ୍ଥାରେ ମି: ଇ: ଏସ୍ ବଲ୍ଟୁସୁରନ ସାହେବ ପାଟଣା ଦେଓ୍ୟାନ ହୋଇ ଆସି ଥିଲେ । ମହାରାଜାଙ୍କ ସ୍ୱର୍ଗଲାଭ

ହେବାରୁ ସେ ପୋଲିଟିକେଲ୍ ଏଜେଣ୍ଟ ସମ୍ବଲପୁରଙ୍କ ନିକଟକୁ ରିପୋର୍ଟ କରିବାରୁ ତତ୍କାଳୀନ ପୋଲିଟିକେଲ ଏଜେଣ୍ଟ ମିଃ ସିଃ ଏଲ ଫିଲିପ ବାଲଙ୍ଗିରକୁ ଆସି ବିଧିକାର୍ଯ୍ୟ କରି ନାବାଳକ ମହାରାଜା ରାଜେନ୍ଦ୍ର ନାରାୟଣ ଦେଓଙ୍କ ପକ୍ଷରୁ ପାଟଣା ରାଜ୍ୟରେ ସୁପରିନ୍ଟେଣ୍ଡେଣ୍ଟ ନିଯୁକ୍ତ କରି ଶାସନ କଲେ । ଓ ରାଜ୍ୟ କୋର୍ଟଅଫଓ୍ୱାର୍ଡ୍ସ କଲେ । ଏହା ଏ ପର୍ଯ୍ୟନ୍ତ କୋର୍ଟଅଫଓ୍ୱାର୍ଡ୍ସରେ ଅଛି ।

---

## ନାବାଳକ ମହାରାଜା ରାଜେନ୍ଦ୍ର ନାରାୟଣ ଦେଓଙ୍କ ପକ୍ଷରୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ।

### ୧୯୨୪—ଖ୍ରୀଃ ଅଃ ରୁ—

ଇଂରେଜ ଶାସନ କର୍ତ୍ତାଙ୍କ ମଂଜୁର ଅନୁସାରେ ନାବାଳକ ମହାରାଜ ରାଜେନ୍ଦ୍ର ନାରାୟଣ ଦେଓ ୨।୪।୧୯୨୦ ଖ୍ରୀଃ ଅଃ ରେ ପୃଥ୍ୱୀରାଜ ଦେଓଙ୍କ ନବ ନିର୍ମିତ ବାଦଲ ମହଲରେ ପାଟଣା ରାଜ୍ୟର ଶୋରକ ପୋଦ୍ଦାର ଦାର, ଜମୀଦାର, ଜମ୍ବୁ ଓ ଗୌନ୍ତିଆ ପ୍ରଜାଙ୍କ ସମ୍ମୁଖରେ ଗଦି ନସିନ ହେଲେ । ଜନ୍ମାନ ଇଲାକାର ପ୍ରଜାମାନେ ମହାରାଜାଙ୍କୁ ଦେଖିବେ ବୋଲି ୩।୧।୧୨।୧୯୨୪ ଖ୍ରୀଃ ଅଃ ରେ ଟିଟିଲା ଗଡ଼ରେ ମଧ୍ୟ ଦରବାର ହେଲା । ନାବାଳକ ମହାରାଜା ଗଦିନସିନ ହେଲା ସମୟରେ ତାଙ୍କୁ ୧୩ ବର୍ଷ ବୟସ ହୋଇ ଥିଲା । ସେ ଅଜମିର ରାଜକୁମାର କଲେଜରେ ପାଠ ପଢ଼ି ଅଛନ୍ତି । ପାଟଣା କୋର୍ଟଅଫଓ୍ୱାର୍ଡ୍ସ ଥିବାରୁ ମିଃ ଇଃ ଏସ ବଲ୍ଡୁଫୁରନ ସାହେବ ସୁପରିଣ୍ଟେଣ୍ଡେଣ୍ଟ ହୋଇ କାର୍ଯ୍ୟ ଚଳାଉ ଥିଲେ । ସେ ଜଣେ ବାଘ ଶିକାର ପ୍ରିୟ ସାହେବ ଥିଲେ । ସେ ଅନେକ ବାଘମାରି ଥିଲେ । ଶେଷରେ ଗୋଟିଏ ଚିତାବାଘ ସଙ୍ଗରେ ବାହୁଯୁଦ୍ଧ-

କରି ତା ୨୮।୫।୧୯୨୬ ମୃତ୍ୟୁ ମୁଖରେ ପତିତ ହେଲେ । ତାଙ୍କପରେ ଅଜକାଲ୍ ମି: ଏ, ଇ, ସି, ମେକ୍ ଗେଭନ ସାହେବ ସୁପରିଣ୍ଟେଣ୍ଡେଣ୍ଟ ହୋଇ ରାଜ୍ୟଶାସନ କରୁଅଛନ୍ତି । ପଡଅଲ୍ଲ ମହାରାଜାଙ୍କ ଜେମାମଣୀଙ୍କ ସଙ୍ଗେ ନାବାଳକ ମହାରାଜାଙ୍କ ବିବାହ ସ୍ଥିର ହୋଇ ଥିବାରୁ 'ଟିକା ଦଡ଼ା' କାର୍ଯ୍ୟ ଶେଷ ହୋଇ ଅଛି । ୨୯।୧।୧୯୩୨ ରେ ତାହାଙ୍କର ବ୍ରତବିଧି ସମ୍ପାଦିତ ହେଲା ।

ପାଟଣା ଇତିହାସ ସମାପ୍ତ ।



କୋଶଳ ଭବଙ୍ଗ ଗ୍ରନ୍ଥମାଳା—୨ନମ୍ବର

ଦ୍ୱିତୀୟ ଭାଗ ।

ସଂ କ୍ଷି ପ୍ତ

# କୋଶଳ ବା ସମ୍ବଲପର
# ଇତିହାସ ।



# ଦ୍ୱିତୀୟ ଭାଗ ।

## ସଂକ୍ଷିପ୍ତ କୋଶଳ

ବା

# ସମ୍ବଲପୁର ଇତିହାସ ।

## ପ୍ରଥମ ପରିଚ୍ଛେଦ ।

### (ସମ୍ବଲପୁର ରାଜ୍ୟ)

ଅତପୂର୍ବ କାଳରେ ସମ୍ବଲପୁର ରାଜ୍ୟର ଅସ୍ତିତ୍ୱ ନ ଥିଲା । ବର୍ତ୍ତମାନ ସମ୍ବଲପୁର ନଗର ଯେଉଁ ସ୍ଥାନରେ ସ୍ଥାପିତ ହୋଇଅଛି ପୂର୍ବେ ସେହିସ୍ଥାନ ଅରଣ୍ୟମୟ ଥିଲା ଓ ତାହା ସୁରଗୁଜା ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । କୋଶଳ ବା ପାଟଣା ରାଜ୍ୟର ମହାରାଜା ନରସିଂହ ଦେଓଙ୍କ ସମୟରେ ପାଟଣା ରାଜ୍ୟର ସୀମା ଉତ୍ତରରେ ମହାନଦୀ ପର୍ଯ୍ୟନ୍ତ ଥିବାରୁ ପାଟଣା ମହାରାଜା ନରସିଂହ ଦେଓ ତାଙ୍କର ଭାଇ ବଳରାମ ଦେଓଙ୍କୁ ଏହି ଅଂଶ ଭାଗ ଦେଇଥିଲେ ।

ପାଟଣାର ଗୈହାନ ବଂଶର ମହାରାଜା ନରସିଂହ ଦେବ ୧୫୪୯ ରୁ ୧୫୬୭ ଖ୍ରୀ: ଅ: ପର୍ଯ୍ୟନ୍ତ ରାଜତ୍ୱ କଲେ । ସେ ସମୟରେ ପାଟଣା ରାଜ୍ୟ ରତନପୁ ନଗରର ରାଜା କୃଷ୍ଣ ରାୟଙ୍କର କରଦ ରାଜ୍ୟହୋଇ ରହିଥିଲା । କୃଷ୍ଣ ରାଓଙ୍କର ମୃତ୍ୟୁ ପରେ ତାଙ୍କ ଉତ୍ତରାଧିକାରୀ ଦୁର୍ବଳ ହେଲେ ତେଣୁ ତାଙ୍କର ଅଧୀନସ୍ଥ ରାଜାମାନେ ସ୍ୱାଧୀନ ହେବାକୁ ଲାଗିଲେ । ଏହି ସୁଯୋଗରେ ନରସିଂହଦେଓ ତାଙ୍କ ଭାଇ ବଳରାମ ଦେବଙ୍କର ସାହାଯ୍ୟରେ ସ୍ୱାଧୀନତା ଘୋଷଣାକରି ରତ୍ନପୁରକୁ ଆକ୍ରମଣ କରି ଯୁଦ୍ଧରେ ଜିଣିଲେ ଓ ପାଟଣାର ଅନ୍ତର୍ଭୁକ୍ତ କଲେ ।

ବଳରାମ ଦେଓ ନରସିଂହ ଦେଓଙ୍କର ଗର୍ଭବତୀ ରାଣୀଙ୍କର ପ୍ରସବ ଉଦ୍ଯୋଗରେ ରାତ୍ରରେ ଘୋର ବୃଷ୍ଟି ସମୟରେ ପାଟଣାଗଡ଼ ନିକଟସ୍ଥ ମାୟାବତୀ ନଦୀକୁ ସନ୍ତରଣ କରି ବରପଦର ଗ୍ରାମରୁ ଧାଈ (ସୂତରଣୀ)କୁ ଆଣି ଯଥା ସମୟରେ ଉପସ୍ଥିତକରି ପ୍ରସବକାର୍ଯ୍ୟ ସୁଗ୍ରନ୍ଥ ରୂପେ ନିର୍ବାହ କରିବାରୁ ନରସିଂହ ଦେଓ ତାଙ୍କ ପ୍ରତି ଅତି ସନ୍ତୁଷ୍ଟ ହେଲେ । ରାଜ୍ୟକୁ ସ୍ୱାଧୀନତା ଦାନ ଓ ଯୁବରାଜଙ୍କ ଜନ୍ମ ସମୟରେ ଅଦ୍ଭୁତ ବୀରତାପ୍ରଦର୍ଶନ କରିଥିବାରୁ ତାଙ୍କୁ ପାଟଣାରାଜ୍ୟରପୂର୍ବଅଂଶ ଭାଗଦେଲେ । ସେ ପ୍ରଥମରେ ବଲାଙ୍ଗିରରେ ଗଡ଼ କଲେ ତତ୍ପରେ ନୂଆଗଡ଼କୁ ଓ ଶେଷରେ ବଡ଼ଗଡ଼କୁ ନିର୍ମାଣ କରି ପାଇ ରହିଲେ । ଦିନେ ସେ ମହାନଦୀ କୂଳକୁ ମୃଗୟାକରି ଯାଇଥିଲେ । ଗୁଞ୍ଜନ ତାହାଁ ମିଳିଲା ନାହିଁ, ଶେଷରେ ଗୁଞ୍ଜର-ପୁରରେ ମିଳିବାରୁ ସେହି ଗ୍ରାମର ନାମ ଗୁଞ୍ଜଳପୁର ରଖିଲେ ତାହା ବର୍ତ୍ତମାନ ଗୁଞ୍ଜରପୁର ବୋଲି ଅପଭ୍ରଷ୍ଟ ହୋଇଅଛି । ବଳରାମ ଦେଓ ନଦୀର ଉତ୍ତର ତଟକୁ ମୃଗୟା କରିଗଲେ । ସେଠାରେ ସେ ଗୋଟିଏ ଶଶାକୁ ଦେଖି ତାରପ୍ରତିକୁକ୍କୁର ପ୍ରୟୋଗ

କଲେ । ଶଶ କିଛିଦୂର ହଟିପାଇ କୁକୁରକୁ ଆକ୍ରମଣ କଲା । କୁକୁର ପଛକୁ ହଟିଲା । ଏପରି ତିନିଥର କରି ଶଶ ଅଦୃଶ୍ୟ ହେଲା । ଏଣୁ ବଳରାମ ଦେଓ ଭାବିଲେ ଏହା ବୀରଧାଟି ଅଟେ । ଏଠାରେ ଗଡ଼ ବନାଇଲେ ଅବଶ୍ୟ ଜୟ ହେବ ସେ ରାତ୍ରିରେ ସ୍ୱପ୍ନରେ ଜାଣିଲେ ସେଠାରେ ଥିବା ସେମଲିଗଛ ତଳରେ ଏକଦେବୀ ଅଛନ୍ତି ଯେ କି ତାଙ୍କ ଗଡ ବନାଇବାକୁ ଅନୁମତି ଦେଲେ । ସମ୍ବଲପୁର ସେ ସମୟରେ ସୁବର୍ଣ୍ଣପୁରର ଅନ୍ତର୍ଗତ ଥିଲା ତେଣୁ ତାହାଙ୍କ ଠାରୁ ତାହା ହସ୍ତଗତ କରି ସେଠାରେ ଗଡ଼ ବନାଇଲେ । ଦେବୀଙ୍କୁ ସୋମଲାଇ ନାମ ଦେଲେ । କାଳକ୍ରମେ ଦେବୀଙ୍କ ନାମ ସୋମଲାଇ ଓ ଗଡ଼ର ନାମ ସୋମଲଇ ଗଡ଼ ହେଲା । ତାହା ସମଲାଇ ଦେବୀ ଓ ଗଡରନାମ ସମ୍ବଲପୁର ନାମରେ ଅପଭ୍ରଂଶ ହୋଇଅଛି । କିଛି କାଳପରେ ବଳରାମ ଦେଓ, ନରସିଂହ ଦେଓ ମଧ୍ୟରେ ସୀମା ସମନ୍ଧରେ କଳହ ହେଲା । ବଳରାମ ଦେଓ ତେଲନଦୀ ପର୍ଯ୍ୟନ୍ତ ସମ୍ବଲପୁରର ଦକ୍ଷିଣ ସୀମା ବଢ଼ାଇବାକୁ ଚାହିଁଲେ । କିନ୍ତୁ ନରସିଂହ ଦେଓ ତହିଁରେ ଅସ୍ୱୀକୃତ ହେଲେ । ଶେଷରେ ଉଭୟଙ୍କର ମାତା ଅଙ୍ଗନଦୀ ମଧ୍ୟରେ ପୂର୍ବ ମୁଖୀହୋଇ ବସି ଉଭୟ ପୁତ୍ରକୁ ଉଭୟ ପାର୍ଶ୍ୱରେ ବସାଇ ମୋର ଅଙ୍ଗ ତୁମ୍ଭର ସୀମା ବୋଲି ନିରୂପଣ କରିଦେବାରୁ ସେ ଦୁହେଁ ମାନିଲେ । ପୂର୍ବେ ଏହି ନଦୀର ନାମ ସୁରଙ୍ଗୀ ଥିଲା । ଏହି ଘଟନା ଦିନରୁ ଏହାର ନାମ "ଅଙ୍ଗ" ହେଲା ।

ଏହି ସମ୍ବଲପୁର ରାଜ୍ୟ କେବଳ ଚାରିଶତ ବର୍ଷର ରାଜ୍ୟ ଅଟେ । ଏଥିରେ କେବଳ ଚୌହାନ ବଂଶର ରାଜାମାନେ ରାଜତ୍ୱ କରିଥିଲେ । ଅତଏବ ଏହି ରାଜ୍ୟର ପ୍ରାଚୀନ ଇତିହାସ ପାଇବା ଅସମ୍ଭବ । ଏହାର ପ୍ରାଚୀନ ଇତିହାସ ଖୋଜିଲେ

ପାଟଣା ଇତିହାସ ବୁଝିବାକୁ ହେବ । କାରଣ ଏହା ପାଟଣା ରାଜ୍ୟର ଗୋଟିଏ ଅଂଶ ଅଟେ । ଏହି ରାଜ୍ୟ ମଧ୍ୟରେ ଯେଉଁ ସବୁ ଗଡ଼ କିମ୍ବା ଦେବ ଦେବୀ ମନ୍ଦିର ଅଛି ସେ ସବୁ ଅଧିକ ପ୍ରାଚୀନ କୀର୍ତ୍ତି ନୁହେଁ । ଚୌହାନ ବଂଶର ରାଜା ମାନଙ୍କର ରାଜତ୍ୱ ସମୟରେ ଯେଉଁ କେତେ ଗୋଟି କୀର୍ତ୍ତି ହୋଇଅଛି ସେ ସବୁର ଅସ୍ତିତ୍ୱ ବର୍ତ୍ତମାନ ରହିଅଛି । ଇଂରେଜ ଶାସନ କର୍ତ୍ତାମାନେ ଏହାକୁ ଗୋଟିଏ ଶାଲସାଜିଲ୍ଲା ଅର୍ଥ ଗଡ଼ଜାତ ରାଜ୍ୟମାନଙ୍କର ଶାସନର କେନ୍ଦ୍ରସ୍ଥଳ କରିବାରୁ ଏହା ଗୋଟିଏ ସମୁନ୍ନତ ସହର ହୋଇ ଅଛି ।



## ଦ୍ୱିତୀୟ ପରିଚ୍ଛେଦ ।

## ଚୌହାନବଂଶ

### ବଳରାମ ଦେଓ ୧୫୫୨ ରୁ ୧୫୮୪ ଖ୍ରୀ: ଅ:

ପୂର୍ବ ବର୍ଣ୍ଣିତ ହୋଇଅଛି ଯେ ସମ୍ବଲପୁର ଭୂମ ଖଣ୍ଡିକ ସୁରଗୁଜା ରାଜାଙ୍କ ଅଧୀନରେ ଥିଲା । ବଳରାମ ଦେଓ ଅଗ୍ରଜଙ୍କ ଠାରୁ ଏହି ଅଞ୍ଚଳ ଭାଗ ପାଇଥିବାରୁ ବଳରାମ ଗଡ଼ ବା ବଲ୍ଲ-ଗିର ଓ ନନ୍ଦଗଡ଼ ବା ବରଗଡ଼ ରାଜଧାନୀ ସ୍ଥାପନ କଲା ପରେ ଏହି ସାଲୁଞ୍ଜିର ପୁର ଗଡ ବା ସମ୍ବଲପୁର ଗଡ଼ ସ୍ଥାପନ କଲେ । ଏହି ଗଡସ୍ଥାପିତ ହେଲା ସମୟରେ ସୁରଗୁଜା ରାଜା ବାଧା ଦେବାରୁ ତାଙ୍କ ସଙ୍ଗେ ଲଢ଼ାଇ କଲେ । ଫଳରେ ସୁରଗୁଜା ରଜା ପରାସ୍ତ ହୋଇ ନିଜ ଦୁହିତାଙ୍କ ସଙ୍ଗେ ବଳରାମ ଦେଓଙ୍କୁ ବିବାହ କରାଇ ସମ୍ବଲପୁର ସ୍ଥାପିତ ହୋଇ ଥିବା ଭୂମି ଖଣ୍ଡିକ ଯୌତୁକ ସ୍ୱରୂପ ଦାନ କଲେ ।

ବଳରାମ ଦେଓଙ୍କ ୩ଟି ରାଣୀ ଥିଲେ । ପ୍ରଥମ ସୁରଗୁଜା ରାଜ ନନ୍ଦନୀ ୨ୟ ଗାଙ୍ଗପୁର ରାଜ କୁମାରୀ ୩ୟ ବିଶାଇ

ଠାକୁରଙ୍କ ଦୁହିତା ୪ର୍ଥ ଜୟୁ ଦଣ୍ଡସେନାଙ୍କ କନ୍ୟା ୫ମ ଦୟା ରାହୁତଙ୍କ ଝିଅ ପ୍ରଥମ ରାଣୀଙ୍କ ପୁତ୍ର ସନ୍ତାନ ନ ଥିଲେ । ୨ୟ ରାଣୀଙ୍କ ଗର୍ଭରୁ ହୃଦେ ନାରାୟଣ ଦେଓ ଜନ୍ମ ଗ୍ରହଣ କରିଥିଲେ ।

ବାମଣ୍ଡା ଆଦି ରାଜ୍ୟମାନ ବିଜୟ ନଗର ରାଜାଙ୍କର ଅଧୀନରୁ ବିଚ୍ୟୁତ ହୋଇ ସ୍ୱାଧୀନ ହୋଇଥିଲେ ।ତେଣୁ ବଳରାମ ଦେଓ ବାମଣ୍ଡାକୁ ନିଜ ଅଧୀନରେ ରଖିବାକୁ ଚେଷ୍ଟା କଲେ । ବାମଣ୍ଡା ରାଜା ଅଧୀନତା ସ୍ୱୀକାର ନ କରିବାରୁ ବଳରାମ ଦେଓ ତାହାଙ୍କ ସଙ୍ଗେ ଲଢ଼ାଇ କରି ଜୟ କଲେ ଓ ବାମଣ୍ଡା ରାଜ୍ୟ ନିଜ ଅଧୀନରେ ରଖିଲେ । ଅନନ୍ତର ଗାଙ୍ଗପୁର ରାଜ୍ୟ ନିଜ ଅଧୀନରେ ରଖିବା ଉଦ୍ଦେଶ୍ୟରେ ସମ୍ବଲପୁରର ଅଧୀନତା ସ୍ୱୀକାର କରିବାକୁ ଗାଙ୍ଗପୁର ରାଜାଙ୍କୁ କହିଲେ । ସେ ତହିଁରେ ଅସମ୍ମତ ହେବାରୁ ତାଙ୍କ ସଙ୍ଗେ ଲଢ଼ାଇ କରି ଜୟ କଲେ । ଫଳରେ ଗାଙ୍ଗପୁର ରାଜା ସମ୍ବଲପୁରର ସାମନ୍ତ ରାଜା ହୋଇ ରହିଲେ ।

ଅନନ୍ତର ରାଜା ବଳରାମଦେଓ ସୁରଗୁଜା ରାଜ୍ୟ ଅଧିକାର କରିବାକୁ ଚେଷ୍ଟା କଲେ । ଏଥିପାଇଁ ସୁରଗୁଜା ରାଜା ବାଧା ଦେବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ସୁରଗୁଜା ରାଜା ପରାସ୍ତ ହେଲେ । ସୁରଗୁଜା ରାଜା ଯୁଦ୍ଧ କ୍ଷେତ୍ରକୁ ବିଷ୍ଣୁଙ୍କର ଅନନ୍ତ ଶଯ୍ୟା ମୂର୍ତ୍ତି ସଙ୍ଗରେ ଆଣିଥିଲେ । ସେ ପରାସ୍ତ ହୋଇ ଫେରିଯିବା ସମୟରେ ଅନନ୍ତ ଶଯ୍ୟା ମୂର୍ତ୍ତିଟି ଛାଡ଼ି ଗଲେ । ତେଣୁ ବଳରାମ ଦେଓ ସୁରଗୁଜାର ଦକ୍ଷିଣ ଅଂଶ ଅଧିକାର କରି ମୂର୍ତ୍ତିଟିକୁ ଆଣି ସମ୍ବଲପୁର ଗଡ଼ ମଧ୍ୟରେ ରଖିଲେ । ଏହାପରେ ରାଜା ବଳରାମ ଦେଓ ବଣାଇ ରାଜା ସଙ୍ଗରେ ମଧ୍ୟ ଲଢ଼ାଇ କରି ତାଙ୍କୁ ନିଜ ଅଧୀନରେ ରଖିଲେ ।

ପାଟଣା ମହାରାଜ ନରସିଂହ ଦେଓ ୧୮୫୭ ଖ୍ରୀ: ଅ: ରେ ପରଲୋକ ଗମନ କରିବାରୁ ପାଟଣା ଯୁବରାଜ ହରିହର ଦେଓଙ୍କୁ ବଳସ୍ୱାମ ଦେଓ ପାଟଣା ରାଜ ଗାଦିରେ ଅଭିଷେକ କଲେ । ହରିହର ଦେଓ ୩ ବର୍ଷ ମାତ୍ର ରାଜ୍ୟ ଶାସନ କରି ପର-ଲୋକ ଗମନ କରିବାରୁ ତାହାଙ୍କର ୭ମାସର ପୁତ୍ର ପ୍ରତାପ ଦେଓଙ୍କୁ ଗାଦି ନସିନ କରି ବିଧବା ରାଣୀଙ୍କ ହସ୍ତରେ ରାଜ୍ୟ ଶାସନଭାର ଅର୍ପଣକରି ସମ୍ବଲପୁରକୁ ଫେରିଗଲେ କିନ୍ତୁ ବିଧବା ରାଣୀଙ୍କ ମନ୍ତ୍ରୀମାନେ ଅତ୍ୟାଚାର ଆରମ୍ଭ କରିବାରୁ ସେମାନଙ୍କୁ ତଡ଼ି ଦେଲେ । ସେ ସଙ୍ଗେ ୨ ରାଣୀ ମଧ୍ୟ ମନ୍ତ୍ରିମାନଙ୍କ କୁମନ୍ତ୍ରଣାରେ ପଡ଼ି ନିଜ ବାପଘର ନନ୍ଦପୁରକୁ ଶିଶୁକୁ ଘେନି ବାହାରି ଗଲେ । ଏଣୁ ବଳରାମ ଦେଓ ବିଧବା ରାଣୀ ଓ ପାଟଣା ମହାରାଜା ପ୍ରତାପ ଦେଓଙ୍କ ଖର୍ଚ୍ଚପାଇଁ ମାସକୁ ମାସ ଏଲାଉନ୍ସ ପଠାଇ ନାବାଳକ ମହାରାଜା ପ୍ରତାପ ଦେଓଙ୍କ ପକ୍ଷରୁ ସମ୍ବଲପୁରର ଯୁବରାଜ ହୃଦେ ନାରାୟଣ ଦେଓଙ୍କୁ ପାଟଣା ରାଜ୍ୟର ଶାସନ ଭାର ଅର୍ପଣ କରି ଦେଲେ ।

ବ୍ରାହ୍ମଣ ଓ ଅନ୍ୟାନ୍ୟ ଜାତିର ଯେତେ ଲୋକ ରାଜକାର୍ଯ୍ୟ କରିବାକୁ ସମ୍ବଲ ପୁରକୁ ପାଟଣାରୁ ଯାଇ ଥିଲେ ସେମାନଙ୍କ ରହିବା ନିମନ୍ତେ ସମ୍ବଲପୁରରେ ଭୂମି ଦେଇ ବହିବା ନିମନ୍ତେ ଆଦେଶ ଦେଇ ଥିଲେ । ପାଟଣାରେ ଥିବା ଆଠମଲ୍ଲିକ ମଧ୍ୟରୁ କେଳଟ ଜାତୀୟ ଜଣେ ମଲ୍ଲିକ ମଧ୍ୟ ତାଙ୍କ ସଙ୍ଗେ ଯାଇ ସୈନ୍ୟ ବିଭାଗରେ ଭୁକ୍ତ ହୋଇ ସମ୍ବଲପୁରରେ ରହୁ ଥିଲେ । ଏହାଛଡ଼ା ଅନ୍ୟାନ୍ୟ ଦେଶରୁ ମଧ୍ୟ ଯେତେ ଲୋକ ଆସିଲେ ସେମାନଙ୍କୁ ମଧ୍ୟ ଭୂମି ଦେଇ ବସ୍ତିର ଆକାର କରାଇ ଥିଲେ । ସମ୍ବଲପୁର ବସ୍ତିକୁ ଗୋଟିଏ ଗଡ଼କରି ବାନ୍ଧି ଦେଇ ଥିଲେ । ତାଙ୍କ ସମୟରେ ବସ୍ତିର ଆକାର ମୁହାଣ

ଧର୍ଜାରୁ ସମଲାଇ ଧର୍ଜା ପର୍ଯ୍ୟନ୍ତ ଉତ୍ତରରେ ଛତ୍ର ସାଗର ଦକ୍ଷିଣରେ ମହାନଦୀ ପର୍ଯ୍ୟନ୍ତ ଥିଲା ବ୍ରାମଜୀ ମନ୍ଦିରର ପଶ୍ଚିମ ଦିଗସ୍ଥ ମହଲ ବଳରାମ ଦେଓ ଉଦ୍ଧାର କରାଇ ଥିଲେ । ବାମଜୀ ମନ୍ଦିରର ପୂର୍ବକୁ ଯେଉଁ ଠାରେ କି ପାଟଣା ରାଜ-ପ୍ରସାଦ ଉଦ୍ଧାର ହୋଇ ଅଛି ସେଠାରେ କେମାଦେଇ ମହଲ ନାମରେ ଗୋଟିଏ ମହଲ ଥିଲା । ସମ୍ବଲପୁର ଗଡ଼ ମଧ୍ୟରେ ଅନନ୍ତ ଶଙ୍ଖ୍ୟା, ସମଲେଶ୍ୱରୀ, ପାଟେଶ୍ୱରୀ ଦେବ ଦେବୀଙ୍କ ଅସ୍ଥାନ ମାନ କରି ଥିଲେ । ପରେ ସେ ସବୁସ୍ଥାନରେ ମନ୍ଦିର ନିର୍ମାଣ କରା ଗଲା ।

ମହାରାଜା ବଳରାମ ଦେଓଙ୍କ ରାଜତ୍ୱ ସମୟରେ କଳା-ପାହାଡ଼ ସମ୍ବଲପୁରକୁ ଅସିଥିଲା । ସେ ପୂର୍ବରେ ବ୍ରାହ୍ମଣ ଥିଲା । ସେ ବଙ୍ଗର ନବାବ ସୁଲେମାନଙ୍କର ସେନାପତି କାର୍ଯ୍ୟ କରୁଥିଲା । ସେ ଜଣେ ସୁନ୍ଦର ପୁରୁଷଥିବାରୁ ସୁଲେ-ମାନ ତାକୁ ପଠାଣକରି ନିଜଝିଅସଙ୍ଗେ ବିବାହ କରିଦେଲେ । ଏପରି ସେ ଜାତ୍ୟାନ୍ତର ହେବାରୁ ବ୍ରାହ୍ମଣମାନେ ତାକୁ ଘୃଣା କଲେ । ସେହି ହେତୁରୁ ସେ ହିନ୍ଦୁଧର୍ମ୍ମର ବିରୋଧି ହୋଇ ହିନ୍ଦୁ ଦେବ ଦେବୀଙ୍କ ମୂର୍ତ୍ତି ଭାଙ୍ଗି ନଷ୍ଟ କରିବାକୁ ଅରମ୍ଭ କଲା । ସେ ସୁଲେମାନଙ୍କ ଅଦେଶରେ ସୈନ୍ୟ ସହ ଓଡ଼ିଶା ଆକ୍ରମଣ କରି ଜଗନ୍ନାଥଙ୍କ ମୂର୍ତ୍ତି ଭାଙ୍ଗି ପୋଡ଼ାଇ ଦେଲା । ବିଶାଇ ମାହାନ୍ତି ନାମରେ ଜଣେ ଲୋକ ଜଗନ୍ନାଥଙ୍କ ପୋଡ଼ା ମୂର୍ତ୍ତି ଆଣି ପାଣିରେ ଲୁଚାଇ କାକମୁହାଣରେ ରଖିଲେ । ଏହା-ପରି ଭାବରେ କଳା ପାହାଡ଼ ବୌଦ ସୋନପୁର ବାଟରେ ସୈନ୍ୟ ସହ ସମ୍ବଲ ପୁରକୁ ଅସି ଯୁଦ୍ଧ କଲା । ସମ୍ବଲ ପୁର ଅତି ଦୁର୍ଭେଦ୍ୟ ଗଡ଼ ଥିବାରୁ ଗଡ଼ ମଧ୍ୟକୁ ପଶି ନପାରି ଗଡ଼ ବାହାରେ ଛାଉଣୀ କରି ରହିଲା । ସମଲେଶ୍ୱରୀ ଦେବୀ ମାଲୁଣୀ,

ଗୌଉଣୀ କେଶରେ ସେହି ସୈନ୍ୟ ଗ୍ରଭଣୀଙ୍କୁ ଫୁଟି, କାକୁଡ, ଦହି, ଦୁଧ, ବିକି ଯାଉଥିଲେ । ଯେଉଁ ସୈନ୍ୟ ମାନେ ସେସବୁ କିଣି ଖାଇଲେ ସେମାନେ ମରି ଯାଉ ଥିଲେ । ଶେଷରେ ସେମାନଙ୍କ ମଧ୍ୟରେ ବିଶୁଚିକା ଓ ବସନ୍ତ ହେବାରୁ ଅନେକ ସୈନ୍ୟ ମୃତ୍ୟୁ ହେଲେ । କଳା ପାହାଡ ପଳାଇ ଗଲା । ପ୍ରବାଦ ଅଛି ସେ ଗର୍ଭିଣୀ ସ୍ତ୍ରୀ ମାନଙ୍କୁ ମାରି ସେମାନଙ୍କ ପେଟର ଚର୍ମରେ ତାହାର ଢୋଲ୍ ଆଦି କରିଥିଲା । ସେ ସବୁ ଲୁହାର ଢୋଲ୍ ନିଶାଣ ଏପର୍ଯ୍ୟନ୍ତ ସମଲାଇ ମନ୍ଦିରରେ ସଞ୍ଚିତ ହୋଇ ରହି ଅଛି । ମହାରାଜା ବଳରାମ ଦେଓ ୧୫୮୪ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ହୃଦେ ନାରାୟଣ ଦେଓ ।

### ୧୫୮୪-୧୬୦୨ ଖ୍ରୀ: ଅ:

ମହାରାଜା ବଳରାମ ଦେଓଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ହୃଦେ ନାରାୟଣ ଦେଓ ସମ୍ବଲ ପୁର ରାଜ ଗାଦିରେ ପ୍ରତିଷ୍ଠିତ ହେଲେ । ସେ ସୈନ୍ୟ ବିଭାଗ, ଅସ୍ତ୍ରାଗାର, ଭଣ୍ଡାର, ବିଚାରାଳୟ ଆଦି କାର୍ଯ୍ୟାଳୟ ମାନଙ୍କୁ ବିଶେଷ ଉନ୍ନତ କରିଥିଲେ ପିତାଙ୍କ ସମୟରେ ସମଲେଶ୍ୱରୀ ମନ୍ଦିର ସ୍ଥାପିତ ହୋଇ ଦୈନନ୍ଦିନ ଖଞ୍ଜାର ସୁବନ୍ଦୋବସ୍ତ ହୋଇ ଥିଲା ।

ମହାରାଜା ହୃଦେ ନାରାୟଣ ଦେଓ ସମ୍ବଲପୁରରେ ଇଷ୍ଟ ଦେବୀ ପାଟଣେଶ୍ୱରୀଙ୍କ ମନ୍ଦିର ନିର୍ମାଣ କରାଇ ଚନ୍ଦ୍ରହାସିନୀଙ୍କୁ ମନ୍ଦିର ଆଗରେ ପ୍ରତିଷ୍ଠିତ କରାଇ ଥିଲେ ଓ ସେମାନଙ୍କର ଦୈନନ୍ଦିନ ଖଞ୍ଜାର ସୁବନ୍ଦୋବସ୍ତ କରି ଦେଇଥିଲେ ।

ପ୍ରବାଦ ଅଛି ପାଟମେଶ୍ୱରୀ ଦେବୀଙ୍କ ମୂର୍ତ୍ତି ନିର୍ମାଣ କଲା ସମୟରେ ମିସ୍ତ୍ରୀ ପ୍ରଥମରେ କଳା ମୁଗୁନି ପଥରରେ ମୁଖ ଖୋଳିଲା ବେଳେ ରକ୍ତ ବାନ୍ତିକରି ମୃତ୍ୟୁ ମୁଖରେ ପତିତ ହେଲା । ଏହା ଦେଖି ରାଜା ଓ ସର୍ବ ସାଧାରଣ ଲୋକେ ଭୟ କଲେ । ମହାରାଜା ହୃଦେ ନାରାୟଣ ଦେଓ ଦେବୀଙ୍କ ମୂର୍ତ୍ତି ପୂର୍ଣ୍ଣ କରିବାକୁ କଣ କରି ଯିବ କିଛି ସ୍ଥିର କରି ପାରିଲେ ନାହିଁ । ରାତରେ ଦେବୀ ସ୍ୱପ୍ନରେ ମହାରାଜାଙ୍କୁ ଆଦେଶ ଦେଲେ "ମତେ ପାଦ ଆଡ଼ୁ ନଗଢ଼ି ମୁଖ ଆଡ଼ୁ ଗଢ଼ିବାରୁ ମିସ୍ତ୍ରୀର ଏପରି ହେଲା । ହେଲେହେଁ ନେତ୍ର ସହିତ ମୁଖାରବିନ୍ଦ କେବଳ ଗଢ଼ି ସମ୍ପୂର୍ଣ୍ଣ କରିଦିଅ । ମହାରାଜା ଏହି ଆଦେଶ ପାଇ କେବଳ ମୁଖାରବିନ୍ଦ ଗଢ଼ାଇ ନେତ୍ର ଖଞ୍ଜାଇଲେ । ଦେବୀଙ୍କର ଗ୍ରୀବାରୁ ପାଦ ପର୍ଯ୍ୟନ୍ତ ଗଢ଼ା ହେଲା ନାହିଁ ସେପରି ଭାବରେ ମୂର୍ତ୍ତିଙ୍କୁ ସ୍ଥାପନ କରିଦେଲେ ।

ମହାରାଜା ରାଜ୍ୟ ବୃଦ୍ଧି କରିବା ଇଚ୍ଛାରେ ସୈନ୍ୟ ସଞ୍ଚିତ କରିବାକୁ ଲାଗିଲେ । ସେ ସମୟରେ ରାଇଗଡ଼ ଓ ତାହାଁର ନିକଟସ୍ଥ ବରଗଡ଼ ରାଜ୍ୟ ସ୍ୱାଧୀନ ଥିଲା । ତେଣୁ ମହାରାଜା ସେହି ରାଜ୍ୟମାନଙ୍କୁ ପ୍ରଥମେ ଆକ୍ରମଣ କଲେ । ସେମାନେ ମହାରାଜାଙ୍କ ଗତି ରୋଧ କରିବାକୁ ଯୁଦ୍ଧ କଲେ । କିନ୍ତୁ ପରାଜିତ ହୋଇ ସମ୍ବଲ ପୁରର ଅଧୀନତା ସ୍ୱୀକାର କଲେ ।

ମହାରାଜା ହୃଦେ ନାରାୟଣ ଦେଓଙ୍କ ୩ଟି ରାଣୀ ଥିଲେ । ପ୍ରଥମ—ଗାଙ୍ଗପୁର ରାଜନନ୍ଦିନୀ ୨ୟ—ବଳରାମ ଚିତାଙ୍କ ଦୁହିତା ୩ୟ—ବଣାଇର କଦମ୍ବ ବଂଶୀୟ ରାଜକୁମାରୀ ଥିଲେ । ପ୍ରଥମ ରାଣୀ ଅପୁତ୍ରିକ ୨ୟ ରାଣୀଙ୍କ ଗର୍ଭରୁ ସମ୍ବଲପୁର ଯୁବରାଜ ବଳଭଦ୍ର ସାଏ ଜନ୍ମ ଗ୍ରହଣ କଲେ । ୩ୟ ରାଣୀଙ୍କ ତିନୋଟି ପୁତ୍ର ଥିଲେ । ବଡ଼—ବିନାୟକ ସାଏ, ମଧ୍ୟମ—

ଜଯ୍ସିଂ ସାଏ କନିଷ୍ଠ—ଘାସି ସାଏ ଅଟନ୍ତି । ବିନାୟକ ସାଏଙ୍କୁ ଧମାଇଲାବା, ଜୟସିଂ ସାଏଙ୍କୁ ବରଗଡ଼ ଇଲାକାର ଶାସନ କର୍ତ୍ତା କରିଦେଲେ ଓ ଘାସି ସାଏ ମାତାଙ୍କ ସଙ୍ଗରେ ସମ୍ବଲପୁରରେ ଥିଲେ ।

ଏହି ସମୟରେ ପାଟଣା ରାଜ୍ୟର କେତେ ଜମୀଦାର ପାଟଣା ମହାରାଜାଙ୍କୁ ଅବମାନନା କରିବାରୁ ମହାରାଜା ହୃଦେ ନାରାୟଣ ଦେଓ ସେମାନଙ୍କୁ ଦମନ କରି ରାଜ୍ୟ ନିଷ୍କଣ୍ଟକ କରି ଦେଲେ । ସେ ୧୮ ବର୍ଷ ରାଜତ୍ୱ କରି ୧୬୦୨ ଖ୍ରୀ ଅଃ ରେ ପରଲୋକ ଗମନ କଲେ ।



## ବଳଭଦ୍ର ସାଏ ।

### ୧୬୦୨—୧୬୩୨ ଖ୍ରୀ: ଅ:

ମହାରାଜା ହୃଦେ ନାରାୟଣ ଦେଓଙ୍କ ପରଲୋକ ପରେ ତାହାଙ୍କର ଜ୍ୟେଷ୍ଠ ପୁତ୍ର ବଳଭଦ୍ର ସାଏ ପୈତୃକ ସିଂହାସନ ଅଧିକାର କଲେ । ସେ ତାଙ୍କର ପିତାଙ୍କ ପରି ରାଜ୍ୟର ସମସ୍ତ ବିଷୟକୁ ସୁଦୃଷ୍ଟି ଦେଇ ରାଜ୍ୟ ଶାସନ କରିବାକୁ ଲାଗିଲେ । ସୈନ୍ୟ ବିଭାଗର ଉନ୍ନତି କରି ରାଜ୍ୟ ବୃଦ୍ଧି କରିବାକୁ ଚେଷ୍ଟା କଲେ । ସେ ପ୍ରଥମରେ ସାରଂଗଡ଼ ରାଜ୍ୟ ଆକ୍ରମଣ କଲେ । ସାରଂଗଡ ରାଜା ତାଙ୍କୁ ବାଧା ଦେବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ସାରଂଗଡ଼ ରାଜା ପରାସ୍ତ ହୋଇ ବଶତା ସ୍ୱୀକାର କଲେ । ତତ୍ପରେ ମହାରାଜା ବଳଭଦ୍ର ସାଏ ଫୁଲଝର ଓ ଚନ୍ଦ୍ରପୁର ଆକ୍ରମଣ କରି ସମ୍ବଲପୁରର ଅଧୀନ କଲେ ।

ମହାରାଜା ବଳଭଦ୍ର ସାଏଙ୍କ ୫ଟି ରାଣୀ ଥିଲେ । ପାଟରାଣୀ ଭାଙ୍ଗପୁର ରାଜ ନନ୍ଦନୀ ୨ୟ ବାମଣ୍ଡା ରାଜନନ୍ଦନୀ ୩ୟ

ବଣାଇ ରାଜନନ୍ଦିନୀ ୪ର୍ଥ ରାଇପୁରବଥା ରାଜାଙ୍କ ଦୁହିତା ୫ମ ଶିହାଙ୍କର ଦୁହିତା ଅଟନ୍ତି । ପାଟ-ମହାଦେଈଙ୍କ ଗର୍ଭରୁ ମଧୁକର ସାଏ ୨ୟ ରାଣୀଙ୍କ ଗର୍ଭରୁ ବଣ୍ଠନାଥ ସାଏ ତୃତୀୟ ରାଣୀଙ୍କ ଗର୍ଭରୁ ଧ୍ରୁବ ସାଏ ଜନ୍ମ ଗ୍ରହଣ କରି ଥିଲେ ।

ମହାରାଜା ବଳଭଦ୍ର ସାଏ ଚନ୍ଦ୍ରପୁର ଓ ବର୍ଗଡ଼ାରେ ଗଡ଼ ପାଚେରି ତିଆରି କରାଇ ଚହିଁର ପରିଖା ମାନ ଖୋଳାଇଲେ । ସେ ଜଣେ ଶିବଭକ୍ତ ମହାରାଜା ଥିଲେ । ସମ୍ବଲପୁରର ପୂର୍ବ ଦିଗରେ ୫ମାଇଲ ଦୂରରେ ଗୋଟିଏ ଶିବାଳୟ ଥିଲା । ମହାରାଜା ପ୍ରତ୍ୟହ ସେଠାକୁ ଦର୍ଶନ କରି ଯାଇ ଫେରି ଆସି ଭୋଜନ କରୁଥିଲେ । ଦିନେ ବର୍ଷାଋତୁରେ ମାଳତୀଯୋର ପ୍ରବଳ ଭାବରେ ବଢିଲା । ମହାରାଜା ନଦୀ ଅତିକ୍ରମ କରି ନପାରି ୩ଦିନ ପର୍ଯ୍ୟନ୍ତ ନଦୀ କୂଳରେ ଭୋକରେ ପଡ଼ି ରହିଲେ । ମହାଦେବ ଏହି କଷ୍ଟ ଦେଖି ମହାରାଜାଙ୍କୁ ସ୍ୱପ୍ନରେ ଆଦେଶ ଦେଲେ ଯେ ତୁମ୍ଭେ ଗଡ଼ ମଧ୍ୟରେ ଗୋଟିଏ ଶିବ ମନ୍ଦିର ତିଆରି କର ଆମ୍ଭେ ତହିଁରେ ଆବିର୍ଭାବ ହେବୁଁ । ମହାରାଜା ଏହି ହୁକୁମ ପାଇ ଫେରିଆସି ଗଡ଼ ମଧ୍ୟରେ ଗୋଟିଏ ଶିବ ମନ୍ଦିର ନିର୍ମାଣ କରାଇଲେ ଓ ପ୍ରତିଦିନ ଦର୍ଶନ କରିବାକୁ ଲାଗିଲେ । ଏହି ମନ୍ଦିର ମୁହାଣ-ଦର୍ଗାରେ ଅଛି । ଏହି ମହାଦେବ ମନ୍ଦିରକୁ ସାମେଶ୍ୱର ବା ସାମିସୁଁ ମନ୍ଦିର ବୋଲାଯାଏ । ଏହି ମହାରାଜା ସମ୍ବଲପୁରରେ 'ଢାଲୁ ମହଲ' ନାମରେ ଗୋଟିଏ ମହଲ ତିଆରି କରାଇ ଥିଲେ । ଏହାଙ୍କ ରାଜତ୍ୱ ସମୟରେ ଛତିଶଗଡ଼ ତରଫରୁ ଅନେକ ଲରିଆ ସୁନାରି, ଲରିଆ ବ୍ରାହ୍ମଣ ଓ ମୁସଲମାନ ଆସି ଗଡ଼ମଧ୍ୟରେ ମହାରାଜାଙ୍କ ଅନୁମତି ନେଇ ବସତି କଲେ । ଗଡ଼ମଧ୍ୟରେ ସ୍ଥାନ ନିଅଣ୍ଟ ହେବାରୁ ଗଡ଼ର ବାହାରେ

ସେମାନଙ୍କୁ ସ୍ଥାନ ଦିଅଯାଇ ଥିଲା । ମହାରାଜା ବଳଭଦ୍ର ସାଏ ଧର୍ମପରାୟଣ ରାଜାଥିଲେ । ସେ ନ୍ୟାୟରେ ୧୯ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରି ୧୬୩୨ ଖ୍ରୀ:ଅ:ରେ ପରଲୋକ ଗମନ କଲେ ।



## ମଧୁକର ସାଏ ।

### ୧୬୩୨—୧୬୪୮ ଖ୍ରୀ: ଅ:

ମହାରାଜା ବଳଭଦ୍ର ସାଏଙ୍କ ମୃତ୍ୟୁ ପରେ ତାହାଙ୍କର ଜ୍ୟେଷ୍ଠ ପୁତ୍ର ମଧୁକର ସାଏ ପିତୃ ସିଂହାସନରେ ଅଭିଷିକ୍ତ ହେଲେ । ଏହି ମହାରାଜା ମଧ୍ୟ ସମସ୍ତ ବିଭାଗକୁ ସୁଦୃଷ୍ଟି ଦେଇ ରାଜ୍ୟ ଶାସନ କରିବାକୁ ଲାଗିଲେ । ନଗରବାସୀଙ୍କ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ମହାନଦୀର ଜଳ ପରିଷ୍କାର ରଖାଯିବାର ସୁବନ୍ଦୋବସ୍ତ କରିଥିଲେ ।

ଏହାଙ୍କର ୬ଟି ରାଣୀ ଥିଲେ । ଗାଙ୍ଗପୁର ରାଜାଙ୍କ ଦୁହିତା ପାଟମହାଦେଈ ବାମଣ୍ଡା ରାଜାଙ୍କ ଦୁହିତା ୨ୟ, ବଲାଙ୍ଗିର ନିବାସୀ କୃଷ୍ଣ ସିଂହ ବାବୁଙ୍କ ଝିଅ ୩ୟ, ବରପଦର ଜଗନ୍ନାଥ ଝଙ୍କରଙ୍କ ଝିଅ ୪ର୍ଥ, ନରସିଂହପୁରର ବାରପଦା ଗଡ଼ର ଯଦୁନାଥ ଝଙ୍କରଙ୍କ ଝିଅ ୫ମ, ଓ ଲଣ୍ଡାଙ୍କର ଝିଅ ୬ଷ୍ଠ ରାଣୀ ଥିଲେ । ପଞ୍ଚମ ରାଣୀଙ୍କ ଗର୍ଭରୁ ବଣୀ ଗୋପାଳ, ମଦନ ଗୋପାଳ ଓ ଅନନ୍ତ ସାଏ ଜନ୍ମ ଗ୍ରହଣ କରିଥିଲେ । ଷଷ୍ଠ ରାଣୀଙ୍କ ଗର୍ଭରୁ ଭଞ୍ଜୀଅର ସିଂହ ଓ ଅନିରୁଦ୍ଧ ସାଏ ଜନ୍ମ ଗ୍ରହଣ କରିଥିଲେ । ମହାରାଜା ମଧୁକର ସାଏ ରାଜ୍ୟ ବୃଦ୍ଧି କରିବା ଉଦ୍ଦେଶ୍ୟରେ ବିଶାଳ ସୈନ୍ୟ ସଂଗ୍ରହ କଲେ ।

ତେଲ୍ ନଦୀ ଓ ମହାନଦୀର ସଙ୍ଗମ ସ୍ଥଳରେ ପାଟଣା ମହାରାଜାଙ୍କ ସ୍ୱାସ୍ଥ୍ୟକର ରାଜଧାନୀ "Sanitorium" ସୋନ

ପୁର ଥିଲା । ଏପର୍ଯ୍ୟନ୍ତ ଏହି ସୋନପୁର ନଗର ଏହି ସ୍ଥଳରେ ଅଛି । ତହିଁରେ ଡୋମଗଣ୍ଡ ନାମକ ଜଣେ ଗଡ଼ତ୍ୟା ପାଟଣା ମହାରାଜାଙ୍କ ଦ୍ୱାରା ନିଯୁକ୍ତ ହୋଇ ଶାସନ କରୁଥିଲେ । ସୋନପୁରର ପୂର୍ବବର୍ତ୍ତି ଡୋମ ଝରଅ ନାମକ ଭୂମି ଖଣ୍ଡରେ ସେ ଗୃହ ତୟାର କରି ବାସ କରୁଥିଲେ । ମହାରାଜା ମଧୁକର ସାଏ ଏହି ନଗର ଅଧିକାର କରିବା ଉଦ୍ଦେଶ୍ୟରେ ସୈନ୍ୟ ପଠାଇ ଯୁଦ୍ଧରେ ଡୋମ ଗଣ୍ଡକୁ ପରାସ୍ତ କଲେ ଓ ଏହି ନଗରଟି ଛାଡ଼ିଦେବା ନିମନ୍ତେ ପାଟଣା ମହାରାଜାଙ୍କୁ ଅନେକ ଅନୁରୋଧ କରି ରାଜି କରାଇଲେ ।

ମହାରାଜା ମଧୁକର ସାଏ ଅନିରୁଦ୍ଧ ସାଏଙ୍କୁ ଖିଣ୍ଡା ପ୍ରଗଣା ଦେଇଥିଲେ । ମଦନ ଗୋପାଳଙ୍କୁ ସୋନପୁର ନଗର ଓ ଜଫୁଲ୍ଲ ଦେଶ ଦେଲେ । ବଂଶୀ ଗୋପାଳ ବୈଷ୍ଣବ ହେଲେ । ସେ ଜଫୁଲ୍ଲ ଇଲାକାରୁ ପେଜଁ କେତେ ଖଣ୍ଡ ଗ୍ରାମ ପାଇଥିଲେ ତାହା ସୋନପୁରରେ ଗୋପାଳଜି ମନ୍ଦିର ତୟାର କରାଇ ତହିଁରେ ରାଧାକୃଷ୍ଣ ମୂର୍ତ୍ତି ସ୍ଥାପନ କରି ଏହିସବୁ ଗ୍ରାମ ସେ ଚଢ଼ାଇ ଦେଲେ । ମଦନ ଗୋପାଳ ସୋନପୁରରେ ସିଂହାସନ ସ୍ଥାପନ କରି ସୋନପୁର ରାଜ୍ୟ ଶାସନ କରିବାକୁ ଲାଗିଲେ । ମହାରାଜା ବଳରାମ ଦେଓଙ୍କ ସଙ୍ଗେ ପାଟଣାରୁ ପେଜଁ କେଉଟ ଜାତୀୟ ମଲ୍ଲିକ ଜଣେ ପାଇ ସମ୍ବଲପୁରରେ ରହୁଥିଲେ, ସେହି କେଉଟ ଜାତୀୟ ମଲ୍ଲିକ ବଂଶରୁ ଜଣେ ଏହାଙ୍କ ସହିତ ସୋନପୁରକୁ ଆସି ସୈନ୍ୟ ବିଭାଗରେ କାର୍ଯ୍ୟ କରିବାକୁ ଲାଗିଲେ । ଏହାଙ୍କର ବଂଶଧରମାନେ ଏ ପର୍ଯ୍ୟନ୍ତ ସୋନପୁର ମହାରାଜାଙ୍କ ଗୃହକର୍ମ କରି ଆସୁ ଅଛନ୍ତି । ମହାରାଜା ମଦନ ଗୋପାଳଙ୍କ ରାଜତ୍ୱ ସମ୍ବନ୍ଧରେ କୋଶଳ ବା ସୋନପୁର ଇତିହାସରୁ ଜଣାପଡ଼ିବ ।

ଯେଉଁ ଅନିରୁଦ୍ଧସିଂହ ଖିଣ୍ଡା ପ୍ରଗଣା ପାଇଥିଲେ ତାହାଙ୍କର ଦୁଇଟି ପୁତ୍ର ଥିଲେ । ରାଜ ସିଂହ ଓ ମାଧସିଂହ । ସେ ଦୁହେଁ ଖିଣ୍ଡା ପ୍ରଗଣା ଦୁଇ ଭାଗରେ ବିଭକ୍ତ କଲେ । ସାନଭାଇ ମାଧ ସିଂହ ଖିଣ୍ଡା ପାଇଲେ ଓ ବଡ଼ଭାଇ ରାଜସିଂହ ଗୋଟିଏ ନୂତନ ନଗର ସ୍ଥାପନ କରି ତହିଁରେ ବାସକଲେ । ସେହି ନଗରର ନାମ ରାଜପୁର ଅଟେ । ରାଜ ସିଂହଙ୍କ ପରେ ତାଙ୍କ ପୁତ୍ର ଦରିଆ ସିଂହଙ୍କ ଦ୍ୱାରା ରାଜପୁର ଶାସିତ ହେଲା । ତାହାଙ୍କ ପରେ ତାଙ୍କ ପୁତ୍ର କୀର୍ତ୍ତନ ସିଂହ ତାଙ୍କପରେ ସର୍ଦ୍ଦାର ସିଂହ ତାହାଙ୍କ ପରେ ଫକିର ସିଂହ ତାଙ୍କପରେ ଧନ ସିଂହ ତାଙ୍କପରେ ଯୁବରାଜ ସିଂହ ବଂଶ ପରମ୍ପରା କ୍ରମେ ରାଜପୁରରେ ଶାସନ କଲେ ।

ମାଧ ସିଂହ ଖିଣ୍ଡା ଇଲାକା ଶାସନ କଲେ । ତାଙ୍କପରେ ଧର୍ମ ସିଂହଙ୍କ ଦ୍ୱାରା ଶାସିତ ହେଲା । ଏହାଙ୍କ ବଂଶରେ ସୁରେନ୍ଦ୍ର ସିଂହ, ଉଦନ୍ତ ସିଂହ ଓ ଉଜ୍ଜ୍ୱଳ ସିଂହ ତିନିଭାଇ ଜନ୍ମ ଗ୍ରହଣ କରିଥିଲେ ।

ମହାରାଜା ମଧୁକର ସାଏ ପୁତ୍ରମାନଙ୍କ ମଧ୍ୟରେ ଉପରୋକ୍ତ ମତେ ରାଜ୍ୟ ବିଭକ୍ତ କରି ସୁରଗୁଜା ରାଜାଙ୍କ ସହ ଲଢ଼ାଇ କରି ସୁରଗୁଜା ରାଜ୍ୟ ଅଧିକାର କରିବାକୁ ଚେଷ୍ଟା କଲେ । ଏଥିରେ ସୁରଗୁଜା ରାଜା ବାଧା ଦେବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା ଯୁଦ୍ଧରେ ସୁରଗୁଜା ରାଜା ପରାସ୍ତ ହେବାରୁ ମହାରାଜା ମଧୁକର ସାଏ ତାଙ୍କୁ ଧରିଆଣି ସମ୍ବଲପୁରରେ ବନ୍ଦକରି ରଖିଲେ, ପରେ ସେ ଅନେକ ବିନୟୀ ହୋଇ ପ୍ରାର୍ଥନା କରିବାରୁ ମୁକ୍ତ କରି ଦେଲେ ।

ମହାରଜା ବଳରାମ ଦେଓ ସୁରଗୁଜା ରଜାଙ୍କୁ ପରାସ୍ତ କରି ଯେଉଁ ଅନନ୍ତ ଶଯ୍ୟା ମୂର୍ତ୍ତି ଆଣି ଥିଲେ ତାହାକୁ ଗୋଟିଏ

କରି ଗୃହରେ ରଖି ପୂଜା କରୁ ଯାଉ ଥିଲେ । ବଂଶୀ ଗୋପାଳ ସିଙ୍ଘ ଧନକୁ ବିଷ୍ଣୁ ଉପାସକ ଥିଲେ । ସେ ଗୋଟିଏ ପକ୍କା ମନ୍ଦିର ତିଆରି କରାଇ ତହିଁରେ ଅନନ୍ତ ଶଯ୍ୟା ମୂର୍ତ୍ତି ସ୍ଥାପନ କରି ପୂଜା କଲେ । ତାହାଙ୍କର ଖର୍ଚ୍ଚା ନିମନ୍ତେ ମଧ୍ୟ ସୁବନ୍ଦୋବସ୍ତ କରି ଦେଲେ । ଏହି ଅନନ୍ତ ଶଯ୍ୟା ମନ୍ଦିର ନିର୍ମାଣ କଲା ପରେ ସେ ସମ୍ବଲପୁରରେ ଗୋପାଳଙ୍କ ମନ୍ଦିର ତିଆରି କରାଇ ରାଧାକୃଷ୍ଣ ମୂର୍ତ୍ତି ସ୍ଥାପନ କରାଇ ଥିଲେ । ତହିଁ ପରେ ସେ କୁଠା ଦେଉଳ ନିର୍ମାଣ କରାଇ ଜଗନ୍ନାଥ ମୂର୍ତ୍ତି ସ୍ଥାପନ କରି ଥିଲେ । ଏହାଙ୍କୁ କୁଠା ଜଗନ୍ନାଥ କହନ୍ତି । ଗୋପାଳଜୀ ପ୍ରଭୁଙ୍କ ପାଇଁ କେତେ ଖଣ୍ଡ ଗ୍ରାମ ମାଫିରେ ଦେଇ କୁଠା ଜଗନ୍ନାଥଙ୍କର ଖର୍ଚ୍ଚାର ସୁବନ୍ଦୋବସ୍ତ କରିଦେଇ ଥିଲେ । ଅନନ୍ତର ସେ ପୁରୀକୁ ଦର୍ଶନ କରିବା ଉଦ୍ଦେଶ୍ୟରେ ଯାଇ ପୁରୀରେ ରାମଜୀ ମହାପ୍ରଭୁଙ୍କ ମନ୍ଦିର ଓ ମଠ ତିଆରି କରାଇ ତହିଁରେ ରହିଲେ । ଏହି ରାମଜୀ ମହା ପ୍ରଭୁଙ୍କ ଖର୍ଚ୍ଚା ନିମନ୍ତେ ସେ ସୋନପୁରରେ ପାଇ ଥିବା ଗ୍ରାମ ଗୁଡିକମଧ୍ୟରୁ କେତୋଟି ଗ୍ରାମ ଚଢାଇ ଦେଲେ । ସେ ତାଙ୍କର ଅବଶିଷ୍ଟ ଜୀବନ ସେଠାରେ କଟାଇ ଥିଲେ । ସମ୍ବଲ୍ ପୁରର ଗୋପାଳଜୀ ମନ୍ଦିରରେ ମହନ୍ତ ହେବାକୁ ବେହାରି ଦାସ ନାମକ ଜଣେ ବୈଷ୍ଣବଙ୍କୁ ପଠାଇ ଦେଇ ଥିଲେ । ବେହାରି ଦାସଙ୍କ ଶିଷ୍ୟ ଇଶ୍ୱର ଦାସ ତାଙ୍କ ଶିଷ୍ୟ ବନମାଳୀ ଦାସ ଥିଲେ । ସେ ଜଣେ ରାଜପୁତ ରମଣୀର ପ୍ରେମରେ ପଡି ପିବାରୁ ବିଷ୍ଣୁଙ୍କର ସେବା କାର୍ଯ୍ୟରେ ଅଯୋଗ୍ୟ ହୋଇ ଅନ୍ତର ହୋଇ ଗଲେ । ତେଣୁ ସେ ହରେକୃଷ୍ଣ ଦାସଙ୍କୁ ଶିଷ୍ୟ କଲେ । ଏହି ହରେ କୃଷ୍ଣ ଦାସ ମହାରାଜା ମହାରାଜ ସାଏଙ୍କ ଗୁରୁ ଅଟନ୍ତି । ଭଗ-ବାନ ଦାସ ନାମରେ ହରେ କୃଷ୍ଣ ଦାସଙ୍କ ଜଣେ ଶିଷ୍ୟ

ଥିଲେ । ଏହି ଭଗବାନ ଦାସଙ୍କ ଶିଷ୍ୟ ବଂଶୀଧର ଦାସ ଅଟନ୍ତି । ରାଜ ଗୁରୁ ଦ୍ୱାରି ଉଦୋଟି ଥିଲା । ରାଜା ମାନଙ୍କ ନିମନ୍ତେ ଗୋପାଳଜୀ ମଠର ମହନ୍ତ, ରାଣୀ ମାନଙ୍କ ନିମନ୍ତେ ସାକ୍ଷୀ ଗୋପୀନାଥ ମଠର ମହନ୍ତ ଓ ରାଜ ଭ୍ରାତାମାନଙ୍କ ନିମନ୍ତେ ଦାମା ମଠର ମହନ୍ତମାନେ ଗୁରୁ ହୋଇ ଥିଲେ । ପୁରୀର ରାମଜି ମନ୍ଦିରର ମହନ୍ତ ସମୟରେ ସମ୍ବଲପୁରକୁ ଆସନ୍ତି । ସମ୍ବଲପୁରରୁ ପ୍ରତି ବର୍ଷ ରାମଜି ମଠର ସେବା ନିଜ୍ଞା ନିମନ୍ତେ ପଣ୍ଟି ଅରେ (Boat) ଗୃହଜ ଅଦ ସାମଗ୍ରୀ ପୁରୀକୁ ପଠା ଯାଉଥିଲା । ପୁରୀର ରାମଜି ମଠର ଅଧୀନରେ ସମ୍ବଲପୁର ଗୋପାଳଜୀ ମଠର ମହନ୍ତ ଥିବାରୁ ସେ ମଧ୍ୟ ଲୋକେ ଦେଇ ଥିବା ପଦାର୍ଥମାନ ପୁରୀକୁ ପଠାଇ ଥିଲେ । ତହିଁରେ ସେ ସାଧୁ ସନ୍ୟାସୀ ମାନଙ୍କ ଚର୍ଚ୍ଚା କରୁଥିଲେ । ବଂଶୀ ଗୋପାଳ ପୁରୀକୁ ଯିବା ପୂର୍ବେ ସୋନପୁରରେ ପୁଜା କରୁ ଥିଲେ । ସେ ସମୟରେ ତାଙ୍କର 'ଦେଓ୍ୟାନ ମହାପାତ୍ର' ଉପାଧି ଥିଲା । ସୋନପୁର ରାଜା ମଦନ ଗୋପାଳ ସମ୍ବଲପୁରକୁ କୌଣସି କାର୍ଯ୍ୟରେ ଆସିଲେ ସୋନପୁର ରାଜ୍ୟର ଶାସନ ଭାର ଏହାଙ୍କ ହସ୍ତରେ ଅର୍ପଣ କରି ଆସୁଥିଲେ । ମହାରାଜା ମଧୁକର ସାଏ ୨୫ ବର୍ଷ ରାଜତ୍ୱ କରି ୧୬୬୮ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ବଳିୟାର ସିଂହ ।

### ୧୬୬୮-୧୬୯୮ ଖ୍ରୀ: ଅ:

ମହାରାଜା ମଧୁକର ସାହେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ବଳିଅର ସିଂହ ସମ୍ବଲପୁର ସିଂହାସନ ଅଧିକାର କଲେ । ସେ

ଜଣେ ବୀର ପୁରୁଷ ଥିଲେ । ତାହାଙ୍କର ରାଜନୀତି ଓ ରଣ କୌଶଳ ଅତି ପ୍ରଶଂସନୀୟ ଅଟେ । ତାହାଙ୍କର ଅତି ସୁନ୍ଦର ଦେହଦେଶ ଥିଲା । ତାଙ୍କର ଛଅଟି ରାଣୀ ଥିଲେ । ସେ ମଧ୍ୟରୁ ଗାଙ୍ଗପୁର ରାଜ ନନ୍ଦିନୀ ପାଟ-ମହାଦେଈ ଅଟନ୍ତି । ବୌଦ-ରାଜ କନ୍ୟା ୨ୟ ବାମଣ୍ଡା ରାଜ କନ୍ୟା ୩ୟ ବଣାଇ ରାଜ କନ୍ୟା ୪ର୍ଥ ପଗୁ ଚନ୍ଦେଲଙ୍କ ଦୁହିତା ୫ମ ଓ ଶନ୍ତ୍ରାମଣି ବିଶିଙ୍କର ଝିଅ ୬ଷ୍ଠ ରାଣୀ ଅଟନ୍ତି । ଚତୁର୍ଥ ରାଣୀଙ୍କ ଗର୍ଭରୁ ଯୁବରାଜ ରତନ ସିଂହ ଜନ୍ମ ଗ୍ରହଣ କରି ଥିଲେ । ପଞ୍ଚମ ରାଣୀଙ୍କ ଗର୍ଭରୁ ବିକ୍ରମ ସିଂହ ଜନ୍ମ ଗ୍ରହଣ କରି ଥିଲେ ସେ ବରପାଲି ଇଲାକା ପାଇଥିଲେ । ୬ଷ୍ଠ ରାଣୀଙ୍କ ଗର୍ଭରୁ ଫତେ ସିଂହ ଜନ୍ମ ଗ୍ରହଣ କରି ଥିଲେ । ତାଙ୍କ ପୁତ୍ର ସୁମେର ସିଂହ ତାଙ୍କ ପୁତ୍ର ଦରିଆ ସିଂହ ତାଙ୍କ ପୁତ୍ର କେଶରୀ ସିଂହ ତାଙ୍କ ପୁତ୍ର କୃପାଳ ସିଂହ । ସେ ସରିଆ ଇଲାକା ପାଇଥିଲେ

ମହାରାଜା ବଳିୟାର ସିଂହ ପାଟ-ମହାଦେଈଙ୍କୁ ସମ୍ବଲ-ପୁରରେ ୨ୟ ରାଣୀଙ୍କୁ ଚନ୍ଦ୍ରପୁରରେ ୪ର୍ଥ ରାଣୀଙ୍କୁ ପଦ୍ମପୁର ଓ ୬ଷ୍ଠ ରାଣୀଙ୍କୁ ବକର୍ଦାରେ ରଖି ଥିଲେ । ସମ୍ବଲପୁରର ଅଧୀନସ୍ଥ ବାମଣ୍ଡା, ଗାଙ୍ଗପୁର, ବଣାଇ ରାଜ୍ୟର ରାଜାମାନେ ଧୀରେ ୨ ସ୍ୱାଧୀନ ହେବାକୁ ଚେଷ୍ଟା କରୁଥିବାରୁ ମହାରାଜା ବଳିୟାର ସିଂହ ସେମାନଙ୍କ ସହ ଲଢ଼ାଇ କରି ଦମନ କରି-ଥିଲେ । ବାମଣ୍ଡା ରାଜାଙ୍କୁ ଧରିଆଣି ସମ୍ବଲପୁରରେ ରାଜବନ୍ଦ କରି ରଖିଥିଲେ । ବାମଣ୍ଡା ରାଜା ଏକାକୀ ବନ୍ଦ ଗୃହରେ ରହି କାଳ ଯାପନ କରିବାକୁ ଲାଗିଲେ । ଅନେକ ଦିନ ହୋଇଗଲା ତଥାପି ତାଙ୍କର ମୁକ୍ତି ହେଲା ନାହିଁ । ମହାରାଜା ବଳିଆର ସିଂହଙ୍କ ଗୋଟିଏ ଦୁହିତା ଥିଲେ । ତାଙ୍କ ନାମ ଜେମାଦେଈ ଥିଲା । ତାହାଙ୍କର ମାଣିକ୍ୟ ନାମରେ ଜଣେ

ଦାସୀ ଥିଲା । ସେହି ଦାସୀ ପ୍ରତିଦିନ ବାମଣ୍ଡା ରାଜାଙ୍କ ନିକଟକୁ ଖାଦ୍ୟ ନେଇ ଦେଉ ଥାଏ । ମହାରାଜା ବଳିଆର ସିଂହ ଛେମାଦେଈଙ୍କୁ ଅତିସ୍ନେହ କରୁଥିଲେ । ଦିନେ ବାମଣ୍ଡା ରାଜା ଉକ୍ତ ଦାସୀକୁ କହିଲେ ତୁମ୍ଭେ ଛେମାଦେଈଙ୍କୁ କହ ସେ ମହାରାଜାଙ୍କୁ ମୋର ମୁକ୍ତି ସମ୍ବନ୍ଧରେ ଅନୁରୋଧ କରନ୍ତୁ ମୁଁ ତୁମ୍ଭଙ୍କୁ ଓ ଛେମାଦେଈଙ୍କୁ ଅନେକ ଧନ ରତ୍ନ ଉପହାର ଦେବି । ଏହା ଶୁଣି ଦାସୀ ଛେମାଙ୍କୁ କହିଲା । ଛେମା ପିତାଙ୍କୁ କହି ବାମଣ୍ଡା ରାଜାଙ୍କୁ ମୁକ୍ତ କରାଇ ଦେବାରୁ ସେ ଛେମାଙ୍କୁ ଓ ଦାସୀକୁ ଅନେକ ଧନ ରତ୍ନ ଦେଲେ । ସେହି ଧନରେ ଛେମା " ଛେମା ଦେଈ ମହଲ " ନାମରେ ଗୋଟିଏ ପାଞ୍ଚ-ମହଲା ପକ୍କା ତିଆରି କରାଇ ଥିଲେ । ଏହି ମହଲଟି ଦାମୀମଠ ଓ ପାଟେଶ୍ୱରେଶ୍ୱରୀ ମନ୍ଦିର ମଧ୍ୟରେ ତିଆରି ହୋଇଥିଲା । ଏହା ଦୁଃଖୀ ଦରିଦ୍ରମାନଙ୍କ ଏକମାତ୍ର ଆଶ୍ରୟସ୍ଥଳ ହୋଇଥିଲା । ପରେ ତହିଁରେ ସରକାରି ଖଜଣା ରଖା ହେଉଥିଲା । ଦାସୀ ଯେଉଁ ସମ୍ପତ୍ତି ପାଇଥିଲା ସେ ତହିଁରେ " ମାଣିକ୍ୟ ମୁଣ୍ଡା " ନାମରେ ଗୋଟିଏ ବନ୍ଧ ଖୋଳାଇ ଥିଲା । ସେ ନନ୍ଦରାମ ଗୋସାଇଁଙ୍କ ପତ୍ନୀ ଅଟେ । ତାହାର ପତି ମଧ୍ୟ "ନନ୍ଦରାମ ତଲାବ" ନାମରେ ତାହାର ପାଖରେ ଗୋଟିଏ ଜଳାଶୟ ଖୋଳାଇ ଥିଲେ । ଏହି ଉଭୟ ପତି ପତ୍ନୀଙ୍କ କୀର୍ତ୍ତି ଏ ପର୍ଯ୍ୟନ୍ତ ରହି ଅଛି । ଆଜି କାଲି ମଧ୍ୟ ଲୋକେ ଏଥିର ପାଣି ବ୍ୟବହାର କରୁ ଅଛନ୍ତି ।

ବଣାଇ ରାଜା ଯୁଦ୍ଧା ବାମଣ୍ଡା ରାଜାଙ୍କ ପରି ବଳିଆର ସିଂହଙ୍କୁ ଅମାନ୍ୟ କରିବାରୁ ମହାରାଜା ତାହାଙ୍କ ବିରୁଦ୍ଧେ ଯୁଦ୍ଧ ଘୋଷଣା କଲେ । ବଣାଇ ଅତି ଦୁର୍ଭେଦ୍ୟ ଗଡ ଥିଲା । ମହାରାଜା କୌଣସି ମତେ ଗଡ ମଧ୍ୟକୁ ପ୍ରବେଶ କରି ପାରିଲେ

ନାହିଁ । ବଣାଇ ରାଜ୍ୟ ଅବରୋଧ କରି ଅନେକ ଦିନ ପର୍ଯ୍ୟନ୍ତ ସେଠାରେ ଛାଉଣୀ କରି ରହିଲେ । ଶେଷରେ ବଣାଇ ରାଜା ଦୁର୍ଗରୁ ବହିର୍ଗତ ହୋଇ ଯୁଦ୍ଧ କରିବାକୁ ବାଧ୍ୟ ହୋଇ ଥିଲେ । କିନ୍ତୁ ଯୁଦ୍ଧରେ ପରାଜିତ ହେଲେ । ମହାରାଜା ବଳିଆର ସିଂହ ବଣାଇ ଅବରୋଧ ସମୟରେ ସେଠାରେ ଗୋଟିଏ ଅମ୍ବ ତୋଟା ଲଗାଇ ଥିଲେ । ତାକୁ ବଳିଆର ତୋଟା ବୋଲି ନାମ ଦେଇ ଥିଲେ । ଏବେ ସୁଦ୍ଧା ଏହାର ଏହି ନାମ ଅଛି ।

ଅନନ୍ତର ମହାରାଜା ବଳିୟାର ସିଂହ ରେଢ଼ାଖୋଲ ରାଜାଙ୍କ ସଙ୍ଗେ ଲଢ଼ାଇ କରି ତାଙ୍କୁ ମଧ୍ୟ ଜୟ କଲେ ଓ ସମ୍ବଲପୁରର ଅଧୀନ କଲେ । ତତ୍ପରେ ସେ ସମସ୍ତ ସୈନ୍ୟ ଓ ସାମନ୍ତ ରାଜା ଏକତ୍ର କରି ଶକ୍ତି ରାଜ୍ୟର ବିରୁଦ୍ଧେ ଯୁଦ୍ଧ ଯାତ୍ରା କଲେ । ମାର୍ଗରେ ରାଇଗଡ଼ ଓ ସାରଙ୍ଗଡ ରାଜ୍ୟର ସୈନ୍ୟ ମାନେ ମଧ୍ୟ ତାଙ୍କ ସଙ୍ଗରେ ମିଶିଲେ । ଶକ୍ତି ରାଜ୍ୟର ରାଜାଙ୍କ ସଙ୍ଗେ ଯୁଦ୍ଧ ହେଲା । ଯୁଦ୍ଧରେ ଶକ୍ତି ପରାସ୍ତ ହୋଇ ସମ୍ବଲପୁରର ଅଧୀନତା ସ୍ୱୀକାର କଲା । ଏପରି ଭାବରେ ପୂର୍ବରେ ବଣାଇ ପଶ୍ଚିମରେ ଶକ୍ତି ରାଜ୍ୟ ପର୍ଯ୍ୟନ୍ତ ସମ୍ବଲପୁର ରାଜ୍ୟର ସୀମା ବୃଦ୍ଧି ପ୍ରାପ୍ତ ହେଲା ।

ସେ ସମୟରେ ବୌଦରାଜା 'ବଳିୟାର ସିଂହ' ନାମରେ ଗୋଟିଏ କୁକୁର ପୋଷି ଥିଲେ । ମହାରାଜା ବଳିୟାର ସିଂହଙ୍କ ଜଣେ ଦରୱାନ ପୁରୀ ଯାଉଥିବା ସମୟରେ ଏ ବିଷୟ ଶୁଣି ଫେରିଆସି ମହାରାଜାଙ୍କଠାରେ ପ୍ରକାଶ କଲା । ଏହା ଶୁଣି ମହାରାଜା ସୈନ୍ୟ ସାମନ୍ତ ସଜ୍ଜିତ କରି ବୌଦ-ରାଜାଙ୍କ ବିରୁଦ୍ଧେ ଯୁଦ୍ଧ ଯାତ୍ରା କଲେ । ଓ ବୌଦ ଗଡ଼ ଅବରୋଧ କଲେ । ଅନେକ ଦିନ ଅତିକ୍ରମ ହୋଇ ଗଲା ତଥାପି ବୌଦ ରାଜା ଗଡ଼ରୁ ବାହାରିଲେ ନାହିଁ । ମହା-

ରାଜାଙ୍କ ସୈନ୍ୟମାନେ ସେଠାରେ ଗୋଟିଏ ପ୍ରକାଣ୍ଡ କଟା ଖୋଳି ଥିଲେ । ତାକୁ 'ବଳସ୍ୱାର କଟା' କହନ୍ତି । ଗୋଟିଏ ଅମ୍ବ ତୋଟା ମଧ୍ୟ ଲଗାଇଲେ । ତାକୁ 'ବଳଅର ତୋଟା' କହନ୍ତି । ଏପରି ଅନେକ ଦିନ ଗଲାରୁ ଶେଷରେ ବୌଦ ରାଜା ବାଧ୍ୟ ହୋଇ ଗଡ଼ରୁ ବାହାରିଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ବୌଦ ରାଜା ପରାଜିତ ହେଲେ । ଅନେକ ଦିନର ପରିଶ୍ରମ ସଫଳ ହେଲା ବୋଲି ସମ୍ବଲପୁରସୈନ୍ୟ ଆନନ୍ଦ ହେଲେ । ତାପରେ ମହାରାଜା କ୍ରମେ୨ ଅଠମଲ୍ଲିକ ପାଲ୍ଲହଡ଼ା, ଦଶପଲ୍ଲା, ଖଣ୍ଡପଡ଼ା ରାଜ୍ୟ ମାନଙ୍କ ସଙ୍ଗେ ଲଢ଼ାଇ କରି ଜୟକଲେ ଓ ସମ୍ବଲ ପୁରର ଅଧୀନ କଲେ । ଅନନ୍ତର ମହାରାଜା ଯୁଦ୍ଧ କାର୍ଯ୍ୟରୁ ବିରତ ହୋଇ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ପୁରୀ ଯାତ୍ରା କଲେ । ପୁରୀରାଜା ଏହି ସମ୍ବାଦପାଇ ତାଙ୍କୁ ସାଦରେ ଅଭ୍ୟର୍ଥନା କରି ନେଲେ । ମହାରାଜା ବଳଅର ସିଂହ ଅନେକ ଦିନ ରହି ଜଗନ୍ନାଥଙ୍କୁ ଦର୍ଶନ କଲେ । ଦିନେ ପୁରୀ ରାଜା ମହାରାଜା ବଳଅର ସିଂହଙ୍କୁ ନିମନ୍ତ୍ରଣ କଲେ । ତାଙ୍କର କନ୍ଦର୍ପ ତୁଲ୍ୟ ବପୁଦେଖି ଅନ୍ତଃପୁରର ରମଣୀମାନେ ମଧ୍ୟ ଆନନ୍ଦ ପ୍ରକାଶ କରିଥିଲେ । ପୁରୀରାଜା ତାଙ୍କର ଶକ୍ତିର ପରୀକ୍ଷା ନିମନ୍ତେ "କହିଲେ ମହାରାଜ ! ଏପରି ନିର୍ଜନ କୋଠରିରେ ଆପଣଙ୍କର କୌଣସି ଶତ୍ରୁ ଆପଣଙ୍କ ପ୍ରାଣସଂହାର କରିବାକୁ ଚେଷ୍ଟାକଲେ କିପରି ଆତ୍ମରକ୍ଷା କରନ୍ତେ"। ଏହା ଶୁଣିଲାମାତ୍ରେ ହଠାତ୍ ମହାରାଜା ବଳଅର ସିଂହ ଅରବ ଦେଶ ଜାତ ତରବାରି ଅଣ୍ଟାରୁ ବାହାର କରି ବୁଲାଇ ଶକ୍ତିର ପରୀକ୍ଷା ଦେଇଥିଲେ । ତହିଁରେ ପୁରୀରାଜା ସନ୍ତୁଷ୍ଟ ହୋଇ ତାଙ୍କୁ "ହୀରା ଖଣ୍ଡ ଛତ୍ର ପତି ମହାରାଜା" ଉପାଧି ଦାନ କରି ମେଘାଡ଼ମ୍ବର ଛତ୍ର ପ୍ରଦାନ କରିଥିଲେ । ପୁରୀ ରାଜାଙ୍କ ଗୋଟିଏ ଝିଅ ଥିଲେ; ତାଙ୍କୁ ସମ୍ବଲପୁର

ଯୁବରାଜ ରତ୍ନ ସିଂହଙ୍କ ପୁତ୍ରୀକୁ ଆଣାଇ ତାଙ୍କସହ ବିବାହ କରି ଦେଲେ । ମହାରାଜା ବଳିଆର ସିଂହ ଦେଖିଲେ ଯେ ପୁରୀ ରାଜାଙ୍କ କରଣମାନେ ରାଜ୍ୟର ଅର୍ଥ ବଣ୍ଟନ କାର୍ଯ୍ୟରେ ଅତ୍ୟନ୍ତ ପାରଦର୍ଶୀ ଥିଲେ ତେଣୁ ମହାରାଜା ପୁରୀ ରାଜାଙ୍କୁ କେତେ ଜଣ କରଣ ଓ କେତେ ଜଣ ବ୍ରାହ୍ମଣ ଦେବାକୁ କହିଲେ ପୁରୀ ରାଜା ସାନନ୍ଦରେ ତାହା ସମର୍ପଣ କଲେ । ମହାରାଜା ବଳିଆର ସିଂହ ମଧ୍ୟ ତାହାଁର ବିଜୟସୂତ୍ରରେ ଦଶପଲ୍ଲା ଓ ଖଣ୍ଡପଡା ରାଜ୍ୟ ପୁରୀ ରାଜାଙ୍କୁ ଛାଡି ଦେଲେ ।

ଅନନ୍ତର ମହାରାଜା ବଳିଆର ସିଂହ ପୁତ୍ର ଓ ପୁତ୍ରବଧୂ ଏବଂ ସୈନ୍ୟ ସାମନ୍ତ ସମଭିବ୍ୟାହାରରେ ସମ୍ବଲପୁରକୁ ଫେରି ଆସିଲେ । ସମ୍ବଲପୁରକୁ ପହଞ୍ଚିବାକୁ ତିନି କୋଶ ବାକି ଅଛି ଏପରି ଗୋଟିଏ ସ୍ଥାନରେ ମୁକାମ କରି ସମସ୍ତ ସୈନ୍ୟ ସାମନ୍ତ ଏକତ୍ର କରି ମହାରାଜା କହିଲେ "ଆମ୍ଭେମାନେ ଅନେକ ଦିନରୁ ନିଜ ରାଜ୍ୟଛାଡ ସ୍ଥାନାନ୍ତରରେ ଥିଲୁଁ ବୋଧ ହୁଏ ଏହି ସମସ୍ତ ମଧ୍ୟରେ ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କ ସ୍ତ୍ରୀମାନେ ଅସଚ୍ଚରିତ୍ରରେ ଲିପ୍ତା ହୋଇଥିବେ ଅତ-ଏବ ତୁମ୍ଭମାନଙ୍କୁ ମୋର ଏକମାତ୍ର ଅନୁରୋଧ ଯେ ତୁମ୍ଭେ ମାନେ ସେ ସବୁ ଦୋଷଗ୍ରହଣ ନ କରି କ୍ଷମାଦେବ" । ଏହାଶୁଣି ସମସ୍ତେ ଜୟଧ୍ୱନି କରି ଦିଗନ୍ତ କମ୍ପାଇ ଦେଲେ । ମହାରାଜା କହିଲେ ଏହିଠାରେ ଆମ୍ଭମାନଙ୍କର ଗୋଲ ବନ୍ଦ ହେଲା । ତାହାଁର ସ୍ମୃତି ରକ୍ଷା ନିମନ୍ତେ"ଗୋଲବନ୍ଦ"ନାମରେ ଗୋଟିଏ ଗ୍ରାମ ସେଠାରେ ବସାଇ ଦେଲେ । ଏହି ନାମରେ ଏହି ଗ୍ରାମଟି ଏ ପର୍ଯ୍ୟନ୍ତ ଅଛି ।

ଅବଶେଷରେ ମହାରାଜା ସମ୍ବଲପୁରରେ ପ୍ରବେଶ କଲେ । ପୁରବାସୀମାନେ ମହାରାଜାଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦ

ରାଜଙ୍କ ସୈନ୍ୟମାନେ ସେଠାରେ ଗୋଟିଏ ପ୍ରକାଣ୍ଡ କଟା ଖୋଳି ଥିଲେ । ତାକୁ 'ବଳସ୍ୱାର କଟା' କହନ୍ତି । ଗୋଟିଏ ଅମ୍ବ ତୋଟା ମଧ୍ୟ ଲଗାଇଲେ । ତାକୁ 'ବଳଅର ତୋଟା' କହନ୍ତି । ଏପରି ଅନେକ ଦିନ ଗଲାରୁ ଶେଷରେ ବୌଦ୍ଧ ରାଜା ବାଧ୍ୟ ହୋଇ ଗଡ଼ରୁ ବାହାରିଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ବୌଦ୍ଧ ରାଜା ପରାଜିତ ହେଲେ । ଅନେକ ଦିନର ପରିଶ୍ରମ ସଫଳ ହେଲା ବୋଲି ସମ୍ବଲପୁରସୈନ୍ୟ ଆନନ୍ଦ ହେଲେ । ତାପରେ ମହାରାଜା କ୍ରମେ୨ ଅଠମଲ୍ଲିକ ପାଲ୍ଲହଡ଼ା, ଦଶପଲ୍ଲା, ଖଣ୍ଡପଡ଼ା ରାଜ୍ୟ ମାନଙ୍କ ସଙ୍ଗେ ଲଢ଼ାଇ କରି ଜୟକଲେ ଓ ସମ୍ବଲ ପୁରର ଅଧୀନ କଲେ । ଅନନ୍ତର ମହାରାଜା ଯୁଦ୍ଧ କାର୍ଯ୍ୟରୁ ବିରତ ହୋଇ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ପୁରୀ ଯାତ୍ରା କଲେ । ପୁରୀରାଜା ଏହି ସମ୍ବାଦପାଇ ତାଙ୍କୁ ସାଦରେ ଅଭ୍ୟର୍ଥନା କରି ନେଲେ । ମହାରାଜା ବଳଅର ସିଂହ ଅନେକ ଦିନ ରହି ଜଗନ୍ନାଥଙ୍କୁ ଦର୍ଶନ କଲେ । ଦିନେ ପୁରୀ ରାଜା ମହାରାଜା ବଳଅର ସିଂହଙ୍କୁ ନିମନ୍ତ୍ରଣ କଲେ ।ତାଙ୍କର କନ୍ଦର୍ପ ତୁଲ୍ୟ ବପୁଦେଖି ଅନ୍ତଃପୁରର ରମଣୀମାନେ ମଧ୍ୟ ଆନନ୍ଦ ପ୍ରକାଶ କରିଥିଲେ । ପୁରୀରାଜା ତାଙ୍କର ଶକ୍ତିର ପରୀକ୍ଷା ନିମନ୍ତେ "କହିଲେ ମହାରାଜ ! ଏପରି ନିର୍ଜନ କୋଠରିରେ ଆପଣଙ୍କର କୌଣସି ଶତ୍ରୁ ଆପଣଙ୍କ ପ୍ରାଣସଂହାର କରିବାକୁ ଚେଷ୍ଟାକଲେ କିପରି ଆତ୍ମରକ୍ଷା କରନ୍ତେ"। ଏହା ଶୁଣିବାମାତ୍ରେ ହଠାତ୍ ମହାରାଜା ବଳଅର ସିଂହ ଅରବ ଦେଶ ଜାତ ତରବାରି ଅଣ୍ଟାରୁ ବାହାର କରି ବୁଲାଇ ଶକ୍ତିର ପରୀକ୍ଷା ଦେଇଥିଲେ । ଉହିଁରେ ପୁରୀରାଜା ସନ୍ତୁଷ୍ଟ ହୋଇ ତାଙ୍କୁ "ବୀର ଖଣ୍ଡ ଛତ୍ର ପତି ମହାରାଜା" ଉପାଧି ଦାନ କରି ମେଘାଡ଼ମ୍ବର ଛତ୍ର ପ୍ରଦାନ କରିଥିଲେ । ପୁରୀ ରାଜାଙ୍କ ଗୋଟିଏ ଝିଅ ଥିଲେ; ତାଙ୍କୁ ସମ୍ବଲପୁର

ଯୁବରାଜ ରତ୍ନ ସିଂହଙ୍କୁ ପୃଥ୍ୱୀଙ୍କୁ ଅଣାଇ ତାଙ୍କ ସହ ବିବାହ କରି ଦେଲେ । ମହାରାଜା ବଳିଆର ସିଂହ ଦେଖିଲେ ଯେ ପୁରୀ ରାଜାଙ୍କ କରଣମାନେ ବସଦ ଅର୍ଦ୍ଧ ବଣ୍ଟନ କାର୍ଯ୍ୟରେ ଅତିଶୟ ପାରଦର୍ଶୀ ଥିଲେ ତେଣୁ ମହାରାଜା ପୁରୀ ରାଜାଙ୍କୁ କେତେ ଜଣ କରଣ ଓ କେତେ ଜଣ ବ୍ରାହ୍ମଣ ଦେବାକୁ କହିଲେ ପୁରୀ ରାଜା ସାନନ୍ଦରେ ତାହା ସମର୍ପଣ କଲେ । ମହାରାଜା ବଳିଆର ସିଂହ ମଧ୍ୟ ତାହାଂର ବିନିମୟରେ ଦଶପଲ୍ଲା ଓ ଖଣ୍ଡପଡା ରାଜ୍ୟ ପୁରୀ ରାଜାଙ୍କୁ ଛାଡି ଦେଲେ ।

ଅନନ୍ତର ମହାରାଜା ବଳିଆର ସିଂହ ପୁତ୍ର ଓ ପୁତ୍ରବଧୂ ଏବଂ ସୈନ୍ୟ ସାମନ୍ତ ସମଭିବ୍ୟାହାରରେ ସମ୍ବଲପୁରକୁ ଫେରି ଆସିଲେ । ସମ୍ବଲପୁରକୁ ପହଞ୍ଚିବାକୁ ଦୁଇ କୋଶ ବାକି ଅଛି ଏପରି ଗୋଟିଏ ସ୍ଥାନରେ ମୁକାମ କରି ସମସ୍ତ ସୈନ୍ୟ ସାମନ୍ତ ଏକତ୍ର କରି ମହାରାଜା କହିଲେ "ଆମ୍ଭେମାନେ ଅନେକ ଦିନରୁ ନିଜ ରାଜ୍ୟଚ୍ୟୁତ ସ୍ଥାନାନ୍ତରରେ ଥିଲୁଁ ବୋଧ ହୁଏ ଏହି ସମୟ ମଧ୍ୟରେ ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କ ସ୍ତ୍ରୀମାନେ ଅସଚ୍ଚରିତ୍ରରେ ଲିପ୍ତା ହୋଇଥିବେ ଅତ-ଏବ ତୁମ୍ଭମାନଙ୍କୁ ମୋର ଏକମାତ୍ର ଅନୁରୋଧ ଯେ ତୁମ୍ଭେମାନେ ସେ ସବୁ ଦୋଷଗ୍ରହଣ ନ କରି କ୍ଷମାଦେବ" । ଏହା ଶୁଣି ସମସ୍ତେ ଜୟଧ୍ୱନି କରି ଦିଗନ୍ତ କମ୍ପାଇ ଦେଲେ । ମହାରାଜା କହିଲେ ଏହିଠାରେ ଅମ୍ଭମାନଙ୍କର ଗୋଲ ବନ୍ଦ ହେଲା । ତାହାଂର ସ୍ମୃତି ରକ୍ଷା ନିମନ୍ତେ "ଗୋଲବନ୍ଦ" ନାମରେ ଗୋଟିଏ ଗ୍ରାମ ସେଠାରେ ବସାଇ ଦେଲେ । ଏହି ନାମରେ ଏହି ଗ୍ରାମଟି ଏ ପର୍ଯ୍ୟନ୍ତ ଅଛି ।

ଅବଶେଷରେ ମହାରାଜା ସମ୍ବଲପୁରରେ ପ୍ରବେଶ କଲେ । ପୁରବାସୀମାନେ ମହାରାଜାଙ୍କୁ ଦେଖି ଅତିଶୟ ଆନନ୍ଦ

ପ୍ରକାଶ କଲେ । ମହାରଜା ପୁରୀରୁ ଯେଉଁ ଗୁରବର ବ୍ରାହ୍ମଣ ଓ କରଣ ଆଣିଥିଲେ ସେମାନଙ୍କୁ ପୁରୋହିତ ବଡ଼ପଣ୍ଡା,ପାଣି-ଗ୍ରାହୀ ଓ ବେହେରା କାର୍ଯ୍ୟରେ ନିଯୁକ୍ତ କରଦେଲେ ଓ କରଣ ମାନଙ୍କ ମଧ୍ୟରୁ ଜଣେ ପାଞ୍ଜିଆ, ଜଣେ ଗ୍ରାମ୍ଯ କରଣ ପଟ୍ଟନାୟକ ହୋଇ ଅଯ୍ଯ ବ୍ୟୟ ବହିର ଅଧିକାରୀ ହେଲେ, ଜଣେ ବକ୍‌ସି ଉପାଧି ଧାରଣ କର ସେନାଧ୍ୟକ୍ଷ ହେଲେ, ଜଣେ ସାହାଣି ଉପାଧି ଗ୍ରହଣ କର ମହାରଜାଙ୍କ ହାତୀ ଘୋଡ଼ା ଆଦର ପିମା ନେଲେ । ଏମାନଙ୍କର ଉନ୍ନତି ଦେଖି ତାଙ୍କ ପଛେ ଅକ୍ରମଧ୍ୟ ଅନେକ ବ୍ରାହ୍ମଣ ଓ କରଣ ପୁରୀରୁ ଆସି ସମ୍ବଲପୁରରେ ବାସ କର ମହାରଜାଙ୍କ ବିଭିନ୍ନ କାର୍ଯ୍ୟଭାର ନେଇଥିଲେ ।

ମହାରାଜା ବଳିଆର ସିଂହଙ୍କ ରଜତ୍ୱ ସମୟରେ ଯେଉଁ ସବୁ ରାଜ୍ୟ ସମ୍ବଲପୁରର ଅଧୀନ ଥିଲା ତାହାର ତାଲିକା ଏହା :—

୧ ପାଟଣା ୨ ଖରିଅଡ଼ ୩ ବେନ୍ଦ୍ରାନୂଆଗଡ଼ ୪ ସୋନପୁର ୫ ସମ୍ବଲପୁର ୬ ଫୁଲ୍‌ଝର ୭ ବୃନ୍ଦାସମ୍ବର ୮ ବାମଣ୍ଡା ୯ ବଣାଇ ୧୦ ଗାଙ୍ଗପୁର ୧୧ ସୁରଗୁଜା ୧୨ ସାରଂଗଡ଼ ୧୩ ରେଢ଼ାଖୋଲ ୧୪ ରାଇଗଡ଼ ୧୫ ବୌଦ୍ଧ ୧୬ ଅଠମଲ୍ଲିକ ୧୭ ଶକ୍ତି ୧୮ ପାଲ୍ଲହଡ଼ା ।

ଏହପର ମହାରାଜା ବଳିଆର ସିଂହ ଅଠର ଗଡ଼ର ଏକ ମାତ୍ର ଅଧିପତି ହୋଇ "ଶ୍ରୀଶ୍ରୀ ଶଣ୍ଡ ଛତ୍ରପତି ମହାରାଜା ଅଠର ଗଡ଼ ମୁକୁଟମଣି" ଉପାଧିରେ ବିଭୂଷିତ ହୋଇ ୧୬୯୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

—— ※ ——

## ରତନ ସିଂହ ।

### ୧୬୯୯—୧୬୯୯ ଖ୍ରୀ: ଅ:

ମହାରାଜା ବଳିଆର ସିଂହଙ୍କ ପରେ ତାଙ୍କ ପୁତ୍ର ରତନ ସିଂହ ସମ୍ବଲପୁର ସିଂହାସନରେ ଅଭିଷିକ୍ତ ହେଲେ । ତାହାଙ୍କର ତେନୋଟି ରାଣୀ ଥିଲେ । ପୁରୀ ରାଜ ନନ୍ଦିନୀ ପାଟ ମହାଦେଈ, ଗୋପାଳ ଦଣ୍ଡ ସନାର ଝିଅ ୨ୟ ଓ ଗାଙ୍ଗପୁର ରାଜ ନନ୍ଦନୀ ତୃତୀୟ ରାଣୀ ଥିଲେ । ତୃତୀୟ ରାଣୀଙ୍କ ଗର୍ଭରୁ ଦୁଇପୁତ୍ର ଜନ୍ମ ଗ୍ରହଣ କରିଥିଲେ । ପ୍ରଥମ ଛତ୍ରସାଏ ୨ୟ ରଘୁନାଥ ସିଂହ । ମହାରାଜା ରତନ ସିଂହ ୨ୟ ପୁତ୍ରଙ୍କୁ ପଦ୍ମପୁର ଇଲକାଦାନ କରି ଥିଲେ । ମହା ରାଜା ବଳିଆର ସିଂହ ପୁରୀରୁ ଯେଉଁ ଗୃହଘର ବ୍ରାହ୍ମଣ ଓ କରଣ ଆଣି ଥିଲେ ସେମାନଙ୍କ ମଧ୍ୟରୁ ଜଣେ କରଣ "ପୁର ଶ୍ରେଷ୍ଠ" କାର୍ଯ୍ୟ କରୁ ଥିଲେ ତାହାଙ୍କର ଦୁଇଟି ପୁଅ ଥିଲେ । ସେମାନଙ୍କ ନାମ ରାମଚନ୍ଦ୍ର ଓ ଜଗନ୍ନାଥ ଥିଲା । ସେ ଦୁହେଁ ଦୁଇଟି ବନ୍ଧ ଖୋଳାଇ ଥିଲେ । ତାହା ରାମସାଗର ଓ ଜଗନ୍ନାଥ ସାଗର ଅଟେ । ଏ ଦୁଇଟି ପୁଷ୍କରିଣୀ ଏବେ ମଧ୍ୟ ଅଛି । ଲୋକେ ଏବେ ସୁଦ୍ଧା ଏଥିର ପାଣି ବ୍ୟବହାର କରୁ ଅଛନ୍ତି ।

ମହାରାଜା ରତନ ସିଂହ ଅଧିକ ଦିନ ରାଜତ୍ୱ କରି ପାରିଲେ ନାହିଁ । ସେ କେବଳ ଗୁଟିମାସ ମାତ୍ର ରାଜତ୍ବ କରି ୧୬୯୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।



## ଛତ୍ର ସାଏ ।

### ୧୬୯୯—୧୭୪୬ ଖ୍ରୀ: ଅ:

ମହାରାଜା ରତନ ସିଂହଙ୍କ ପରଲୋକ ପରେ ଛତ୍ର ସାଏ ସମ୍ବଲପୁର ରାଜ ସିଂହାସନରେ ଅଭିଷିକ୍ତ ହେଲେ । ତାଙ୍କର

କେତେ ମୂର୍ତ୍ତିରାଣୀ ଥିଲେ ଠିକ ଜଣାଯାଇ ନାହିଁ କିନ୍ତୁ ତାହାଙ୍କର ୨ଟି ରାଣୀ ଥିଲେ । ପ୍ରଥମ ରତ୍ନପୁର ରାଜକନ୍ୟା ୨ୟ ବାମଣ୍ଡା ରାଜକନ୍ୟା ଅଟନ୍ତି । ପ୍ରଥମ ରାଣୀଙ୍କ ଗର୍ଭରୁ ଗୋଟିଏ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ସେହି କୁମାର ଓ ପ୍ରଥମ ରାଣୀ ମୃତ୍ୟୁ ମୁଖରେ ପତିତ ହୋଇଥିଲେ । ୨ୟ ରାଣୀଙ୍କ ଗର୍ଭରୁ ଅଜିତ ସିଂହ ଜନ୍ମ ଗ୍ରହଣ କରିଥିଲେ । ସେ ସମ୍ବଲପୁର ଯୁବରାଜ ହେଲେ ।

ଏହି ମହାରାଜା ଲୋକଙ୍କର ଉପକାର ନିମନ୍ତେ ଛତ୍ର ସାଗର ଖୋଳାଇ ଥିଲେ । ଏହାଙ୍କ ସମୟରେ ସମଲେଶ୍ୱରୀ ଦେବୀଙ୍କ ମନ୍ଦିର ପକ୍କାରେ ତିଆର ହେଲା । ଏହା ଛଡ଼ା ଦଶ ମହାବିଦ୍ୟା ମହଲ, ରାଣୀ ଓ୍ୟାସ, ଦୁର୍ଗାମନ୍ଦିର, ରାଜ ପ୍ରାସାଦ ସଂଲଗ୍ନ ଗୃହ, କୁଠ ଜଗନ୍ନାଥ ମନ୍ଦିର ଆଦି ପକ୍କାରେ ନିର୍ମିତ ହୋଇଥିଲା । ଏସବୁ ତାଙ୍କର ଚିରସ୍ଥାୟୀ କୀର୍ତ୍ତି ଅଟେ । ସେ ତାଙ୍କର ଭିତରିଆ କର୍ମଚାରୀମାନଙ୍କ ଚୁଗୁଲି ( ପରନିନ୍ଦା ) ଶ୍ରବଣ କରି ତଦନୁଯାୟୀ କାର୍ଯ୍ୟ କରୁ ଥିବାରୁ ତାହାଙ୍କର ଅଧୀନସ୍ଥ ଅଠର ଗଡ଼ର ସାମନ୍ତ ରାଜାମାନେ ଧୀରେ ଧୀରେ ସ୍ୱାଧୀନ ହେବାର ଚେଷ୍ଟା କରିଥିଲେ ।

ଏହି ସମୟରେ ବଡ଼ ନାଗପୁରରେ ମରହଟ୍ଟା ରାଜା ରଘୁଜି ଭୋନ୍ସଲ ଗୋଟିଏ ସାମ୍ରାଜ୍ୟ ଗଠନ କରିବାର ଚେଷ୍ଟା କରୁଥିଲେ । ତେଣୁ ସେ ତାଙ୍କର ସେନାପତି ଭାସ୍କର ପନ୍ତଙ୍କ ଜିମାରେ ଅନେକ ସୈନ୍ୟ ଦେଇ ଦିଗ୍‌ବିଜୟ କରିବାକୁ ପଠାଇଲେ । ସେ ପ୍ରଥମେ ରତ୍ନପୁର ରାଜାଙ୍କୁ ଅଧୀନ କରି ସମ୍ବଲପୁର ମହାରାଜା ଛତ୍ର ସାଏଙ୍କ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କଲେ । ସମ୍ବଲପୁର ଗଡ଼ ଦୃଢ଼ ନଥିଲା । ତେଣୁ ସେ ଅନାୟ-

ପରେ ଗଡ଼ ମଧ୍ୟକୁ ପ୍ରବେଶ କରି ମହାରାଜାଙ୍କ ସହିତ ଯୁଦ୍ଧ କଲେ । ଯୁଦ୍ଧରେ ସମ୍ବଲପୁର ରାଜା ପରାଜିତ ହେବାରୁ ତାଙ୍କୁ ଧରି ନେଇ ଏଲ୍ଲାବାଦ ଜେଲରେ ବନ୍ଦ କଲେ । ସେ ସମ୍ବଲ-ପୁର ରାଜ୍ୟ ଅଧିକାର କଲେ । ସେ ସଙ୍ଗେ ସମ୍ବଲପୁର ଅଧି-କୃତ ଅଠର ଗଡ଼ ମଧ୍ୟ ତାଙ୍କର ଅଧିକାର ଭୁକ୍ତ ହୋଇଗଲା । ଏଣୁ ବିଜିତ ରାଜ୍ୟର ରାଜାମାନଙ୍କୁ ନିଜ ନିଜ ରାଜ୍ୟର ରାଜସ୍ୱ ବାହାରେ ବାହାରେ ନାଗପୁରକୁ ପଠାଇବାକୁ ବାଧ୍ୟ କଲେ । ମହାରାଜା ଛତ୍ର ସାଏ ବନ୍ଦ ହେବାରୁ ରାଣୀ ପୁଅ ଉପରେ କୌଣସି ବିପଦ ଘଟିବାର ଆଶଙ୍କା କରି ନିଜର ପିତୃ ରାଜ୍ୟ ବାମଣ୍ଡାକୁ କୁମରଙ୍କୁ ପଠାଇଦେଲେ ନିଜେ ସମ୍ବଲପୁର ରାଜ୍ୟ ଶାସନ କରି କର ଅସୁଲ କରି ନାଗପୁର ରାଜାଙ୍କ ନିକଟକୁ ପଠାଉ ଥିଲେ ।

ଏଲ୍ଲାବାଦ ଜେଲରେ ମହାରାଜା ଛତ୍ର ସାଏଙ୍କ ସ୍ୱାସ୍ଥ୍ୟଭଙ୍ଗ ହେବାର ଦେଖି ଇଂରେଜ ପଣ୍ଡିତ ତାଙ୍କୁ ଜେଲରୁ ମୁକ୍ତ କରି ଦେଲେ । ସେ ତୀର୍ଥ ଯାତ୍ରା କରିବାକୁ ପୁରୀ ଯାଇ ସେଠାରେ ପରଲୋକ ଗମନ କଲେ । ତେଣୁ ତାଙ୍କ ପୁତ୍ର ଭକ୍ତର ପଣ୍ଡିତ ଅଜିତ ସିଂହଙ୍କୁ ବାମଣ୍ଡାରୁ ଆଣି ସମ୍ବଲପୁର ରାଜ ସିଂହାସନରେ ଅଭିଷେକ କଲେ । ସେ ସମୟକୁ ଅଜିତ ସିଂହଙ୍କର ନାବା-ଳକ ଅବସ୍ଥା ଶେଷ ହୋଇଥିଲା ।

---

## ଅଜିତ ସିଂହ ।

### ୧୭୪୨-୧୭୬୬ ଖ୍ରୀ: ଅ:

ମହାରାଜା ଅଜିତ ସିଂହଙ୍କ ମୂର୍ତ୍ତି ରାଣୀ ଥିଲେ । ଗାଙ୍ଗପୁର ରାଜନନ୍ଦିନୀ ବିଜୟକୁମାରୀ ପାଟରାଣୀ ବାମଣ୍ଡା ରାଜକନ୍ୟା ହେଉ,

ବାସୁଦେବ ବାବୁଙ୍କ ଝିଅ ୩ୟ ବୌଦ୍ଧ ରାଜକନ୍ୟା ୪ର୍ଥ ଧୁର୍ବା ଚନ୍ଦଙ୍କ ଝିଅ ୫ମ, ଜୟପୁରର ହର ମଞ୍ଜୀରାର ଝିଅ ୬ଷ୍ଠ କମଳ ବିଶିଙ୍କର ଝିଅ ମୁକ୍ତା ଦେବୀ ୭ମ ଜତୁହର ରାଜ-ପୁତ୍ରର ଝିଅ ତାରା ବାଈ ୮ମ ରାଣୀଥିଲେ । ୫ମ ରାଣୀଙ୍କ ଗର୍ଭରୁ ଅଭୟ ସିଂହ ୬ଷ୍ଠ ରାଣୀଙ୍କ ଗର୍ଭରୁ ଜୟନ୍ତ ସିଂହ ଜନ୍ମ ଗ୍ରହଣ କରିଥିଲେ । ଏଥି ବାହାରେ ୪ର୍ଥ ରାଣୀଙ୍କ ସଙ୍ଗରେ ଜଣେ ଦାସୀ ଆସିଥିଲା । ତାହାର ଗର୍ଭରୁ ପଦମନ ସିଂହ ଜନ୍ମ ଗ୍ରହଣ କରିଥିଲେ ।

ଦିନେ ଜଣେ ସୌଦାଗର ଘୋଡ଼ା ବିକ୍ରୟ କରିବାକୁ ଆସିଥିଲା । ମହାରାଜା ଅଜିତ ସିଂହ ଘୋଡା ମାନଙ୍କ ମଧ୍ୟରୁ ତିନିଟି ଘୋଡ଼ା ବାଛୁଥିଲେ । ପଦମନ ସିଂହ ମହାରାଜାଙ୍କ ଅଜ୍ଞାତରେ ସେହି ତିନିଗୋଟି ଘୋଡ଼ା ଆଣି ତାହାଙ୍କର ଦୁଇ ଜଣ ସଙ୍ଗୀ ଭାଗୀରଥି ପଟ୍ଟନାୟକ ଓ ମୁରଲୀ ଧର ପଟ୍ଟନାୟ-କଙ୍କ ସହ ଘୋଡ଼ା ଚଢି ଦୌଡ଼ାଇଲେ । ଅନେକ ଦୂର ଯାଇ ଫେରିଲା ସମୟରେ ଶୁଣିଲେ ଯେ ମହାରାଜା ତାଙ୍କ ପ୍ରତି ବିଶେଷ ରାଗାନ୍ୱିତ ହୋଇ ଅଛନ୍ତି । ପଦମନ ସିଂହ ମହା ରାଜାଙ୍କ ନିକଟକୁ ପହୁଞ୍ଚିବା ପୂର୍ବରୁ ଘୋଡ଼ାରୁ ଓହ୍ଲାଇ ଗୋଟିଏ ନଡିଆ ଗଛକୁ ବଲମ୍ ଫିଙ୍ଗିଲେ । ବଲମ୍‌ଟି ଯାଇ ଗଛରେ ଫଳିଥିବା ଗୋଟିଏ ନଡିଆରେ ବିଦ୍ଧ ହୋଇ ପଡିବାକୁ ଲାଗିଲା ଏମନ୍ତ ସମୟରେ ପଦମନ ସିଂହ ନଡିଆ ସହିତ ଆସୁଥିବା ବଲମକୁ ଭୂମିରେ ପଡି ନ ଦେଇ ଶୂନ୍ୟ ଗତ୍ ମାର ଉପରେ ୨ ବଲମ୍‌ଟିକୁ ଧରିଆଣି ମହାରାଜାଙ୍କଠାରେ ଅର୍ପଣ କଲେ ଓ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ମହାରାଜା ତାଙ୍କର ଏପରି ବୀରତ୍ୱ ଦେଖି ଆନନ୍ଦରେ ତାଙ୍କୁ ସେହି ଘୋଡାଟି ଖିଲତ ସହ ଉପହାର ଦେଲେ ।

ସେ ଅନେକ ବ୍ରାହ୍ମଣଙ୍କୁ ଭୂମିଦାନ କରିଥିଲେ । ଦକ୍ଷିଣରୁ କେତେ ଜଣ ନିଷ୍ଠାବାନ ବ୍ରାହ୍ମଣଙ୍କୁ ଆଣାଇ ଅଜିତ ପୁରଶାସନ ଦାନକରିଥିଲେ । ଏହା ଅଜିତାଲ୍ଲି ଶାସନ ନାମରେ ପରିଚିତ ଅଛି । ସେ ସମ୍ବଲପୁର ଗଡ଼କୁ ସୁଦୃଢ଼ କରି ପଥରରେ ବନାଇ ଥିଲେ । ଏହାଙ୍କ ରାଜତ୍ୱ ସମୟରେହିଁ, ମୋଟ, ନାମକ ହୀରା ବ୍ୟବସାୟୀ ଇଂରେଜ ଜଣେ ସମ୍ବଲପୁରକୁ ଆସିଥିଲେ । ତାହାଙ୍କ ସଙ୍ଗରେ ମି: ରବି ନାମକ ଆଉଜଣେ ଇଂରେଜ ମଧ୍ୟ ଆସି ଥିଲେ । ସେହି ମୋଟ ସାହେବ ସମ୍ବଲପୁରରେ କିଛି ଦିନ ରହି " SAMBALPUR IN 1766 " ନାମକ ପ୍ରବନ୍ଧରେ ଲେଖି ଅଛନ୍ତି :—ମହାରାଜା ଅଜିତ ସିଂହଙ୍କର ଦକ୍ଷିଣ ରାଏ ନାମକ ଜଣେ ଦେଓ୍ୱାନ ଥିଲେ । ଶେଷରେ ସେହି ଦେଓ୍ୱାନ ଅତିଶୟ ଅତ୍ୟାଚାରୀ ହେବାରୁ ମହାରାଣୀ ଗୋଟିଏ ଦଳ ଗଠନ କରି ତାଙ୍କୁ ମରାଇ ଦେଲେ । ଓ ତାହାଙ୍କର ଘର ଲୁଟ କରାଇ ଥିଲେ । ପିଲେ ରାଏ ନାମକ ଆଉ ଜଣେ ନିଜେ ଦେଓ୍ୱାନ ହେବା ଅଭିପ୍ରାୟରେ ଦକ୍ଷିଣ ରାଏ ଦେଓ୍ୱାନଙ୍କ ମୃତ୍ୟୁର ପ୍ରଧାନ ଷଡ଼ଯନ୍ତ୍ର କର୍ତ୍ତା ଥିଲେ । କାସ୍ତ୍ରୀ ନାମକ ଆଉ ଜଣେ ରାଜ କର୍ମଚାରୀ ତାହାଙ୍କର ଏହି ଅଭିପ୍ରାୟରେ ବାଧା ଦେଇ ଥିବାରୁ ତାଙ୍କୁ ମଧ୍ୟ ମରାଇ ଦେଇ ପିଲେ ରାଏ ନିଷ୍କଣ୍ଟକ ହୋଇ ଦେଓ୍ୱାନ ପଦରେ ନିଯୁକ୍ତ ହେଲେ । ମହାରାଜା ମୂର୍ଖ ବୋଧିଆ ଥିବାରୁ ପିଲେ ରାଏ ସର୍ବେ ସର୍ବା ହୋଇ ପଡିଲେ । କିଛିଦିନ ପରେ କାସ୍ତ୍ରୀର ଭାଇ ଅକବର ରାଏ ପିଲେ ରାଏକୁ ମାରିବା ଉଦ୍ଦେଶ୍ୟରେ ମହାରାଜାଙ୍କ ସଙ୍ଗେ ପରାମର୍ଶ କରି ସୁବିଧା ଖୋଜିଲେ । ଦିନେ ମହାରାଜାଙ୍କ ମହଲ ସମ୍ମୁଖରେ ଗୋଟିଏ ନାଟ ହେଉ ଥାଏ ଏପରି ସମୟରେ ଅକବର ରାଏ "ମହାରାଜାଙ୍କ ଆଦେଶ" ବୋଲି

ପିଲେ ରାଏଙ୍କୁ ଡ଼ାକି ନେଇ ଗୋଟିଏ ନିର୍ଜନ ସ୍ଥାନରେ ହତ୍ୟା କଲେ ଓ ତାଙ୍କୁ ଦେଓ୍ୟାନ ପଦରେ ନିଯୁକ୍ତ ହେଲେ । ଅନନ୍ତର ମହାରାଜା ଅଜିତ ସିଂହ ମୃତ୍ୟୁ ସମୟରେ ଯୁବରାଜ ଅଭୟ-ସିଂହଙ୍କୁ କହିଲେ "ତୁମ୍ଭର କେଉଁ ସମୟରେ ଏହି ଅଙ୍କବର ରାଏଙ୍କୁ ଦେଓ୍ୟାନ କରିବ ନାହିଁ । ଏହି ବଂଶ କୁଟିଳବର ଅଟେ ।" ୧୭୬୬ ଖ୍ରୀ: ଅ: ରେ ମହାରାଜା ଅଜିତ ସିଂହ ପରଲୋକ ଗମନ କଲେ । ତେଣୁ ଯୁବରାଜ ଅଭୟ ସିଂହ ସମ୍ବଲପୁର ସିଂହାସନ ଅଧିକାର କରି ଅଙ୍କବର ରାଏଙ୍କୁ ଦେଓ୍ୟାନ କାର୍ଯ୍ୟରୁ ଅନ୍ତର କରି କୃଷ୍ଣ ଦେଓ ମଲ୍ଲିକଙ୍କୁ ଦେଓ୍ୟାନୀ ମୁଦ ଦାନକରି ଦେଓ୍ୟାନ କାର୍ଯ୍ୟରେ ନିଯୁକ୍ତ କରି ଥିଲେ । ବିଷ ପ୍ରୟୋଗ ଦ୍ୱାରା ମହାରାଜ ଅଜିତ ସିଂହଙ୍କର ମୃତ୍ୟୁ ହୋଇଥିଲା ବୋଲି ମି: ଟି, ମୋଟ ସାହେବ ସନ୍ଦେହ କରନ୍ତି ।



## ଅଭୟ ସିଂହ ।

### ୧୭୬୬ – ୧୭୭୭ ଖ୍ରୀ: ଅ:

ମହାରାଜା ଅଜିତ ସିଂହଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଅଭୟ ସିଂହ ପୈତୃକ ରାଜ ସିଂହାସନରେ ଅଭିଷିକ୍ତ ହେଲେ । ଏହାଙ୍କର ଦୁଇଟି ରାଣୀ ଥିଲେ । ଗଙ୍ଗପୁରର ଭାଗୀରଥୀ ସିଂହଙ୍କର କନ୍ୟା ଜୀବନ କୁମାରୀ ଦେବୀ ପ୍ରଥମା ଓ ବଘେଲ ବଂଶୀୟ ରାଜକନ୍ୟା ଅମ୍ବିକା ବାଇ ଦ୍ୱିତୀୟା ଅଟନ୍ତି । ପ୍ରଥମ ରାଣୀଙ୍କ ଗର୍ଭରୁ ଦୁଇଟି କନ୍ୟା ଓ ୨ୟ ରାଣୀଙ୍କ ଗର୍ଭରୁ ଗୋଟିଏ କନ୍ୟା ଜାତ ହୋଇ ଥିଲେ । ପ୍ରଥମ ରାଣୀଙ୍କ ପ୍ରଥମ କନ୍ୟା ବିଶ୍ୱାସ କୁମାରୀଙ୍କୁ ଦେବନାଥଙ୍କ ଭ୍ରାତ ଅର୍ଥାତ୍ କୁଅଁର ବିବାହ ହୋଇ ଥିଲେ । ଓ ୨ୟ କନ୍ୟା ସୁବର୍ଣ୍ଣ କୁମାରୀଙ୍କୁ ସମ୍ବଲପୁରର ବଘେଲ ବଂଶୀୟ ଅନନ୍ତ ସିଂହ ବିବାହ ହୋଇ

ଥିଲେ । ଏବଂ ଦ୍ୱିତୀୟ ରାଣୀଙ୍କ କନ୍ୟାଙ୍କୁ ଛୁଟିଆ ନାଗପୁରର ରାଜା ଦେବନାଥ ଶାଏ ବିବାହ ହୋଇ ଥିଲେ । ତାହାଙ୍କ ଗର୍ଭରୁ ଦୁଇଟି କୁମାର ଜନ୍ମ ହୋଇ ଥିଲେ । ସେମାନଙ୍କ ନାମ ଗୋବିନ୍ଦ ସାଏ ଓ ବିଶ୍ୱନାଥ ସାଏ ଅଟେ । ଗୋବିନ୍ଦ-ସାଏ ପାଲ୍ କୋଟରେ ରାଜା ହେଲେ ଓ ବିଶ୍ୱନାଥ ସିଂହ କଡିଅରେ ରହିଲେ । ଗୋବିନ୍ଦ ସିଂହଙ୍କ ଦୁଇ ପୁତ୍ର ହେଲେ । ନାମ—ଜଗନ୍ନାଥ ସାଏ ଓ କାଶୀନାଥ ସାଏ ।

ମହାରାଜା ଅଭୟ ସିଂହ ସାକ୍ଷୀଗୋପିନାଥ ମନ୍ଦିର ନିର୍ମାଣ ଆରମ୍ଭ କରି ଥିଲେ । ତାହାପରେ ଜୟନ୍ତ ସିଂହଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ପ୍ରତିଷ୍ଠା ହୋଇ ଥିଲା । ମହାରାଜା ଅଭୟ ସିଂହ ପୀତବାସ ଷଡ଼ଙ୍ଗୀ ନାମକ ଜଣେ ବ୍ରାହ୍ମଣଙ୍କୁ ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଦିନ ଭୁର୍ଦୋଲ ଗ୍ରାମ ଦାନ କରିଥିଲେ । ଏହି ସମୟରେ ହୋତା ମାନେ ନିଜର ମଧ୍ୟରେ ଚନ୍ଦା କରି ହୋତାଦଢ଼ା ଜଗନ୍ନାଥ ମନ୍ଦିର ନିର୍ମାଣ କରାଇ ତହିଁର ଖଞ୍ଜା-ଅଧ ମଧ୍ୟ ଚଳାଉ ଥିଲେ । ପୀତବାସ ଷଡ଼ଙ୍ଗୀ ତାଙ୍କର ଦାନ ପାଇଥିବା ଗ୍ରାମ ଏହି ପ୍ରଭୁଙ୍କୁ ଚଢ଼ାଇ ଦେଲେ । ଦଣ୍ଡସନା ବରିଆ କେଉଟ ମାନେ ମହାରାଜାଙ୍କ ସୈନ୍ୟ ବିଭାଗରେ ଚାକିରି କରୁ ଥିଲେ । ସେମାନେ ମଧ୍ୟ ନିଜର ମଧ୍ୟରେ ଚନ୍ଦା କରି ସମଲେଶ୍ୱରୀ ମନ୍ଦିରର ଉତ୍ତରସ୍ଥ ଦକ୍ଷି-ଣୁଣ୍ଡି ନାମକ ଦେଉଳ ତିଆରି କରାଇ ମାଟି ସର୍ପଟିଏ ପୂଜା କରୁଥିଲେ । ଏହି ଦଣ୍ଡସନାମାନଙ୍କୁ ଦଣ୍ଡାସିଂହା ଗ୍ରାମ ଦିଆ ଯାଇ ଥିଲା । ପରଶେଷରେ ତାହା ଜପ୍ତ ହୋଇଗଲା । ବଣଖେଣ୍ଡ ହୋଣ୍ଡ ଛନୁ ଚୁଡ଼ୀ, ଜପାଙ୍ଗ ସ୍ଥ ଦୁର୍ଗୋପାଳ ଦେଉଳ କୁଞ୍ଜର ଦାନି ମୁଦି ଦଡ଼ା ଦେଉଳ ତିଆରି କରାଇ ଥିଲେ । ମୁଦି ମାନେ ହୋଡା ବନ୍ଧ ଖୋଲାଇ ଥିଲେ । ମଣାଇ ଜମୀଦାର

ବୁଢ଼ାରଜା ପର୍ବତ ଉପରେ ଶିବାଳୟ ନିର୍ମାଣ କରାଇ ଥିଲେ। ଦେଗାଁ, ଖାଇସମା ଓ ମାଳଙ୍ଗା ଗ୍ରାମରେ ଶିଣ୍ଡା ଗ୍ରାମର ସୌନ୍ଦର୍ଯ୍ୟ ଦାକ୍ଷିଣ ସମ୍ପୂ କାର୍ଯ୍ୟ କରି ଅଛନ୍ତି । ଖାଣ୍ଡି ବଳରାମ ଦାସ ବାଲୁଙ୍କେଶ୍ୱର ମନ୍ଦିର ନିର୍ମାଣ କରାଇ ଥିଲେ । ପୁରୁଷୋତ୍ତମ ବହିଦାର ବହିଦାର ମଠ ଓ ବହିଦାର ବନ୍ଧ ଖୋଳାଇଥିଲେ । ଭରୁଆ ମହାଜନ ନୀଳମାଧବ ( ମୁଦୁଲିଆ ମୁହାଣ ) ଦେଉଳ ତିଆରି କରାଇ ଥିଲେ । ଅକବର ରାଏ ଦେଓ୍ୱାନ ବାଲୁଙ୍କେ-ଶ୍ୱର ମନ୍ଦିରର ଶିବାଳୟ ଓ ସରଣ୍ଡା ଗ୍ରାମର ଶିବାଳୟ ନିର୍ମାଣ କରାଇ ଥିଲେ ।

ମହାରାଜା ଅଭୟ ସିଂହ ଗାଦି ନସିନ ହେଲା ପରେ କୃଷ୍ଣ ବଡ଼ ମଲ୍ଲିକଙ୍କୁ ଦେଓ୍ୱାନ କରିବାରୁ ଅକବର ରାଏ ସହି ପାରିଲେ ନାହିଁ । ସେ ଦେଓ୍ୱାନ ଥିବା ସମୟରେ ସମ୍ବଲ-ପୁରର ସମସ୍ତ ସୈନ୍ୟଙ୍କୁ ନିଜ ଅଧୀନରେ ରଖି ଥିଲେ । ତେଣୁ ସେ ସେମାନଙ୍କ ସାହାଯ୍ୟରେ ବିଦ୍ରୋହ ଆରମ୍ଭକଲେ । ବିଦ୍ରୋହ କ୍ରମେ ୨ ବୃଦ୍ଧି ପ୍ରାପ୍ତ ହେଲା । ଅକବର ରାଏଙ୍କ ସୈନ୍ୟ ମାନେ ଲୁଟପାଟ ଆରମ୍ଭ କଲେ । ଶେଷରେ ରାଜମହଲ ଆକ୍ରମଣ କରି କୃଷ୍ଣ ବଡ଼ ମଲ୍ଲିକଙ୍କର ଦଳର ପ୍ରାୟ ୩୦ ଜଣଙ୍କୁ ମାରି ପକାଇଲେ । କୃଷ୍ଣ ବଡମଲ୍ଲିକ ବନ୍ଦୀ ହେଲେ । ଓ ଅକବର ରାଏ ଦେଓ୍ୱାନ ହେଲେ ।

ଏହି ସମୟରେ କାଶିରାମ ନାମକ ଜଣେ ନର୍ତ୍ତକ ଅସି ମହାରାଜାଙ୍କୁ ଗୀତ ବାଦ୍ୟରେ ବଶୀଭୂତ କରି ମହାରାଜାଙ୍କ ଠାରୁ ଅନେକାନେକ ଅର୍ଥ ବିଦାଇ ପାଇ ଫେରି ଯାଉଥିବା ସମୟରେ ଅକବର ରାଏ ଲୋକ ପଠାଇ ବାଟରୁ ତାହାଠାରୁ ସମସ୍ତ ଲୁଟି ଆଣି ଭଣ୍ଡାରରେ ରଖି ଦେଲେ ।

ରତନ ପୁରରୁ ଜଣେ ସେନାପତି ବିପୁଳ ସୈନ୍ୟ ଧରି ଆସି ମହାରାଜାଙ୍କୁ କହିଲେ ମତେ ଦୁଇଲକ୍ଷ ଟଙ୍କା ନ ଦେଲେ ମୁଁ ତୁମ୍ଭ ବିରୁଦ୍ଧରେ ଯୁଦ୍ଧ କରିବି । ଏହି ଶୁଣି ରାଜା ଦେଓ୍ୱାନଙ୍କୁ କହିଲେ । ଦେଓ୍ୱାନ ତାଙ୍କୁ କିଛୁ ୨ ଟଙ୍କା ଦେଇ ଅନେକ ହିନସ୍ତି ବିନତି ହୋଇ ତାଙ୍କୁ ଫେରାଇ ଦେଲେ ।

ଲୁଡ଼େ ବଗା ଓ ଖିଣ୍ଡା ଦୁଇ ଜମୀଦାର ଏକତ୍ର ମିଳିଯାଇ ରାଜ୍ୟରେ ଲୁଟ ପାଟ ଆରମ୍ଭ କରିବାରୁ ଅକବର ରାଏ ସେମାନଙ୍କୁ ଦମନ କରି ଥିଲେ । ପୂର୍ବରୁ ଯେଉଁ ଗୃହସର କରଣ ଆସିଥିଲେ । ସେ ମଧ୍ୟରେ ଜଣେ ବକସି ଉପାଧିଧାରୀ ସେନାଧ୍ୟକ୍ଷ କାର୍ଯ୍ୟ କରୁଥିଲେ । ତାଙ୍କ ବଂଶର ବାଗବିଶ୍ୱମ୍ବର ନାମକ ଜଣେ ବକ୍‌ସି ଜୟନ୍ତ ସିଂହଙ୍କୁ ରାଜା କରିବା ନିମନ୍ତେ ଅନେକ ଚେଷ୍ଟା କରି ଥିଲେ । ବାମଣ୍ଡା ଓ ଗାଙ୍ଗପୁର ସୀମା ମଧ୍ୟବର୍ତ୍ତୀ ଦଳଦଳ ନାମକ ପର୍ବତ ଉପରେ ଗଡ ନିର୍ମାଣ କରି ନିକଟବର୍ତ୍ତୀ ଇଲାକାମାନ ଲୁଟପାଟ କରି ଜମୀଦାର ମାନଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ସମ୍ମୁଖରେ ଜୟନ୍ତ ସିଂହଙ୍କୁ ଦଳଦଳ ଗଡ଼ରେ ଅଭିଷେକ କଲେ । ଏହା ଦେଖି ଅକବର ରାଏ ସମସ୍ତ ବକ୍‌ସି ମାନଙ୍କୁ ଭୁଲାଇ ଆଣି ଗୋଟିଏ ଗୃହରେ ବନ୍ଦ କରି ୨୧ ଦିନ ପର୍ଯ୍ୟନ୍ତ ରଖିଲେ । ଓ ଜୟନ୍ତ ସିଂହଙ୍କୁ ମଧ୍ୟ ଗୋଟିଏ କୋଠରିରେ ବନ୍ଦକଲେ । ପରିଶେଷରେ ଦେଖିଲେ ଯେ ବକସି ମାନେ ଅବଶ ହୋଇ ମରି ଅଛନ୍ତି । ଜୟନ୍ତ ସିଂହ ବନ୍ଦୀଗୃହରୁ ପଳାଇ ଯାଇ ଗଡ଼ ମଣ୍ଡଳ ରାଜାଙ୍କର ୫୦ ଘୋଡା ସିପାହିର ଦଫାଦାର କାର୍ଯ୍ୟ କରି ରହିଲେ ।

ଏମନ୍ତ ସମୟରେ ଭୋନ୍ସଲା ରାଜା କଟକରୁ କେତେଗୁଡ଼ିଏ ତୋପ ପଠୁଆରେ ନାଗପୁରକୁ ପଠାଉ ଥିଲେ । ଅକବର ରାଏ

ଏହି ସମ୍ବାଦ ପାଇଲକ୍ଷଣି ପଟ୍ଟନାଅର କେଜଟ ମାନଙ୍କ ସଙ୍ଗେ ଗୁପ୍ତ ପରାମର୍ଶ କରି ତୋପ ସମେତ ପଟ୍ଟନାମାନଙ୍କୁ ଗୁମଦର୍ଜ୍ଜି ଗର୍ତ୍ତରେ ଲୁଚାଇ ଦେଲେ । ଏହା ଶୁଣି ନାଗପୁର ରାଜା ସୈନ୍ୟ ସାମନ୍ତ ଧରି ଲଢ଼ାଇ କରିବାର ଉଦ୍‌ଯୋଗ କଲେ । ଅକବର ରାଏ ଲୁଚି ପାରି ଥିବା ତୋପ ସବୁ ଉଦ୍ଧାର କରି ନେଇ ବାଲିବନ୍ଧା ନିକଟସ୍ଥ ଗୁମୁଜ ମାନଙ୍କ ଉପରେ ଖଞ୍ଜି ଦେଲେ । ନାଗପୁର ସୈନ୍ୟ ମହେନ୍ଦ୍ରୀ ଘାଟରେ ପହଞ୍ଚି ନଦୀ ପାର ହେବାର ଚେଷ୍ଟା କରୁଥିବା ସମୟରେ ଗୋଟିଏ ୨ କରି ତୋପ ଛାଡି ଅନେକଙ୍କ ପ୍ରାଣ ସଂହାର କଲେ । ଏହା ଦେଖି ନାଗପୁର ସୈନ୍ୟମାନେ ସନ୍ତ୍ରସ୍ତ ହୋଇ ଫେରି ଗଲେ ।

ଅକବର ରାଏଙ୍କ ପ୍ରତି ଅସନ୍ତୁଷ୍ଟ ଥିବା ବ୍ୟକ୍ତି ମାନେ ଅକବର ରାଏଙ୍କର ବିରୁଦ୍ଧରେ ରାଣୀ ଗୋସାଣୀଙ୍କ ଠାରେ ଅପତ୍ତି କରି ଅକବର ରାଏଙ୍କ ମତ ଉଠାଇ ଦେବାର ଚେଷ୍ଟା କରୁଥିଲେ । ତେଣୁ ଅକବର ରାଏ ରାଣୀ ଗୋସାଣୀଙ୍କୁ ଖୁନ କରି ଦେଲେ । ଏହା ଦେଖି ମହାରାଜା ଓ ରାଜ ଭ୍ରାତା ମାନେ ଅନେକ ଦୁଃଖ ପ୍ରକାଶ କଲେ । ଦେଓ୍ୟାନଙ୍କର ମୁଖ ଚାହିଁବି ନାହିଁ ବୋଲି ମହାରାଜା କନାଟ ବାଡ଼ାର ସେପାଖେ ରହି ମନ୍ତ୍ରୀଙ୍କ ସଙ୍ଗେ କଥା ବାର୍ତ୍ତା କରି ନୈରାଶ୍ୟରେ ଜୀବନ ଯାପନ କରିବାକୁ ଲାଗିଲେ । ସେ ୧୭୬୬ ଖ୍ରୀ: ଅ: ରେ ପରଲୋକ ଗମନ କଲେ । ତାହାଙ୍କର ପୁତ୍ର ନ ଥିବାରୁ ଅକବର ରାଏ ପଦ୍ମନ ସିଂହଙ୍କୁ ରାଜା ହେବାକୁ କହିଲେ । ସେ ଅନିଚ୍ଛା ପ୍ରକାଶ କରି ମାତୃ ଶୋକରେ ବ୍ୟାକୁଳ ହୋଇ ଅନୁତାପ କରି କରି ଅଳ୍ପ ଦିନରେ ମୃତ୍ୟୁ ମୁଖରେ ପତିତ ହେଲେ ।



## ବଳଭଦ୍ର ସାଏ ।

### ୧୭୭୭-୧୭୮୨ ଖ୍ରୀ: ଅ:

ମହାରାଜା ଅଭୟ ସିଂହଙ୍କ ମୃତ୍ୟୁ ପରେ ସମ୍ବଲପୁର ସିଂହାସନ ଖାଲି ହେବାରୁ ଅକବର ରାଏ ଦେଓ୍ୱାନ ଘୂର ଚିନ୍ତିତ ହେଲେ । ରାଜ ବଂଶରେ ଅନ୍ୟାନ୍ୟ ଦାବିଦାର ଥିଲେ ହେଁ ଅକବର ରାଏ ସେମାନଙ୍କ ଦାବି ଉଠାଇ ଦେଇ ରଘୁନାଥ ସିଂହଙ୍କ ନାତି ନାବାଳକ ବଳଭଦ୍ର ସାଏଙ୍କୁ ପଦ୍ମପୁରରୁ ଆଣାଇ ସମ୍ବଲପୁର ସିଂହାସନରେ ଅଭିଷେକ କଲେ । ଏହି ହେତୁରୁ ସମ୍ବଲପୁର ସିଂହାସନର ପ୍ରକୃତ ଦାବଦାରମାନେ ଅକବର ରାଏଙ୍କ ପ୍ରତି ବିଶେଷ ଅସନ୍ତୁଷ୍ଟ ହେଲେ । କିନ୍ତୁ ଭୟରେ କିଛି କରି ପାରିଲେ ନାହିଁ । ଯାହା ହେଉ ସାରଂଗଡ଼ ରାଜା ଏହି ସବୁ ଅନ୍ୟାୟ ଦେଖି ଅସହ୍ୟ ବୋଧ କରି ଗଡ଼ ମଣ୍ଡଳରେ ଥିବା ଜୟନ୍ତ ସିଂହଙ୍କ ନିକଟକୁ ସମ୍ବାଦ ଦେଲେ । କାରଣ ସେ ସମ୍ବଲପୁର ସିଂହାସନର ପ୍ରକୃତ ଦାବିଦାର ଥିଲେ । ଜୟନ୍ତ ସିଂହ ଏହି ସମ୍ବାଦ ପାଇ ଗଡ଼ ମଣ୍ଡଳ ରାଜାଙ୍କୁ ସାହାଯ୍ୟ ମାଗିଲେ । ସେ ୫୦ ଅଶ୍ୱାରୋହୀ ଓ କେତେକ ପଦାତିକ ସୈନ୍ୟ ଦେଇ ସାହାଯ୍ୟ କରିବାରୁ ସେମାନଙ୍କୁ ଧରି ସାରଂଗଡ ବାଟରେ ଆସୁଥିବା ସମୟରେ ସାରଂଗଡ଼ ରାଜା ମଧ୍ୟ ନିଜର ଅନେକ ସୈନ୍ୟ ସାମନ୍ତ ଦେଇ ସାହାଯ୍ୟ କଲେ । ସେ ସମୟରେ ଅକବର ରାଏଙ୍କର ଭଣଜା ଅନନ୍ତରାମ ପୃଷ୍ଠେ ୫୦ ସିପାହିର ମାଲିକ ହୋଇ ଚନ୍ଦ୍ରପୁରରେ ଥିଲେ । ଜୟନ୍ତ ସିଂହଙ୍କ ଆଦେଶରେ ସେ ମଧ୍ୟ ୫୦ ଅଶ୍ୱାରୋହୀ ସେନା ଧରି ଆସି ତାଙ୍କ ସଙ୍ଗରେ ମିଶିଲେ । ଏହିପରି ଜୟନ୍ତ ସିଂହ ପ୍ରକାଣ୍ଡ ସୈନ୍ୟ ସଂଗ୍ରହ କରି ଆସି ସମଲାଇ ମନ୍ଦିର ନିକଟରେ ଛାଉଣି

କଲେ । ଏହା ଦେଖି ଅକବର ରାଏ ମୃତ୍ୟୁ ଆଶଙ୍କା କରି ୫ ଥାଲି ସ୍ୱର୍ଣ୍ଣ ମୁଦ୍ରା ଆଣି ଜୟନ୍ତ ସିଂହଙ୍କୁ ଦିଆ କରି ସାକ୍ଷାତ କଲେ ଓ କ୍ଷମା ମାଗିଲେ । ଜୟନ୍ତ ସିଂହ ଦେଓ୍ୱାନଙ୍କ ପ୍ରତି ବିରକ୍ତ ହୋଇ ଦେଓ୍ୱାନ ଓ ଅନୁଚର ବର୍ଗଙ୍କ ଗହଣରେ ରାଜ ମହଲକୁ ଗଲେ । ମହଲକୁ ପହୁଞ୍ଚିବା କ୍ଷଣି ନାବାଳକ ବଳଭଦ୍ର ସାଏ ଦୌଡି ଆସି ଜୟନ୍ତଙ୍କ ପଦ ତଳେ ପଡି କ୍ଷମା ମାଗିଲେ । ଜୟନ୍ତ ତାଙ୍କର କିଛି କଥା ନ ଶୁଣି ରାଗାନ୍ୱିତ ହୋଇ କହିଲେ "ବଳଭଦ୍ର ସାଏ ! ଯେଉଁ ସିଂହାସନ ତୋର ଏକ ମାତ୍ର ପୂଜ୍ୟ ତାହାକୁ ତୁ କିପରି ପାଦରେ ମାଡି ସେହି ସିଂହାସନ ଉପରେ ବସିଲୁ ? ଏଥିର ଯୋଗ୍ୟ ପୁରସ୍କାର ତୋତେ ଦିଆଯିବ ।" ଏପରି କହି ତାହାର ମୁଣ୍ଡର ବାଳ ଧରି ଘୋଷାଡି ନେଇ ସିଂହାସନ ଉପରେ କଚାଡି ଦେଲେ । ସେହି ଆଘାତରେ ନାବାଳକ ବଳଭଦ୍ର ସାଏଙ୍କ ପ୍ରାଣବିୟୋଗ ହେଲା । ରକ୍ତରେ ରାଜସିଂହାସନ ରଞ୍ଜିତ ହେଲା । ମହଲ ଭିତରକୁ ଯାଇ ଦେଖିଲେ ବଳଭଦ୍ର ସାଏଙ୍କ ମାତା ପୁରି ଘୁଣିବା କାର୍ଯ୍ୟରେ ବ୍ୟସ୍ତଥିଲେ । ତାଙ୍କୁ ସେହି ପ୍ରଜ୍ୱଳିତଅନଳ ଉପରେ ଥିବା ଘିଅ କରାହି ଉପରେ ନିକ୍ଷେପ କଲେ । ତଦ୍ଦ୍ୱାରା ସେ ପଞ୍ଚତ୍ୱ ପ୍ରାପ୍ତହେଲେ । ଶୁକ ଓ ରତନ ସଓ୍ୱାର ଦୁଇଜଣ ଅକବର ରାଏଙ୍କ ପ୍ରିୟପାତ୍ର ଥିଲେ । ସେମାନଙ୍କୁ ମଧ୍ୟ ହଣାଇ ଦେଲେ । ଏପରି ଭାବରେ ନିଷ୍କଣ୍ଟକ ହୋଇ ସମ୍ବଲ-ପୁର ରାଜ ସିଂହାସନ ଅଧିକାର କଲେ ।



## ଜୟନ୍ତ ସିଂହ ।

### ୧୭୮୨-୧୮୧୮ ଖ୍ରୀ: ଅ:

ମହାରାଜା ଜୟନ୍ତ ସିଂହ ସମ୍ବଲପୁର ରାଜ ସିଂହାସନ ରେ

ଅଭିଷିକ୍ତ ହେଲା ପରେ କୃତଜ୍ଞତାର ନିଦର୍ଶନସ୍ୱରୂପ ସାରଙ୍ଗଡ଼ ରାଜାଙ୍କୁ କହିଲେ "ଆପଣ ମୋହର ଯେଉଁ ଉପକାର କରି ଅଛନ୍ତି ତହିଁର ପୁରସ୍କାରସ୍ୱରୂପ ଆପଣଙ୍କୁ କଣ ଦେଇ ସନ୍ତୁଷ୍ଟ କରିବି ?" ସାରଙ୍ଗଡ଼ ରାଜା ଉତ୍ତର ଦେଲେ "ମତେ ସରିଆ ପ୍ରଗଣା ଦିଅ" । ମହାରାଜ ଏ ସମ୍ବନ୍ଧରେ ଦେଓ୍ୱାନ ଅକବର ରାଏଙ୍କୁ ମତ ମାଗିଲେ । ଦେଓ୍ୱାନ ତାହା ଦେବା ନିମନ୍ତେ ମତ ନ ଦେବାରୁ ମହାରାଜା ତୁନି ହୋଇରହିଲେ । କିଛିଦିନ ପରେ ସାରଂଗଡ଼ ରାଜା ପେଣି ଟିବାକୁ ବଦାୟ ମାଗିଲେ । ମହାରାଜା ପୁନର୍ବାର ତାଙ୍କୁ ପଚାରିବାରୁ ରାଜା କହିଲେ ମତେ ଅକବର ରାଏର ଛିନ୍ନ ମୁଣ୍ଡ ଦିଅ । ମହାରାଜା ସ୍ୱୀକାର କରି ତଦାନନ୍ତନ ସେନାପତି ଫକିର ସିଂହଙ୍କୁ ଅକବର ରାଏଙ୍କୁ ହାଣି ଦେବାକୁ ଆଦେଶ ଦେଲେ । ସେନାପତି ଅକବରଙ୍କୁ ହାଣି ମୁଣ୍ଡ ଆଣି ମହା ରାଜାଙ୍କ ଠାରେ ଅର୍ପଣ କଲେ । ଅନନ୍ତର ମହାରାଜା ଅକବର ରାଏଙ୍କ ପୁଅକୁ ଦେଓ୍ୱାନ କାର୍ଯ୍ୟରେ ନିଯୁକ୍ତ କଲେ ଓ ତାକୁ ମଧ୍ୟ ସେହି ସରିଆ ପ୍ରଗଣା ଦେବା ସମ୍ବନ୍ଧରେ କହିଲେ । ସେ ମଧ୍ୟ ଅସ୍ୱୀକାର କରିବାରୁ ତାଙ୍କୁ ମଧ୍ୟ ହଣାଇ ଦିଆଗଲା । ତତ୍-ପରେ ଶଶିକର ବହିଦାର ପାଠକରଣ ଦ୍ୱାରା ସନନ୍ଦ ଲେଖାଇ ସରିଆ ପ୍ରଗଣା ସାରଂଗଡ଼ ରାଜାଙ୍କୁ ଅର୍ପଣ କଲେ ।

ମହାରାଜା ଜୟନ୍ତ ସିଂହଙ୍କ ତିନୋଟି ରାଣୀ ଥିଲେ । ପ୍ରଥମ ଗାଙ୍ଗପୁର ରାଜା ବୈଦ୍ୟନାଥ ଦେଓଙ୍କ ନନ୍ଦିନୀ ରତ୍ନ କୁମାରୀ ୨ୟ ହୈହୟ ବଂଶୀୟା ମୁକ୍ତା ଦେବୀ ୩ୟ ବଘେଲ ବଂଶୀୟା ରହସ୍ୟ କୁମାରୀ ଅଟନ୍ତି । ଏହି ତୃତୀୟ ରାଣୀଙ୍କ ଗର୍ଭରୁ ମହାରାଜ ସାଏ ସମ୍ବଲପୁର ଯୁବରାଜ ଜନ୍ମ ହୋଇ ଥିଲେ ।

ପୂର୍ବରେ ମହାରାଜା ବଳଭଦ୍ର ସାଏ ଗୋଟିଏ ଶିବାଳୟ ନିର୍ମାଣ କରାଇ ଥିଲେ । ତହିଁରେ ଭଗ୍ନଶେଷ ମନ୍ଦର ନ ଥିବାରୁ ଗୋଟିଏ ଭଗ୍ନଶେଷ ମନ୍ଦର ଅଜବର ସାଏ ବନାଇ ଥିଲେ । ତହିଁର ବେଢ଼ା ପ୍ରାଚୀର ଶମ୍ଭୁ ପଟ୍ଟନାୟକ ବନାଇ ଥିଲେ । ଗୋଟିଏ ଜଳାଶୟ ଉଦ୍ଧାର କରିବାକୁ ବାବାଙ୍କୁ ସ୍ୱପ୍ନାଦେଶ ହେବାରୁ ବାବାଜ ଅଜବର ସାଏଙ୍କୁ କହି ଗୋଟିଏ ଜଳାଶୟ ଖନନ କାର୍ଯ୍ୟ ଆରମ୍ଭ କଲେ । ବନ୍ଧ ଖୋଳାଉ ଥିବା ସମୟରେ ମାଟି ଖୋଳୁ୨ କିଛି ଧନ ମିଳିବାରୁ ବାବାଜ ତାହା ଆତ୍ମସାତ୍ କଲେ । ତେଣୁ ତାଙ୍କର ଦୁଇ ଆଖି ଫୁଟି ଗଲା । ପରେ ଶିବଙ୍କୁ ପୂଜା ଆରାଧନା କରିବାରୁ ଗୋଟିଏ ଆଖି ଦିଶିଲା ଗୋଟିଏ ଦିଶିଲା ନାହିଁ । ସେ କଣା ହୋଇ ରହିଲେ । ଉକ୍ତ ବନ୍ଧ ଓ ବରଡ଼ା ଦେଉଳ ମହାରାଣୀ ରତ୍ନ କୁମାରୀ ଦେବୀଙ୍କ କୀର୍ତ୍ତି ଅଟେ ।

ଖିଣ୍ଡାରେ ମନୋହର ସିଂହ ନାମରେ ମହାରାଜା ଜୟନ୍ତ ସିଂହଙ୍କ ଜଣେ ଜ୍ଞାତିଭ୍ରାତ ଥିଲେ । ସେ ଅତି ରୂପବାନ ଯୁବକ । ସେ ମହାରାଣୀଙ୍କ ମନ ହରଣ କରୁଥିବାରୁ ମହାରାଜା ତାଙ୍କୁ ହାଣି ଦେବା ନିମନ୍ତେ ତାଙ୍କର ତାତ୍କାଳିକ ଦେୱାନ ମାନ ମିଶ୍ରଙ୍କୁ କହିଲେ । ଦେୱାନ ଏଥିରେ ଅସ୍ୱୀକାର କରି-ବାରୁ ସୋନପୁରରୁ ଗୋବିନ୍ଦ ଦେୱାନଙ୍କୁ ଡକାଇ ତାଙ୍କ ଦ୍ୱାରା ଏହି କାର୍ଯ୍ୟ ସାଧନ କରିଥିଲେ । ଏଣୁ କରି ଗୋବିନ୍ଦ ଦେୱାନଙ୍କୁ ରଙ୍କ ଚିହ୍ନିତ ମୁଦ୍ରିକା ଓ ପାଟ ପଗଡ଼ି ଦେଇ ଦେୱାନ କାର୍ଯ୍ୟରେ ନିଯୁକ୍ତ କରିବାରୁ ମାନ ମିଶ୍ର ନିଜ ପୁଅକୁ ଧରି ନଦୀ ପାରି ହୋଇ ପଳାଇଗଲେ ।

ଏହି ବର୍ଷ ଫଗୁଣ ମାସରେ ପୁରୀର ଦୋଳ ଯାତ୍ରା ଦେଖି-ବାକୁ ଖେଁଦୁଲ ରାଜା ସପରିବାରରେ ଅସ୍ତୁ ଥିବା ସମୟରେ

ସମ୍ବନ୍ଧରେ ପାଟଣାର ରାଜାଙ୍କୁ ପଚାରିଲେ । ପାଟଣାର ରାଜା ପାର୍ବତୀପଥ ଦେଖାଇ ଦେବାରୁ ମ୍ରେନ୍‌ସଲ ରାଜା ସେହି ପଥରେ ଯାଇ ବଡ଼ କଷ୍ଟ ପାଇବାରୁ ପ୍ରତିଶୋଧ ନେବାକୁ ସମ୍ବଲପୁର ରାଜାଙ୍କଠାରେ ଅଭିଯୋଗ କଲେ । ପାଟଣାର ରାଜା ସମ୍ବଲପୁର ରାଜାଙ୍କ ହିତାକାଙ୍କ୍ଷୀ । ସେ ସାହାଯ୍ୟ ବା ଡରରେ କଣ ତାଙ୍କୁ ଖାଇବାକୁ ମଧ୍ୟ ଦେଲେ ନାହିଁ । ମ୍ରେନ୍‌ସଲ ରାଜା ଗର୍ବାନ୍ୱିତ ହୋଇ ପୁରୀ ଯାଉଥିବା ସମୟରେ କଟକରେ ତାଙ୍କର ସେନାପତି ଓ ସୈନ୍ୟମାନେ ବେତନ ମାଗିବାରୁ ମ୍ରେନ୍‌ସଲ ରାଜା କହିଲେ ସେନାପତି ମାନଙ୍କ ମଧ୍ୟରୁ ଚାରିଜଣ ସୈନ୍ୟ ସହ ଯାଇ ବୌଦ, ସୋନପୁର ଓ ସମ୍ବଲପୁର ରାଜାମାନଙ୍କୁ ବନ୍ଦ କଲା ପରେ ବେତନ ଦିଆ ଯିବ । ଏହା ଶୁଣି ସେନାପତିମାନଙ୍କ ମଧ୍ୟରୁ ଚାରି ଜଣ କଟକ ନ ଯାଇ ବୌଦ ଯାଇ ବୌଦ ରାଜା ଚନ୍ଦ୍ରଶେଖର ଦେଓଙ୍କ ସଙ୍ଗେ ଲଢ଼ାଇ କଲେ । ଯୁଦ୍ଧରେ ବୌଦ ରାଜାଙ୍କୁ ପରାସ୍ତ କରି ବନ୍ଦ କଲେ । ତତ୍‌ପରେ ସୋନପୁର ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କଲେ । ଯୁଦ୍ଧରେ ସୋନପୁର ରାଜା ପୃଥ୍ୱୀ ସିଂହଙ୍କୁ ପରାସ୍ତ କରି ରାଜା ଓ ଯୁବରାଜ ରଘୁନାଥ ସିଂହଙ୍କୁ ବନ୍ଦ କରି ସମ୍ବଲପୁର ଗଲେ । ମ୍ରେନ୍‌ସଲ ରାଜା ପୁରୀରୁ ଫେରିଲେ । ସମ୍ବଲପୁର ଅତି ଦୁର୍ଭେଦ୍ୟ ଗଡ଼ ଥିଲା । ଏଣୁ ସେନାପତିମାନେ ନିଜର ସୈନ୍ୟ ବିଭକ୍ତ କରି ଗଡ଼ର ଚାରିଦ୍ୱାର ଘେରି ରହି ଯୁଦ୍ଧ ଆରମ୍ଭ କଲେ । ଗଡର ଉତ୍ତରରେ ଚଇ ସାଗର ତରଫରେ ସାହାବାଦ ଖାଁ, ମହାନଦୀ ତରଫ ଶାହଜହାନ ଖାଁ, ବଡ ହାଟ ତରଫକୁ ଭୁଜଙ୍ଗସିଂହ ଓ ମୁହାଁଣ ଦର୍ଗା ତରଫ ରଘୁନାଥ ବକ୍‌ସି ଓ ବାହାଦୁର ବନ୍ଧ ନିକଟରେ ନାନା ସାହେବ ସୈନ୍ୟ ସହିତ କରି ମୁକାମ କରି ରହିଲେ

ସୈନ୍ୟମାନେ ଗଡ଼ ବାହାରେ ରହି ଭିତରକୁ ପଶିବାକୁ ଅନେକ ଚେଷ୍ଟା କଲେ । ଗଡ଼ର କାନ୍ଥ ଭାଙ୍ଗିବାକୁ ଗୋଳା ନିକ୍ଷେପ କଲେ । ସୁଦୃଢ଼ କାନ୍ଥ କୌଣସି ମତେ ଭାଙ୍ଗିଲା ନାହିଁ । ପ୍ରାଚୀର ରକ୍ଷୀ ପୂର୍ବରୁ ସତର୍କ ହୋଇ କାନ୍ଥ ଉପରେ ବଡ଼ ବଡ଼ ପଥର ଖଞ୍ଜି ରଖିଥିଲା । ଗୋଳାର ଶବ୍ଦ ହେଲାମାତ୍ରେ ପଥର ଗୋଟି ଗୋଟି କରି ପାଣିକୁ ଖସାଇ ଦେଉ ଥିଲା । ପାଣି ଛିଟ୍‌କି ଥିବାର ଦେଖି ଶତ୍ରୁ ଫେରିଗୋଳନ୍ଦାଜ ସୈନ୍ୟ ବିଚାର କଲେ କେନ୍ଦ୍ରର ଲକ୍ଷ ଠିକ ନାହିଁ । ସମସ୍ତ ଗୋଳା ପାଣିରେ ପଡ଼ି ନଷ୍ଟ ହୋଇ ଯାଉ ଅଛି । ଏପରି ବିଚାର କରି କେନ୍ଦ୍ରର ମୁହଁ ଟିକିଏ ଉପର କରି ଦେବାରୁ ଗୋଳାମାନ ଉପରେ ଉପରେ ଉଡ଼ି ଯିବାକୁ ଲାଗିଲା । କାନ୍ଥର କୌଣସି କ୍ଷତି ହେଲା ନାହିଁ । ଏହା ଦେଖି ଭୋନ୍ସଲ ସୈନ୍ୟମାନେ କାନ୍ଥ ଡେଇଁ ଗଡ଼କୁ ପଶିବାର ଚେଷ୍ଟା କଲେ । ତାହା ସୁଦ୍ଧା ହୋଇ ପାରିଲା ନାହିଁ । ପ୍ରାଚୀର ରକ୍ଷୀ ବର୍ଚ୍ଛି ମାରି ତାହାଙ୍କର ପ୍ରାଣ ନେଲେ । ଅନନ୍ତର ଭୂମି ମଧ୍ୟରେ ସୁଡ଼ଙ୍ଗ ତିଆର କରି ଗଡ଼ ମଧ୍ୟକୁ ପ୍ରବେଶ କରିବାର ଚେଷ୍ଟା କଲେ । ତାହା ମଧ୍ୟ ହୋଇ ପାରିଲା ନାହିଁ । ପ୍ରାଚୀର ରକ୍ଷୀ ଜାଣି ପାରି ସୁଡ଼ଙ୍ଗ ଦ୍ୱାର ବନ୍ଦ କରି ସୁଡ଼ଙ୍ଗର ଉପରସ୍ଥ ମାଟି ଭାଙ୍ଗି ଦେବାରୁ ଅନେକେ ତହିଁରେ ସମାହିତ ହୋଇ ମରି ଗଲେ । କୌଣସି ବାଟରେ ଗଡ଼କୁ ପ୍ରବେଶ କରି ନ ପାରି ଭୋନ୍ସଲ ସୈନ୍ୟମାନେ ଦୁର୍ଗ ଅବରୋଧ କରି ଅନେକ ଦିନ ପର୍ଯ୍ୟନ୍ତ ଘେରି ରହିଲେ । ଦୁର୍ଗ ବାସୀମାନେ ଅନାହାରରେ କଷ୍ଟ ପାଇଲେ । ବାହାରରୁ କିଛି ଖାଦ୍ୟ ଜିନିଷ ଗଡ଼ ମଧ୍ୟକୁ ଆସି ପାରିଲା ନାହିଁ । ଦିନେ ଜଣେ ଲୋକ ଖାଇ ବାଟରେ ଗଡ଼ରୁ ବହିର୍ଗତ ହେଉ ଥିବାର ଭୋନ୍ସଲ ସୈନ୍ୟମାନେ

ଦେଖିଲେ । ତାହା ଗଡ଼ର ପ୍ରବେଶ ପଥ ଅଟେ ବୋଲି ସ୍ଥିର କରି ସେହି ପଥରେ ଧସାଇ ପଶି ଗଡ଼ ମଧ୍ୟକୁ ପ୍ରବେଶ କଲେ ଓ ଗଡ଼ର ଗୁପ୍ତ ଦ୍ୱାର ଖୋଲା କରି ଦେବାରୁ ସମସ୍ତ ଇଂରେଜଙ୍କ ସୈନ୍ୟ ମାନେ ଗଡ଼ ମଧ୍ୟକୁ ପ୍ରବେଶ କରି ଭୟଙ୍କର ଯୁଦ୍ଧ ଆରମ୍ଭ କଲେ । ଗଡ଼ ମଧ୍ୟରେ ସ୍ଥାନେ୨ ଗୃହ ଦାହ ଆରମ୍ଭ କରି ଦେଲେ । ଗଡ଼ବାସୀମାନଙ୍କୁ ହାଣ କାଟ କରି ଅସ୍ଥିର କରି ପକାଇଲେ । ଅନେକ ଦିନରୁ ଭୋକରେ ପଡ଼ି୨ କଷ୍ଟ ପାଇ ଥିବା ସମ୍ବଲପୁର ସୈନ୍ୟମାନେ ମଧ୍ୟ ଅଧିକ ଯୁଦ୍ଧ କରି ନ ପାରିବାରୁ ପରାସ୍ତ ହୋଇ ଥିଲେ । ପରିଶେଷରେ ମହାରାଜା ଜୟନ୍ତ ସିଂହ ଓ ଯୁବରାଜ ମହାରାଜ ସାଏଙ୍କୁ ବନ୍ଦି କଲେ । ରଘୁନାଥ ବକ୍ସି ଗୋବିନ୍ଦ ଦେଓ୍ୱାନଙ୍କୁ ଧରି ନେଇ ଦଣ୍ଡ ଦେବାକୁ ବସିବାରୁ ଗୋବିନ୍ଦ ଦେଓ୍ୱାନ କହିଲେ ଏଥିର ପ୍ରତିଶୋଧ ରଖା ହୋଇ ଅଛି । ଏହା ଶୁଣି ରଘୁନାଥ ବକ୍ସି ଦଣ୍ଡ ଦେଲେ ନାହିଁ ।

ନାନା ସାହେବଙ୍କ ଆଦେଶରେ ବୌଦ ସୋନପୁର ଓ ସମ୍ବଲପୁର ରାଜା ଓ ଯୁବରାଜ ମାନେ ଗୃହାରେ ବନ୍ଦି ହୋଇ ରହିଲେ । ଭୂପ ସିଂହ ସମ୍ବଲପୁରର ଶାସନ କର୍ତ୍ତା ପଦରେ ନିଯୁକ୍ତ ହେଲେ । ସଦାଶିବ ରାଏ ପାଠ କରଣଙ୍କୁ ତାଙ୍କର ସହ-କାରୀ ଶାସନ କର୍ତ୍ତା ପଦରେ ନିଯୁକ୍ତ କରି ନାନା ସାହେବ ସପରିବାର ନାଗପୁରକୁ ବାହାରି ଗଲେ । ଦିନେ ସଦାଶିବ ଦେଖିଲେ ଯେ ଜଣେ ସିପାହୀ ରାଜ ପରିବାରର ଜଣେ ଦାସୀ ସଙ୍ଗରେ କୁ ପ୍ରବୃତ୍ତିରେ ଲିପ୍ତ ଅଛି । ସେ ଭୂପ ସିଂହଙ୍କ ଆଦେ-ଶରେ ତାକୁ ଜେଲ ଦେଲେ । କିଛିଦିନ ପରେ ସେ ଜେଲରୁ ପଳାଇ ଯାଇ ଭୂପସିଂହଙ୍କୁ ସ୍ଥାନାନ୍ତର କରିବା ନିମନ୍ତେ ଇଂରେଜଙ୍କ ରାଜାଙ୍କୁ ଏଣୁ ତେଣୁ କହିଲା । ତେଣୁ ଇଂରେଜଙ୍କ ରାଜା ତାହାଙ୍କ

କଥାରେ ବିଶ୍ୱାସ କରି ଭୂପସିଂହଙ୍କୁ ବଦାଲ ହେବା ପାଇଁ ପରୱାନା ପଠାଇଲେ । ଭୂପସିଂହ ସେହି ହୁକୁମ ଅବମାନନା କରିବାରୁ ପୁଣି ଫେରି ଯାଇ ଭୋନ୍ସଲ ରାଜାଙ୍କଠାରେ ରିପୋର୍ଟ କଲ । ଭୋନ୍ସଲ ରାଜା ଭୂପସିଂହ ବିରୁଦ୍ଧରେ ଅନେକ ସୈନ୍ୟ ପଠାଇଲେ । ସେମାନେ ଆସି ମାଲଖୋର୍ଦାରେ ମୁକାମ କରି ରହିଲେ । ଏହି ସମ୍ବାଦପାଇ ଭୂପସିଂହ ସସୈନ୍ୟେ ସୁରଗଡ଼ ଯାଇ ସେଠାରୁ ରାଜାଙ୍କର ସୈନ୍ୟ ନେଇ ସିଂହୋଡ଼ା ଘାଟିରେ ନାଗପୁର ସୈନ୍ୟ ସଙ୍ଗେ ଲଢ଼ାଇ କଲେ । ଯୁଦ୍ଧରେ ନାଗପୁର ସୈନ୍ୟ ପରାସ୍ତ ହୋଇ ଫେରି ଯାଇ ନାନା ସାହେବଙ୍କ ଠାରେ ରିପୋର୍ଟ କରିବାର ସୁବିଧା ଖୋଜି ବସିଲେ ଏଣେ ଭୂପସିଂହ ସେହି ଘାଟି ନିକଟସ୍ଥ ଗର୍ଜଣା ଗ୍ରାମଲୁଟ କରିବାରୁ ସେହି ଗ୍ରାମର ଚମରୁ ଗୌନ୍ତିଆ ତାହାଁର ପ୍ରତିଶୋଧ ନେବାର ଚେଷ୍ଟା କଲେ । ଏହି ସମୟରେ ଭୋନ୍ସଲ ରାଜା ପୁନର୍ବାର ବହୁ ସଂଖ୍ୟକ ସୈନ୍ୟ ପଠାଇଲେ । ସେମାନେ ସାରଙ୍ଗଡ଼ ଇଲାକ ର ଲେଡ଼ରା ଘାଟି ଧରି ଗିର୍ଣ୍ଡୋଲ ଗ୍ରାମରେ ଛାଉଣି କରି ରହିଲେ । ଏହି ସ୍ଥାନରେ ଚମରୁ ଗୌନ୍ତିଆ ଏହାଙ୍କ ସଙ୍ଗରେ ମିଳିତ ହୋଇ ଏମାନଙ୍କ ସଙ୍ଗେ ପରାମର୍ଶ କରି ଫେରି ଆସି ଭୂପସିଂହଙ୍କୁ କହିଲେ "ନାଗପୁରରୁ କେବଳ ୫୦ ଜଣ ସୈନ୍ୟ ଆସି ଅଛନ୍ତି" । ଏହି ଖବର ପାଇ ଭୂପସିଂହ ଅଳ୍ପ ମାତ୍ର ସୈନ୍ୟ ନେଇ ଲଢ଼ାଇ ଆରମ୍ଭ କଲେ କିନ୍ତୁ ପରାଜିତ ହୋଇ ପଳାଇ ଗଲେ ଓ ଚମରୁ ଗୌନ୍ତିଆ ତାଙ୍କୁ ଠକି ଦେଲ ବୋଲି ତାହାଠାରୁ ପ୍ରତିଶୋଧ ନେବାକୁ ଗ୍ରୁହିଁଲେ ଭୂପସିଂହ ପଳାୟନ କରିଥିବାର ସମ୍ବାଦପାଇ ନାନାସାହେବ ସେନାପତି କୁମେଦାନଙ୍କ ଜିମାରେ ବହୁ ସୈନ୍ୟ ଦେଇ ପଠାଇଲେ । ଏଥର ଭୂପସିଂହ କୁଲବିରା ଗଡ଼ରେ ମହାରାଣୀ

ବନ୍ଦୀ କୃପାଶ୍ରୀଙ୍କୁ ରକ୍ଷି ସମ୍ବଲପୁର ଗଡ଼କୁ ମରହଟ୍ଟାମାନଙ୍କୁ ଛାଡ଼ି ଦେଲେ । ମହାରାଣୀ ସେଠାରେ କିଛୁଦିନ ରହି ପିତାଙ୍କର ରାଜପୁରକୁ ଯାଇ ରହିଲେ । କିଛୁଦିନ ପରେ ମହାରାଣୀ ସେଠାରୁ ମଧ୍ୟ ବାହାରି ଯାଇ ଛୁଟିଆ ନାଗପୁରରେ ୫୦୦୦ ଟଙ୍କାରେ "ଜମାଦାର" ଓ "ପଣ୍ଡିତ ଭଟ୍ଟ" ନାମରେ ଦୁଇଖଣ୍ଡ ଗ୍ରାମ କିଣି ବାସ କଲେ । ଏହି ସମୟରେ ଭୂପସିଂହ ରାଣୀଙ୍କ ପକ୍ଷରୁ ଇଂରେଜ ସରକାରଙ୍କର ସୈନ୍ୟ ଛାଉଣି ହଜାରିବାଗକୁ ଯାଇ ପୋଲିଟିକେଲ୍ ଏଜେଣ୍ଟ କର୍ଣ୍ଣେଲ୍ ବର୍ଟନ ସାହେବଙ୍କଠାରେ ସାକ୍ଷାତ କରି ସମ୍ବଲପୁର ରାଜ୍ୟ ପାଇବାକୁ ଅନୁରୋଧ କଲେ । ଏହା ଶୁଣି ସେ ଗଭର୍ଣ୍ଣମେଣ୍ଟଙ୍କଠାରୁ ମଞ୍ଜୁରି ଆଣି କେପଟେନ୍ ମି, ମେଜର-ରଫସିଙ୍କ ସାହେବ ଜିମାରେ ବହୁ ସଂଖ୍ୟକ ରାମଗଡ଼ ପଲ୍ଟନ ଓ ରସାଲସୱାର ଓ ତୋପ ଆଣି ଦେଲୁଥ-ଢ଼ୋରେ ମୁକାମ କରି ରହିଲେ । ସେ ସମୟରେ ସମ୍ବଲପୁରରେ ମରହଟ୍ଟା ରାଜାଙ୍କ ପକ୍ଷରୁ ଚାନ୍ଦ୍ରଅ ଫର୍ଣ୍ଣାବିସ ଶାସନ କର୍ତ୍ତା ନିଯୁକ୍ତ ହୋଇ ଥିଲେ । ଏହା ପୂର୍ବେ ଅରଗାଁଓ ଯୁଦ୍ଧରେ ଇଂରେଜମାନେ ମରହଟ୍ଟା ମାନଙ୍କ ଠାରୁ ସମ୍ବଲପୁର ଓ ତହିଁର ନିକଟବର୍ତ୍ତୀ ଗଡ଼ଜାତ ମାନ ଓ ଓଡ଼ିଶାର ସମୁଦ୍ର କୂଳର ଜିଲ୍ଲାମାନ ପାଇ ଥିଲେ । ଇଂରେଜ ସେନାପତିଙ୍କ ଛାଉଣି ଦେଖି ଓ ପୋଲିଟିକେଲ ଏଜେଣ୍ଟ ମି, କର୍ଣ୍ଣେଲ ବର୍ଟନ ସାହେବଙ୍କ ଲିଖିତ ଆଦେଶ ଦେଖି ସେନାପତି କ୍ରମେଦାନ ଇଂରେଜମାନଙ୍କୁ ସମ୍ବଲପୁର ରାଜ୍ୟ ଛାଡ଼ିଦେଇ ଅନ୍ତର ହେଲେ । ହେଲେହେଁ ଇଂରେଜମାନଙ୍କ ଅଧିକାରରେ ସମ୍ବଲପୁର ରାଜ୍ୟ ଅଧିକ ଦିନ ପର୍ଯ୍ୟନ୍ତ ରହି ପାରିଲା ନାହିଁ । ବ୍ରିଟିଶ ଶାସନକର୍ତ୍ତାଙ୍କ ଉପରେ ସମ୍ବଲପୁର ରାଜାଙ୍କର ଦୃଢ଼ ବିଶ୍ୱାସ ଥିଲେ ସୁଦ୍ଧା ମରହଟ୍ଟାମାନେ ବିଶ୍ୱାସ ଘାତକତାରେ

ସମ୍ବଲପୁର ଅଧିକାର କଲେ । ତାଙ୍କପରି ବଳବନ୍ତ ଓ ବିଧିମତେ ତବ ଭୋନ୍ସଲା ରାଜାଙ୍କ ନିକଟକୁ ପଠାଇବା ନିମନ୍ତେ ମହାରାଣୀ ଅଙ୍ଗୀକାର କରିବାରୁ ମହାରାଣୀଙ୍କୁ ସମ୍ବଲପୁର ରାଜ ଦୁର୍ଗରେ ସ୍ୱାଧୀନ କରି ଦେଇଥିଲେ । କିନ୍ତୁ କେତେଦିନ ପରେ ହଠାତ୍ ମରହଟ୍ଟା ସୈନ୍ୟମାନେ ସମ୍ବଲପୁରରେ ଅଭ୍ୟାଗତ କରି ସମ୍ବଲପୁର ଅଧିକାର କରିବାକୁ ବସିବାରୁ ମହାରାଣୀ ଅତି କଷ୍ଟରେ ଗଡ଼ରୁ ପଳାଇ ଯାଇ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ରାଜ୍ୟରେ ଆଶ୍ରୟ ନେଲେ । ମହାରାଣୀ ରାଜ କୁମାରଙ୍କ ସଙ୍ଗରେ ବନମାଳୀ ଖାନସମା, ମୂଲକ ଅଗ୍ରୁଆ, ଦୟାନିଧି ପୁରୋହିତ ଓ ମାର୍କଣ୍ଡ ବକ୍ସିଦାର ଥିଲେ । ତାଙ୍କ ପାଖରେ ପାଟଖଣ୍ଡା ଓ ମେଘାଡ଼ମ୍ବର ଛତ୍ର ଥିଲା । ସେଠାରେ କଷ୍ଟ ହେବାରୁ ମହାରାଣୀ ହଜାରିବାଗକୁ ଯାଇ କର୍ଣ୍ଣେଲ ବ୍ରେନ ସାହେବଙ୍କ ଅନୁସରଣରେ ରହିଲେ । ସାହେବ ମହୋଦୟ ସେଠାରେ ତାଙ୍କର ୬୦୦ ଟଙ୍କା ମାସିକ ବୃତ୍ତି ସ୍ଥିର କରି ଦେଲେ । ମୁକ୍ତା ଦେଈ ରାଣୀଙ୍କ ସଙ୍ଗରେ ଦେଓ୍ୟାନ ସଦାଶିବ ରାଏ ଓ ଜୟଦେବ ବେହେରା ଯାଇ କଟକରେ ରହିଲେ । ଗଭର୍ଣ୍ଣମେଣ୍ଟ ଟ ୧୨୦୦୦୯ ରେ ପାଞ୍ଚଖଣ୍ଡ ଜମୀଦାରୀ କିଣି ଦେବାରୁ ରାଣୀ ମୁକ୍ତାଦେଈ ସେଠାରେ ମହଲ ତୟାର କରାଇ ରହିଲେ ।

ଅନନ୍ତର ସମ୍ବଲପୁର ରାଜ୍ୟ ମରହଟ୍ଟାମାନଙ୍କ ହାତରେ ୯ ବର୍ଷ ପର୍ଯ୍ୟନ୍ତ ରହିଲା । ମରହଟ୍ଟାମାନେ ସମ୍ବଲପୁରରେ ରହି ବାର୨ ଟଙ୍କା ଅଂଶଲ କରି ପ୍ରଜାମାନଙ୍କୁ ହଇରାଣ କରି ପକାଇଲେ । ଲୋକଙ୍କ ଠାରୁ ଅନେକ ସମ୍ପତ୍ତି ଲୁଟି ନେଲେ । ଜଣେ ଲୋକ ଠାରେ ୬୭୨ ଗ୍ରେନ ଓଜନରେ ଖଣ୍ଡେ ହୀରା ଥିଲା । ସେ ତାକୁ ହୀରାକୁଦରୁ ପାଇଥିଲା । ତାକୁ ଟ ୧୦୦୦ଙ୍କା

ଓ ଖଣ୍ଡେ ଗ୍ରାମ ଦେବାର ଲୋଭ ଦେଖାଇ ତାହାଠାରୁ ହୀରା-ଖଣ୍ଡିକ ନେଇ ଗଲେ । ଗ୍ରାମ କିମ୍ବା ଟଙ୍କା କିଛି ନ ଦେଇ ତାଙ୍କୁ ନାନା ପ୍ରକାର ଭୟ ଦେଖାଇ ତଡ଼ି ଦେଲେ ।

ମହାରାଣୀ ଉକ୍ତ କୁମାରୀ ଦେଇ ହଜାରିବାଗରୁ ଗଙ୍ଗାସ୍ନାନ କରିବାକୁ ଗଲେ । କାଶୀରେ ତାହାଙ୍କର ଅର୍ଥ ଶେଷ ହେବାରୁ ସେ ୨୨ ମସା ଓଜନର ଖଣ୍ଡେ ହୀରା (ମୂଲ୍ୟ ସ୍ଥିର ହୋଇ ନ ପାରିବାରୁ) ଇଂରେଜ ସରକାରଙ୍କଠାରେ ଟ ୨୬୦୦୦ ରେ ବନ୍ଧକ ଦେଇ ଥିଲେ । ପରେ ଗଙ୍ଗାସ୍ନାନ ଉତ୍ତାରୁ ମହାରାଣୀ ପରଲୋକ ଗମନ କରିବାରୁ ହୀରା ଖଣ୍ଡିକ ଉଦ୍ଧାର କରି ପାରିଲେ ନାହିଁ । ୧୮୦୯ ଖ୍ରୀ: ଅ: ରେ ୪୬ ରତି ଓଜନର ଖଣ୍ଡେ ହୀରା ଇଂରେଜ ସରକାର ନେଇ ଥିଲେ । ଅଉ ୨୨୮ ରତି ଓ ୩୦୪ ରତି ଓଜନରେ ଦୁଇଖଣ୍ଡ ହୀରା ମହାରାଣୀଙ୍କ ବାସ ଭବନରେ ଗୋଟିଏ ନଡ଼ିଆ ଚାଲରେ ଥିଲା । ଅକସ୍ମାତ୍ ମହର୍ଟ୍ଟାମାନେ ଆକ୍ରମଣ କରି ରାଣୀମାନଙ୍କୁ ତଡ଼ି ଦେବା ସମୟରେ ମହାରାଣୀ ଓ ଅନ୍ୟାନ୍ୟ ରାଣୀମାନେ ଏଣେ ତେଣେ ପଳାଇ ଯିବାରୁ ହୀରା ଦୁଇ ଖଣ୍ଡି ମହାରାଣୀ ସଙ୍ଗରେ ନେଇ ପାରିଲେ ନାହିଁ । ତାହା ମରହଟ୍ଟାମାନଙ୍କ ହସ୍ତଗତ ହେଲା । ଏହାପରେ ମରହଟ୍ଟାମାନେ ସମ୍ବଲପୁରକୁ ଅନେକ ଥର ଲୁଟ କରିବାକୁ ଆସି ଥିଲେ । ସେମାନଙ୍କୁ ଗ୍ରାମରେ ପ୍ରବେଶ କରିବାର ଦେଖିଲା ମାତ୍ରେ ଲୋକମାନେ ଘରଦ୍ୱାର ଛାଡ଼ି ଇତସ୍ତତଃ ପଳାଇ ଯାଉଥିଲେ । ମରହଟ୍ଟା ମାନେ ଅନାୟାସରେ ଗଚ୍ଛିତ ସମ୍ପତ୍ତି ଅଧିକାର କରୁଥିଲେ ।

ଏହାପରେ ଅନେକ ଅତ୍ୟାଚାର କଲାପରେ ଇଂରେଜ ଓ ମରହଟ୍ଟାମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ମରହଟ୍ଟା ମାନଙ୍କ ଗର୍ବ ଚୂର୍ଣ୍ଣ ହେଲା । ମରହଟ୍ଟା ରାଜା ସମ୍ବଲପୁର ରାଜ୍ୟ

ଇଂରେଜଙ୍କ ଦେଇ ସଙ୍କଲେ । ସମ୍ବଲପୁର ରାଜ୍ୟ ଇଂରେ-
ଜଙ୍କ ଅଧିକାର ଭୁକ୍ତ ହେଲା । ପ୍ରଜାମାନେ ସୁଖରେ ରହିଲେ
ମରହଟ୍ଟା ମାନଙ୍କୁ ସମ୍ବଲପୁର ରାଜ୍ୟରୁ ଟଙ୍କ ଦିଆ ଯାଉଥିଲା ।
ଏହି ସମୟରେ ମିଃରଫ ସିଜ ନାଗପୁରରେ ରହୁଥିବା
ରେସିଡେଣ୍ଟ ସାର ରିଗୃର୍ଡ ପେଙ୍କିନଙ୍କ ସଙ୍ଗେ ପରାମର୍ଶ କରି
ସମ୍ବଲପୁର ମହାରାଜା ଜୟନ୍ତ ସିଂହ ଓ ପୁତ୍ରରାଜ ମହାରାଜ
ସାଏଙ୍କୁ ମୁକ୍ତ କରଦେଇ ପୂର୍ବପରି ସମ୍ବଲପୁରର ରାଜା
କରଦେଲେ ।

ଗଭର୍ଣ୍ଣମେଣ୍ଟ ମୁକ୍ତା ଦେଇ ରାଣୀଙ୍କ ସମୟରେ ପେଙ୍
ପାଞ୍ଚ ଗଡ଼ ଜମୀଦାରୀ କିଣି ଦେଇ ଥିଲେ ତାହାଁର ପୂର୍ବ ଜମୀ-
ଦାର ଭୁମି ମଲ୍ଲ ସଦାଶିବ ଦେଓ୍ୱାନଙ୍କ ସଙ୍ଗେ କଳହ କରି
ହାଣି ଦେବାରୁ ନୀଳାମ୍ବର ଓ ପୀତାମ୍ବର ନାମକ ଦେଓ୍ୱାନଙ୍କ
ଦୁଇପୁଅ ଓ ଭଣଜ୍ଜା ପୁରସ୍ତମ କଟକ ଯାଇ ନାଲିଶ କଲେ ।
ଫଳରେ ଭୁମିମଲ୍ଲଙ୍କୁ ଫାସି ହେଲା ।

ମହାରାଜା ଜୟନ୍ତ ସିଂହଙ୍କୁ ରାଜ ଗାଦିରେ ପୁନର୍ବାର
ବସାଇଲା ସମୟରେ ମୁକ୍ତା ଦେଇ ରାଣୀଙ୍କୁ ମଧ୍ୟ ପାଞ୍ଚ ଡେରୁ
ଅଣା ଯାଇ ଥିଲା । କିଛୁଦିନ ପରେ ମିଃ ରଫସିଜ ମଧୁବନ
ଚୋଟାରୁ ମହାନଦୀର ଦୃଶ୍ୟ ଭଲ ଦିଶୁ ଥିବାରୁ ସେଠାରେ
ତାଙ୍କର ରହିବା ପାଇଁ ଗୋଟିଏ ମହଲ ବନାଇ ଦେଲେ ।
ଏହି ମହଲଟି ଅଜ ଜାଲ୍ କଚେରି ରୂପରେ ବ୍ୟବହୃତ ହେଉଛି
ଅଛି । ମହାରାଜ ଜୟନ୍ତ ସିଂହ ବନ୍ଦ ଗୃହରୁ ମୁକ୍ତହୋଇ
ସମ୍ବଲପୁରକୁ ଅସିଥିବାର ଶୁଣି ପାଟଣା ମହାରାଜା ୨ୟ ରାମ-
ଚନ୍ଦ୍ର ଦେଓ ସମ୍ବଲପୁରକୁ ଯାଇ ସାକ୍ଷାତ କରିଥିଲେ । ମହା-
ରାଜା ଜୟନ୍ତ ସିଂହ ୧୮୧୮ ଖ୍ରୀଃ ଅଃ ରେ ପରଲୋକ ଗମନ
କଲେ ।

---

## ମହାରାଜ ସାଏ ।

## ୧୮୨୦—୧୮୨୭ଖ୍ରୀ:ଅ:

ମହାରାଜା ଜୟନ୍ତସିଂହ ପରଲୋକ ଗମନ କରିବାରୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ତାଙ୍କ ପୁତ୍ର ମହାରାଜ ସାଏଙ୍କୁ ୩୪ ଖଣ୍ଡ ଗ୍ରାମ ଦେଇ ରଖିଲେ । ଓ ବନମାଳୀ ରାଏ ଓ ଚନ୍ଦ୍ରନନ୍ଦଙ୍କୁ ଅବଶିଷ୍ଟ ଗଡ଼ଜାତର କର ଅସୁଲ କରିବାକୁ ନିଯୁକ୍ତ କଲେ ।

ଦୁଇବର୍ଷ ପରେ ମହାରାଜ ସାଏଙ୍କୁ ୧୮୨୦ ଖ୍ରୀ: ଅ: ରେ ସମ୍ବଲପୁର ରାଜଗାଦିରେ ଅଭିଷେକ କଲେ । ରାଜ ପରିଚ୍ଛଦ ଘୋଡ଼ା ଇତ୍ୟାଦି ନାମରେ ଗୋଟିଏ ବଡ଼ ହାତୀ ଶିରୋପା ଖିଲତ୍ ଦେଇ ମହାରାଜା ଉପାଧି ଦେଲେ । ଜୟଦେବ ରାଏଙ୍କୁ ଦେଓ୍ୱାନ କାର୍ଯ୍ୟରେ ନିଯୁକ୍ତ କଲେ ଓ ବନମାଳୀ ରାଏ ଖାଁ ନସମାଙ୍କୁ ଗଡଜାତର ଖାସ ତହସିଲଦାର ପଦରେ ନିଯୁକ୍ତ କରିଦେଲେ । ତତ୍ପରେ ସମ୍ବଲପୁରର ରାଜସ୍ୱ ବନ୍ଦୋବସ୍ତ କରିଦେଲେ । ରାଜସ୍ୱରୁ ଯେଉଁ ୧୮୦୦୦ ଟଙ୍କା ଅସୁଲ ହେଲା ତହିଁରୁ ମୁକ୍ତାଦେଇ ରାଣୀ ପାଞ୍ଚଗଡ଼ ବଦଳରେ ଟ ୧୦୦୦, ସର୍କାର ଟ ୮୦୦୦, ବାକୀ ଟ ୯୦୦୦ ମହାରାଜା ଭୋଗ କରିବେ । ତହିଁ ପରେ କମ୍ପାନୀର ସିପାହୀ ସରଦାର ଓ ରାଜ୍ୟରକ୍ଷକ ସୈନ୍ୟ ସମ୍ବଲପୁର ବସ୍ତି ମଧ୍ୟରେ ରଖାଗଲା । ସମ୍ବଲପୁରର ପୂର୍ବବର୍ତ୍ତୀ ମହାରାଜାମାନେ ଯେଉଁ କ୍ଷମତା ପ୍ରୟୋଗ କରୁଥିଲେ ସେ ସବୁ କ୍ଷମତା ମହାରାଜ ସାଏଙ୍କୁ ଦିଆଗଲା ନାହିଁ । ଏହାପରେ ୧୮୨୧ ଖ୍ରୀ: ଅ: ରୁ ଗଡ଼ଜାତର ରାଜାମାନଙ୍କୁ ପୃଥକ୍ ୨ ସନନ୍ଦ ଦିଆଗଲା । ମହାରାଜା ମହାରାଜ ସାଏଙ୍କ ରାଣୀଙ୍କୁ ଚନ୍ଦ୍ରପୁର, ପଦ୍ମପୁର, ଅମ୍ବାଭନା, ମେରନୁଆଁ ଓ ଭୁଡଅ ଏହି ୫ଖଣ୍ଡ ଗ୍ରାମ ସିନ୍ଦୂରଟିକା ନିମନ୍ତେ ଦିଆଯାଇ ଥିଲା । ପୋଲିସ ମହକୁମା ସ୍ଥାପନ କରିବାଇ ମାର୍କଣ୍ଡ

କନ୍ଦୁଦାରଙ୍କୁ ଅଧକ୍ଷ୍ୟ ପଦରେ ନିଯୁକ୍ତ କରଯାଇଥିଲା । ସ୍ପୀର ଖଣ୍ଡିର ଅସ୍ତ୍ର ଓ ଅଦାଲତର ଅସ୍ତ୍ର ସମ୍ବନ୍ଧେ ମହାରଜାଙ୍କ ଅଧି-କାର ଧଅଗଲା । ମିଃ ବଫସିଙ୍କ ସାହେବ ଏଥର ବନ୍ଦୋବସ୍ତ କର ପୋଲିଟିକେଲ୍ ଏଜେଣ୍ଟ ହୋଇ ସମ୍ବଲପୁରରେ ରହିଲେ । ମହାରାଣୀ ରତ୍ନକୁମାରୀ ଦେବୀ ତୀର୍ଥ କ୍ଷେତ୍ରରେ ମୃତ ହେବା ସମୟରେ ରଜଗୀ ପାଟଖଣ୍ଡା ଓ ମେଘାଡ଼ମ୍ବର ଛତ୍ର ବନମାଳୀ ରଏ ଅଣି ନିଜ ଅଧିକାରରେ ରଖିଥିବାରୁ ତାହା ତାଙ୍କଠାରୁ ନିଅଯାଇ ମହାରଜ ଅପଣା ରଜକାର୍ଯ୍ୟରେ ଲଗାଇଲେ ।

ମହାରଜାଙ୍କର କେବଳ ୨ଟି ମାତ୍ର କନ୍ୟା ଥିଲେ । ରଜା ଅପୁତ୍ରକ ଥିବାରୁ ଈଶ୍ୱର ସେବାରେ ରତ ଥିଲେ । ତାହାଙ୍କ ସମୟରେ ରାଜ୍ୟରେ ଯେତେ୨ କାର୍ଯ୍ୟ ହୋଇଥିଲା ତାହା ନିମ୍ନରେ ଲେଖାଗଲା । ମହାରଜା ଛତ୍ର ସିଂହଙ୍କ ସମୟରେ ବାଲୁଙ୍କେଶ୍ୱର ଶିବାଳୟ ରଜ୍ ସାହାଣୀ ତୟାର କରଇଥିଲେ । ତତ୍ ସଂଲଗ୍ନ ଦୁର୍ଗାଦେବୀ ମନ୍ଦିର ଦର୍ବେମିଶ୍ରଙ୍କର ଦ୍ୱାରା ନିର୍ମିତ ହୋଇଥିଲା । ସଦାଶିବ ରଏ ଦେଓ୍ୟାନ ଘାଟପାଡର ଓ ଜୟଦେବହୁଦାର ଭୁବନେ-ଶ୍ୱର ଶିବାଳୟ ନିର୍ମାଣ କରଇଥିଲେ । ଦଧିବାବନ, ନୃଅ-ଭୁତି, ଲକ୍ଷ୍ମୀନାରୟଣ ଦେଉଳ, କଙ୍କଣଳାଇ ଦେବୀ ମନ୍ଦିର ରାଣୀ ମୋହନକୁମାରୀ ଦେବୀଙ୍କ କାର୍ଯ୍ୟ ଅଟେ ।

ଏହି ମହାରଜାଙ୍କ ଶାସନ ସମୟରେ ଦେଶରେ ଅନେକ ଦୁର୍ନୀତିମାନ ସାଧିତ ହେଉଥିଲା । ଅର୍ଥାତ୍ ସତୀଦାହ, ଜାରଜ ସନ୍ତାନ ମାନଙ୍କୁ କୁଳଟା ରମଣୀମାନେ ଗଙ୍ଗା ସାଗରରେ ଜଳ ମଗ୍ନକର ଦେଉଥିଲେ । କ୍ଷତ୍ରୀୟମାନେ ଜାମାତାଙ୍କୁ ଅନେକ ଟଙ୍କାର ଯୌତୁକ ଦେବାକୁ ପଡୁଥିବାରୁ ତହିଁରୁ ରକ୍ଷା ପାଇ-ବାକୁ ଶିଶୁକନ୍ୟାମାନଙ୍କୁ ବିନାଶ କରଦେଉଥିଲେ ଇତ୍ୟାଦି

ଅନେକ ପ୍ରକାରର ନରହତ୍ୟା ଇଂରେଜ ସରକାର ବନ୍ଦ କରିଦେଲେ ।

ଥରେ ଅନ୍ତଃପୁରର ଜଣେ ପରିଚାରି ବ୍ୟଭିଚାରିଣୀ ଦୋଷରେ ଲିପ୍ତା ହେବାରୁ ମହାରାଜା ତାଙ୍କ ମସ୍ତକ ଛେଦିବାରୁ ସାହେବ ମହାରାଜାଙ୍କୁ ନେଇ ହାଜତରେ ରଖିଥିଲେ । ମହାରାଜାଙ୍କ ନନ୍ଦିନୀ ସ୍ୱୟଂ ଯାଇ ସାହେବଙ୍କୁ ମହାରାଜାଙ୍କ ମୁକ୍ତି ସମ୍ବନ୍ଧରେ ଅନୁରୋଧ କରିବାରୁ ସାହେବ ସେମାନଙ୍କ କଥା ରକ୍ଷାକରି ମହାରାଜାଙ୍କୁ ମୁକ୍ତ କରିଦେଇ ଭବିଷ୍ୟତରେ ସେପରି ନ କରିବାକୁ କହି ବିଦାୟ କରିଦେଲେ ।

ଏହାପରେ ମହାରାଜ ସାଏ ରାଜ୍ୟ ଶାସନକରି ୧୮୨୭ ଖ୍ରୀଃ ଅଃରେ ପରଲୋକ ଗମନ କଲେ ।



## ମହାରାଣୀ ମୋହନକୁମାରୀ ଦେବୀ ।

### ୧୮୨୭—୧୮୩୪ ଖ୍ରୀଃଅଃ

ମହାରାଜା ମହାରାଜ ସାଏଙ୍କ ମୃତ୍ୟୁପରେ ତାହାଙ୍କର ତ୍ୟକ୍ତ ରାଜଗାଦିରେ ଅଧିଷ୍ଠାନ କରିବାକୁ ତାହାଙ୍କର ପୁତ୍ର ନଥିବାରୁ ବିଧବା ମହାରାଣୀ ମୋହନକୁମାରୀ ଦେବୀ ରାଜ୍ୟର ଅଧିଶ୍ୱରୀ ହୋଇ ଶାସନ କଲେ । ଏଣୁକରି ରାଜଗାଦିର ଅନ୍ୟାନ୍ୟ ଦାବିଦାର ମାନଙ୍କ ମଧ୍ୟରେ ଧୀରେ୨ ଗୋଳମାଳ ଆରମ୍ଭ ହେଲା । ଦାବିଦାର ମାନଙ୍କ ମଧ୍ୟରେ ସୁରେନ୍ଦ୍ର ସାଏ ( ସୁନ୍ଦର ସାଏ) ପ୍ରଧାନ ଥିଲେ । ସେ ସମ୍ବଲପୁରର ଚତୁର୍ଥ ରାଜା ମଧୁକର ସାଏଙ୍କ ବଂଶଧର ଥିବାରୁ ରାଜଗାଦି ନିମନ୍ତେ ବିଶେଷ ଦାବି କରିଥିଲେ । ରାଣୀଙ୍କର ରାଜତ୍ୱ ସମୟରେ ତାହାଙ୍କର

ଯେଉଁ ହଦ୍ କର୍ଣ୍ଣଗୃସ୍ତ ଓ ଅନୁଗ୍ରହମାନେ ଥିଲେ ସେମାନେ କେତେକ ଖଣ୍ଡ ଓ କିଂଖାଲ୍ ଜମିଦାରମାନଙ୍କୁ ଭୟ ଦେଖାଇ ସେମାନଙ୍କର ସ୍ୱତ୍ୱ ଓ ଭୂମିରୁ ସେମାନଙ୍କୁ ଅନ୍ତର କରିବାକୁ ବସିବାରୁ ସେମାନେ ମହାରାଣୀଙ୍କ ଉପରେ ଅତିଶୟ ଅସନ୍ତୁଷ୍ଟ ହୋଇଥିଲେ । ଏଣେ ସୁରେନ୍ଦ୍ର ସାଏ ଏହି ସମସ୍ତ ଅନ୍ୟାୟର ବିପକ୍ଷପାତି ଥିବାରୁ ସମସ୍ତେ ଏହାଙ୍କ ପକ୍ଷ ଗ୍ରହଣ କରିଥିଲେ । ସେମାନେ ସମସ୍ତେ ଏକଜ ହୋଇ ସମ୍ବଲପୁରରୁ କେତେ ମାଇଲ ଅନ୍ତରରେ ଥିବା ଗ୍ରାମମାନଙ୍କରେ ଲୁଟପାଟ ଆରମ୍ଭ କଲେ । ଏହା ଦେଖି କଲନେଲ ଫୁକନ୍ ରାମଗଡ଼ ସୈନ୍ୟ ଧରି ବିଦ୍ରୋହିମାନଙ୍କୁ ତଡ଼ି ଦେଇଥିଲେ । କିନ୍ତୁ ଧୀରେ ୨ ବିଦ୍ରୋହ ଅଗ୍ନି ଜଳି ଉଠିଲା । ତାହା ଦମନ କରିବାକୁ ହଜାରିବାଗର ସୈନ୍ୟର କମେଣ୍ଡର କେପଟେନ୍ ଉଇଲ୍ କିନ୍‌ସନ ସୈନ୍ୟସହ ଆସି ଅନେକ ବିଦ୍ରୋହିମାନଙ୍କୁ ଧରି ଗୋଟି ୨ କରି ଫାସି ଦେଲେ ଓ କହିଲେ ଯେ-ପର୍ଯ୍ୟନ୍ତ ରାଣୀଙ୍କୁ ଅନ୍ତର କରା ନ ଯିବ ସେ ପର୍ଯ୍ୟନ୍ତ ବିଦ୍ରୋହ କୌଣସି ମତେ ବନ୍ଦ କରାଯାଇ ନ ପାରେ । ଏହି କାରଣରୁ ମହାରାଣୀଙ୍କୁ ୧୮୩୩ ଖ୍ରୀ: ଅ: ରେ ରାଜ୍ୟଶାସନ କ୍ଷମତାରୁ ଅନ୍ତର କରି ଦେଇ ନାରାୟଣ ସିଂହଙ୍କୁ ରାଜା କରିବାର ପ୍ରସ୍ତାବ କଲେ । ନାରାୟଣ ସିଂହ ପୂର୍ବ ମହାରାଜା ବଳିଆର ସିଂହଙ୍କର ଜ୍ୟେଷ୍ଠ ପୁତ୍ର ବିକ୍ରମ ସିଂହଙ୍କର ରଖିତା ସ୍ତ୍ରୀର ପୁତ୍ର ଥିବାରୁ ସେ ବାବୁ ଶ୍ରେଣୀରେ ଗଣ୍ୟ ଅଟନ୍ତି । ଇତିପୂର୍ବେ ନାରାୟଣ ସିଂହ ବାବୁ ମହାରାଣୀଙ୍କର ଗହଣରେ ଥାଇ ତାଙ୍କର ସେବକ ତୁଲ୍ୟ କାର୍ଯ୍ୟ କରୁଥିଲେ । ତାଙ୍କୁ ଯେତେବେଳେ ରାଜା କରାଯିବାର ପ୍ରସ୍ତାବ ହେଲା ସେ ଅବାକ୍ ହୋଇ ପୋଲିଟିକେଲ ଏଜେଣ୍ଟଙ୍କଠାରେ ଆପତ୍ତି କଲେ

"ଅନୁଗ୍ରହପୂର୍ବକ ଆପଣ ମତେ ଏପରି ବିପଦ୍‌ଜନକ ଅବସ୍ଥାରେ ପକାଇ ଦିଅନ୍ତୁ ନାହିଁ । ମୁଁ ଏହି ମହାଜ୍ୟାଧି ନିମନ୍ତେ ଲାଳାୟିତ ନୁହେଁ ।" ଏହି ଅନୁରୋଧର ଫଳ କିଛି ହେଲା ନାହିଁ । ଶ୍ରୀମାନ୍ ଏଜେଣ୍ଟ ଟୁ ଗଭର୍ଣ୍ଣର ଜେନେରେଲ୍ ସାହେବ ମହାରାଣୀ ମୋହନକୁମାରୀଙ୍କୁ ନେଇ କଟକରେ ପେନ୍‌ସନ୍ ଦେଇ ରଖିଲେ । ସରକାରୀ ସୈନ୍ୟଙ୍କୁ ହଜାରି-ବାଗକୁ ଫେରାଇ ଦେଇ ନାରାୟଣ ସିଂହଙ୍କୁ ସମ୍ବଲପୁର ରାଜଗାଦିରେ ରାଜା କରାଇ ଦେଲେ ।

———❋———

## ନାରାୟଣ ସିଂହ ।

### ୧୮୩୪-୧୮୪୯ ଖ୍ରୀ: ଅ:

ନାରାୟଣ ସିଂହ ସମ୍ବଲପୁର ମହାରାଜା ରୂପେ ପ୍ରତିଷ୍ଠିତ ହୋଇ ଯେତେ ଦୂର ପାରିଲେ ରାଜ୍ୟର ପ୍ରତ୍ୟେକ ବିଷୟରେ ସୁବନ୍ଦୋବସ୍ତ କରି ରାଜକାର୍ଯ୍ୟ ଚଳାଇବାକୁ ଲାଗିଲେ । କିନ୍ତୁ ସମ୍ବଲପୁର ରାଜ୍ୟର ଗୃହବିବାଦରେ ହଠାତ୍ ବିଦ୍ରୋହ ବହ୍ନି ପ୍ରଚଣ୍ଡଭାବରେ ପ୍ରଜ୍ୱଳିତ ହୋଇ ଉଠିଲା । ଲକ୍ଷଣପୁର ଜମିଦାର ବଳଭଦ୍ର ଦାଓଙ୍କର ଅଧିନାୟକତ୍ୱରେ ଗଣ୍ଡମାନେ ଉଠିଲେ ଓ ବାରପାହାଡ଼ ପର୍ବତ ଉପରେ ଅଶ୍ରୟ ନେଇ ଲୁଟପାଟ ଆରମ୍ଭ କଲେ । ବାର ପାହାଡ଼ ପର୍ବତ ଅତି ପ୍ରକାଣ୍ଡ ପର୍ବତ ଅଟେ । ବିଦ୍ରୋହୀମାନେ ସେହି ପର୍ବତରେ ଅଶ୍ରୟ ନେଇ ରହିବାରୁ ତାଙ୍କୁ ଦମନ କରିବାକୁ ଇଂରେଜ ସରକାରଙ୍କୁ ଅନେକ ସମୟ ଲାଗିଥିଲା । ବିଦ୍ରୋହୀମାନେ ବାର ପାହାଡ଼ର ଉଚ୍ଚତମ ଶୃଙ୍ଗରେ ଗୋଟିଏ ଗଡ ନିର୍ମାଣ କରି ତାହାର ନାମ 'ଡେବ୍ରିଗଡ' ଦେଇଥିଲେ । ବହୁକଷ୍ଟରେ ଇଂରେଜ ସୈନ୍ୟ ଏହି ଗଡ ଅଧିକାର କରି ବଳଭଦ୍ର

ତାଙ୍କୁ ମାର ଦେଇଥିଲେ । ଏହାଦ୍ୱାରା ବିଦ୍ରୋହ ଭୀଷଣତର ହେଲା । ଏହି ବିଦ୍ରୋହ ସୁରେନ୍ଦ୍ର ସାଏଙ୍କ ଦ୍ୱାରା ୧୮୩୯ ଖ୍ରୀ: ଅ: ରେ ଆରମ୍ଭ ହେଲା । କାରଣ ସମ୍ବଲପୁରରେ ତାଙ୍କୁ ରାଜା ନ କରାଇ ନାରାୟଣ ସିଂହଙ୍କୁ ରାଜା କରାଇବା ପାଇଁ ତାହାଙ୍କର ଦାବି ଇଂରେଜସରକାର ଉଠାଇ ଦେଇଥିଲେ । ରାମପୁର ଜମିଦାରଙ୍କ ସଙ୍ଗରେ ପୂର୍ବରୁ ମନାନ୍ତର ଥିବାରୁ ସୁରେନ୍ଦ୍ର ସାଏ କିଛୁ ସୈନ୍ୟ ସଂଗ୍ରହ କରି ରାମପୁର ଜମି-ଦାରଙ୍କର ସଙ୍ଗରେ ଲଢ଼ାଇ କଲେ । ଯୁଦ୍ଧରେ ରାମପୁର ଜମିଦାର ଦରିହାଓ ସିଂହଙ୍କୁ ପ୍ରାଣରେ ନ ମାରି ବନ୍ଦୀ କଲେ । ସୁରେନ୍ଦ୍ର ସାଏ ଉଦନ୍ତ ସାଏ ( ଉଜ୍ଜ୍ୱଳ ସାଏ ) ଓ ତାଙ୍କର କକା ବଳରାମ ସିଂହ ବନ୍ଦୀ ହୋଇ ପଡି ରହିଥିବା ଦରିହାଓ ସିଂହଙ୍କ ଆଗରେ ତାହାଙ୍କର ପିତାଙ୍କୁ ଓ ବାଳକ-ମାନଙ୍କୁ ଗୋଟି୨ କରି ହାଣି ତାହାଙ୍କର ଗର୍ଭବତୀ ସ୍ତ୍ରୀର ପେଟଚିରି ଗର୍ଭସ୍ଥ ଶିଶୁକୁ ବାହାର କରି ଦେଲେ । ଏହି ଭୀଷଣ ଅପରାଧର ଫଳରେ ଇଂରେଜ ସରକାର ଏମାନଙ୍କୁ ଧରି ନେଇ ହଜାରିବାଗ ଜେଲରେ ଯାବଜ୍ଜୀବନ ବନ୍ଦ କଲେ ।

ମହାରାଜ ନାରାୟଣ ସିଂହଙ୍କର ଗୋଟିଏ ମାତ୍ର ରାଣୀ ଥିଲେ । ନାମ ମୁଖ୍ୟପାନ ଦେବୀ । ତାହାଙ୍କ ଗର୍ଭରୁ ଦୁଇଟି ମାତ୍ର କନ୍ୟା ଜନ୍ମଗ୍ରହଣ କରିଥିଲେ । ପୁତ୍ରାଦି ନ ଥିବାରୁ ମହାରାଜା ଚିନ୍ତିତ ଥିଲେ ।

ମହାରାଜା ଥରେ ବେମାର ହେବାରୁ ଖଡକୁହା ଲୋକଙ୍କର କଥା ଅନୁସାରେ ସେ ବାମଦେବ ମିଶ୍ର ଶ୍ୟାମ-ସୁନ୍ଦର ତହାଡ଼ୀ ରାମଚନ୍ଦ୍ର ବଇଦ ପ୍ରଭୃତଙ୍କୁ ବେଙ୍ଗ ଦେଇ ଭିନ୍ନ୨ ସ୍ଥାନରେ ରଖି ଥିଲେ । ଓ୍ୟାସଲ୍ ସାହେବ ତାହା ଶୁଣି ସେମାନଙ୍କୁ ରାଞ୍ଚିକୁ ଡକାଇ ନେଇ ମିଥ୍ୟା ଅଭିଯୋଗ

ଜାଣି ସେମାନଙ୍କୁ ମୁକ୍ତ କରି ଦେଲେ । ଏହାପରେ କାର୍ଯ୍ୟର ବିଶୃଙ୍ଖଳା ହେବାର ଦେଖି ପଲଟନ ବିଭାଗର ଲେଫଟେନେଣ୍ଟ ସାହେବ ସମ୍ବଲ ପୁରକୁ ଆସି ରହିଲେ । ସେ ୪ ମାସ ମାତ୍ର ରହି କକ୍ସ ସୌଲବୀଙ୍କୁ ନିଜ କାର୍ଯ୍ୟର ଭାର ଦେଇ ବାହାରି ଗଲେ ।

ଅନନ୍ତର ୧୮୪୩ ଖ୍ରୀ: ଅ:ରେ ସମ୍ବଲପୁରରେ ପୁନର୍ବାର ବିଦ୍ରୋହର ଆଶଂକା ଜାତ ହୋଇଥିଲା । କାରଣ ଲୋକେ ସନ୍ଦେହ କଲେ ଯେ ମହାରାଜାଙ୍କୁ ହରେକୃଷ୍ଣ ପଟ୍ଟନାଏକ ତହସିଲ୍ ଦାର ଅନେକ ମନ୍ଦ ବୁଦ୍ଧି ଶିକ୍ଷା ଦେଉ ଅଛନ୍ତି । ଏହି ହେତୁରୁ ଇଂରେଜ ସରକାର ପଟନାଏକଙ୍କୁ ଅନ୍ତର କରି ଉଲଥ ବାବୁଙ୍କୁ ଉକ୍ତ କାର୍ଯ୍ୟରେ ନିଯୁକ୍ତ କରି ମହାରାଜାଙ୍କ କଚେରିରେ ସର୍ବଦା ରହିବାକୁ ରୁପ ସିଂହଙ୍କୁ ନିଯୁକ୍ତ କଲେ । ଓ ରାଜ୍ୟର ପାବତୀୟ ଜବାବଦାରରେ ରହିବାକୁ ଲେଫ୍‌ଟେନେଣ୍ଟ ଏଣ୍ଡ୍ରୁ ହଣ୍ଡ ସାହେବଙ୍କୁ ଏସିସଟେଣ୍ଟ କର୍ମରେ ପଠାଇ ଦେଲେ । ୧୮୪୯ ଖ୍ରୀ: ଅ: ରେ ଅନୁଗୁଲ୍ ରାଜା ଇଂରେଜ ସରକାରଙ୍କୁ ଅବଜ୍ଞା କରି ନିଜେ ସ୍ୱାଧୀନ ହେବାକୁ ଚେଷ୍ଟା କରିବାରୁ କଟକରୁ ଜଣେ କଲ୍‌ନେଲ୍ ସାହେବ ଓ ରାଞ୍ଚିରୁ କଲ୍‌ନେଲ ଓ୍ୟାସଲ୍ ସୈନ୍ୟ ନେଇ ଯୁଦ୍ଧ ଆରମ୍ଭ କଲେ । ଓ୍ୟାସଲ୍ ସାହେବ ଗଲା ସମୟରେ ବାମଣ୍ଡା ରାଜା ଓ ସମ୍ବଲପୁର ରାଜାଙ୍କୁ ସଙ୍ଗରେ ନେଇଥିଲେ । ଅନୁଗୁଳ ରାଜା ଯୁଦ୍ଧରେ ପରାସ୍ତ ହୋଇ ପଳାୟନ କରିବାରୁ ବାମଣ୍ଡା ରାଜା ଓ ରୁପ ସିଂହ ବାବୁ ଅନୁଗୁଳ ରାଜାଙ୍କୁ ଧରାଇ ଦେଇ ଥିଲେ । ତେଣୁ ଅନୁଗୁଳ ରାଜାଙ୍କୁ ହଜାରି ବାଗକୁ ଧରି ନେଇ ବନ୍ଦ କଲେ । କିଛି ଦିନ ପରେ ବନ୍ଦଗୃହରେ ତାହାଙ୍କର ମୃତ୍ୟୁ ହେଲା ।

ଅନୁଗୁଳ ରାଜାଙ୍କୁ ଧରିବା କାର୍ଯ୍ୟରେ ବାମଣ୍ଡା ରାଜା ତ୍ରିଭୁବନ ଦେବ ସାହାଯ୍ୟ କରି ଥିବାରୁ ତାଙ୍କୁ, ଦୋଶାଲା ଖିଲତ ଓ ରାଜା ବାହାଦୁର ଉପାଧି ଦେଇଥିଲେ । ସମ୍ବଲପୁର ରାଜାଙ୍କୁ ମଧ୍ୟ ସେପରି ତୋପ, ଦୋଶାଲା ଖିଲତ ଓ ମହାରାଜା ବାହାଦୁର ଉପାଧି ଦେଇଥିଲେ ।

ସାହେବ ସମ୍ବଲପୁର ମହାରାଜାଙ୍କୁ କହିଲେ ରାଜ କୁମାରୀ ଅଣମତି ଦେବୀଙ୍କ ସହିତ ସୁରଗୁଜା ଯୁବରାଜଙ୍କ ବିବାହ କରାଯାଉ । ଯଦି କୌଣସି ପୁତ୍ର ଜନ୍ମ ହୁଏ ତେବେ ତାକୁ ଆପଣ ପୋଷ୍ୟପୁତ୍ର କରି ସମ୍ବଲପୁର ସିଂହାସନ ଅର୍ପଣ କରିବେ । ଏହା ଶୁଣି ମହାରାଜା ଉତ୍ତର ଦେଲେ "ସମ୍ବଲପୁର ରାଜ ସିଂହାସନ ଗୈହାନ ବଂଶର ଅଟେ ଅତଏବ ଗୈହାନ ମାନେ ତାହା କଦାପି କରି ଦେବେ ନାହିଁ । ସେମାନେ ନାନା ପ୍ରକାର କଳହ କରିବେ । ବରଂ ଅମର ଅନ୍ତେ ଏହା ଇଂରେଜ ସରକାରଙ୍କର ଅଧିକାର ଭୁକ୍ତ କରାଗଲେ ଭଲ ହେବ ।" ଏହା ଶୁଣି ସାହେବ କନ୍‌ଫିଡେନ୍‌ସିଏଲ୍ ଚିଠି ଦ୍ୱାରା ଗଭର୍ଣ୍ଣମେଣ୍ଟଙ୍କର ଗୋଚର କରାଇଲେ ।

ମହାରାଜା ନାରାୟଣ ସିଂହ ସମ୍ବଲେଶ୍ୱରୀ ମନ୍ଦିରର ସମ୍ମୁଖରେ ମୁଖଶାଳୀ ଅଉ ବ୍ରହ୍ମପୁରା ମନ୍ଦିରର ମୁଖଶାଳୀ ନିର୍ମାଣ କରାଇ ଥିଲେ । ମହାରାଣୀ ମୁଖ୍ୟଯାନ ଦେବୀ ମଦନମୋହନ ମନ୍ଦିର ଉଦ୍ଧାର କରାଇଥିଲେ । ମହାରାଜା ନାରାୟଣ-ସିଂହ ୧୮୪୯ ଖ୍ରୀ: ଅ: ରେ ପରଲୋକ ଗମନ କଲେ ।

---

## ତୃତୀୟ ପରିଚ୍ଛେଦ ।

## ଇଷ୍ଟ ଇଣ୍ଡିଆ କୋମ୍ପାନୀ ବା ବ୍ରିଟିଶ ଗଭର୍ଣ୍ଣମେଣ୍ଟ ।

### ୧୮୪୯ ଖ୍ରୀ: ଅ: ରୁ—

ମହାରାଜା ନାରାୟଣ ସିଂହ ଅପୁତ୍ରିକ ଅବସ୍ଥାରେ

ପରଲୋକ ଗମନ କରିବାରୁ ବ୍ରିଟିଶଗଭର୍ଣ୍ଣମେଣ୍ଟ ମହାରାଜାଙ୍କ ପୂର୍ବକଥା ଅନୁସାରେ ରାଣୀ ମୃଣ୍ମୟପାନ ଦେବୀଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ ନକରି ସମ୍ବଲପୁର ରାଜ୍ୟ ବ୍ରିଟିଶ ଶାସନାଧୀନ କଲେ । ଓ ମହାରାଣୀଙ୍କୁ ମାସିକ ଟ ୧୦୦ ୯ ବୃତ୍ତି ଦେଇ କଟକରେ ରଖିଲେ ।

ଅନନ୍ତର ଏଜେଣ୍ଟ ମି: କଫୋର୍ଡ ଡିସେମ୍ବର ମାସରେ ଡ଼ାକ୍ତର ମେକେନ ହେଡ଼ଙ୍କୁ ସଙ୍ଗରେ ଅଣି ସମ୍ବଲପୁରକୁ ଅସିଲେ । ଓ ତାଙ୍କୁ ସମ୍ବଲପୁର ଜିଲ୍ଲାର ପ୍ରେନ୍ସିପଲ ଏସିଷ୍ଟେଣ୍ଟ ପଦରେ ନିଯୁକ୍ତ କଲେ । ଏବ ରାଏ ରୂପସିଂହ ବାହାଦୁର ସହକାରୀ ପଦରେ ନିଯୁକ୍ତ ହେଲେ । ଏହାପରି ଶାସନ ସମ୍ପର୍କୀୟ ସମସ୍ତ ବିଷୟରେ ସୁବନ୍ଦୋବସ୍ତ କଲେ ।

ଏହି ସମୟରେ ଭାରତବ୍ୟାପୀ ସିପାହୀବିଦ୍ରୋହ ଅରମ୍ଭ ହେଲା । ସମ୍ବଲପୁର ରକ୍ଷା ନିମନ୍ତେ ରାମଗଡ଼ରେ କେବଳ ୧୫୦ ପଦାତି ଓ ୧୨ ଜଣ ଅଶ୍ବାରୋହୀ ସୈନ୍ୟ ଥିଲେ । ହଜାରିବାଗ ଓ ଦିନାଜପୁରର ସୈନ୍ୟମାନେ ବିଦ୍ରୋହ ଅରମ୍ଭ କରିବାର ଶୁଣି ଏମାନେ ମଧ୍ୟ ବିଦ୍ରୋହ କରି ଥିଲେ । ସମସ୍ତ ସିପାହୀ ଏକତ୍ର ହୋଇ ସ୍ଥାନେ୨ ଇଂରେଜ ଟ୍ରେଜରି ଭାଙ୍ଗି ଟଙ୍କା ପଇସା ନେଇ ଯାଇ ଜେଲଖାନା ମାନ ଭାଙ୍ଗି ଦେଇ ବନ୍ଦି-ମାନଙ୍କୁ ମୁକ୍ତ କରି ଦେଲେ । ଏହାପରି ହଜାରିବାଗ ଜେଲରୁ ସୁରେନ୍ଦ୍ର ସାଏ ଓ ଉଦନ୍ତ ସାଏ ମୁକ୍ତି ପାଇ ଏ ଜିଲ୍ଲାରେ ପ୍ରବେଶ କରି ହଠାତ୍ ଦଳ ଗଠନ କରି ବିଦ୍ରୋହ ଆରମ୍ଭ କରିଥିଲେ । ସେମାନେ ୧୬୦୦୦ ଲୋକ ଧରି ସମ୍ବଲପୁରକୁ ଅସି ପୁରୁଣା ଗଡରେ ରହିଲେ । ସେ ସମୟରେ ସମ୍ବଲପୁରରେ କେପଟେନ୍ ଲିକ୍ ସାହେବ ସିନିଅର ଏସିସଟେଣ୍ଟ କମିସନର ସମ୍ବଲପୁରର ଗୃହପତିରେ ଥିଲେ । ସୁରେନ୍ଦ୍ର ସାଏ ଜେଲର ଅବଶିଷ୍ଟ କାଳ

କର୍ତ୍ତନ କରି ଯିବାକୁ ଅନୁରୋଧ କଲେ । ଉଦନ୍ତ ସାଏ ଖିଣ୍ଡା ଗ୍ରାମରେ ବାସ କରିବାକୁ ଅନୁମତି ପାଇଲେ ।

ଅଳ୍ପଦିନ ପରେ ସୁରେନ୍ଦ୍ର ସାଏ ପଳାଇ ଆସି ଉଦ୍ୟନ୍ତ ସାଏଙ୍କ ସଙ୍ଗରେ ମିଶି ୧୪୦୦ ଲୋକ ସଂଗ୍ରହ କରି ଦଳ ଗଠନ କରି ବିଦ୍ରୋହ ଆରମ୍ଭ କଲେ । ଏଣୁ କରି କଟକରୁ ୪୦ ନମ୍ବର ମେଡ୍ରାସ ଇନ୍‌ଫେନଟ୍ରି ଦୁଇଦଳ ସୈନ୍ୟ କେପଟେନ୍ ନକର ସାହେବଙ୍କ ଅଧିନାୟକତ୍ୱରେ ଆସିଲେ ଅଳ୍ପ ସମୟ ପରେ ଲେଫଟେନେଣ୍ଟ ହୋଡ଼ ସାହେବଙ୍କ ଅଧୀନରେ ଅହୁର ଅନେକ ଗୋଲନ୍ଦାଜ ସୈନ୍ୟ ଆସି ନକର ସାହେବଙ୍କ ସହ ମିଳିତ ହୋଇ ଖିଣ୍ଡା ଓ କୁଲବିଗ୍ରା ଗ୍ରାମ ଆକ୍ରମଣ କଲେ । ଗୌନ୍ତ୍ୟା ଘରମାନଙ୍କୁ ନଷ୍ଟ କରି ଦେଲେ । ସେଠାରେ ସେମାନେ ସୁନ୍ଦର ସାଏ ଓ ଉଦ୍ୟନ୍ତ ସାଏଙ୍କୁ ଧରି ପାରିଲେ ନାହିଁ । ସେମାନେ ଲୁଚି ବାହାର ପାଇ ଝାଡ଼-ଘାଟିରେ ଅସ୍ତ୍ର ଶସ୍ତ୍ର ଓ ବହୁତ ଲୋକ ସଂଗ୍ରହ କରି ଜଙ୍ଗଲ ମଧ୍ୟରେ ଲୁଚି୨ ଦଳ୨ ହୋଇ ରହି ଥିଲେ । ସୁନ୍ଦର ସାଏ ଓ ଉଦନ୍ତ ସାଏଙ୍କ ଉତ୍ତେଜନାରେ ପଡି କିଏବା ଏହାଙ୍କ ଭୟ କରି ଅଧିକାଂଶ ଜମିଦାର ସୁନ୍ଦର ସାଏ ଓ ଉଦନ୍ତ ସାଏଙ୍କର ପକ୍ଷ ନେଇ ଲୋକ ସଂଗ୍ରହ କରି ଗଭର୍ଣ୍ଣମେଣ୍ଟଙ୍କ ବିରୁଦ୍ଧରେ ଖଡ୍ଗ ଧାରଣ କଲେ । ରାତ୍ରରେ ଏମାନେ ବ୍ରିଟିଶ ଶିବିରମାନଙ୍କୁ ଯାଇ ପ୍ରହରିମାନଙ୍କୁ ଗୁଳିକରି ମାରି ପକାଉ ଥିଲେ ଓ ଗହୁଟିମାନଙ୍କୁ ପୋଡ଼ାଇ ପକାଉ ଥିଲେ । ମାନ୍ଦ୍ରାଜି ସୈନ୍ୟର ଡାକ୍ତର ମୁର ପେଙ୍କି ମି, ହେନ୍‌ସନ୍ ସାହେବଙ୍କ ସଙ୍ଗରେ ସମ୍ବଲପୁରକୁ ଆସିଥିଲେ ସେ ଯାଉଥିବା ସମୟରେ ବିଦ୍ରୋହି ଦଳ ଦ୍ୱାରା ମାରି ପଡିଲେ । ତାହାଙ୍କର ସଙ୍ଗୀ ଅରକ୍ଷୀଙ୍କୁ ପଳାଇପାଇ ଅନାହାରରେ ବୁଲି ଥିଲେ ।

କେପ୍‌ଟେନ୍ ଲିଜ ସାହେବ ଅନେକ ଲୋକ ତାଙ୍କ ପିଛରେ ଯୋଗାଇ ପଠାଇ ତାଙ୍କୁ ଆଣିଲେ । କିନ୍ତୁ ଲୋକଙ୍କ ଉପରେ ବିଦ୍ରୋହିମାନେ ଭୀଷଣ ଅତ୍ୟାଚାର କରିବାରୁ ସାହେବ ମାନ୍ଦ୍ରାଜି ସୈନ୍ୟ ନେଇ ସେମାନଙ୍କୁ ଆକ୍ରମଣ କରିବାକୁ ଯାଇ ଥିଲେ । ବିଦ୍ରୋହୀ ଦଳ ବଣ ମଧ୍ୟରେ ଲୁଚି ଓ ପର୍ବତ ଉପରୁ ପଥର ଖସାଇ ଅନେକ ମାନ୍ଦ୍ରାଜି ସୈନ୍ୟଙ୍କୁ ମାରି ପକାଇଲେ । ଏଣେ ବମ୍ବାଇ ଯିବା ସଡ଼କସ୍ଥ ଡାକ ଘରମାନ ପୋଡ଼ାଇ ଦେଇ ବିଦ୍ରୋହୀ ଦଳ ନାନା ପ୍ରକାର ଅତ୍ୟାଚାର ଆରମ୍ଭ କଲେ । ଓଡିଶାର କମିସ୍ନର ମି: କକ୍‌ବର୍ଣ୍ଣ ମେଡ୍ରାସ ଇନ୍‌ଫେନ୍‌ଟ୍ରି ସୈନ୍ୟର ଅବଶିଷ୍ଟ ସିପାହୀମାନଙ୍କୁ ମେଜର ବେଟସ୍ ସାହେବଙ୍କ ଜିମାରେ ପଠାଇ ଦେଲେ । ତେଣେ ଲେଫଟେନେଣ୍ଟ ଗଭର୍ଣ୍ଣର ୪୦ ନମ୍ବର ମେଡ୍ରାସ ନେଟିଭ୍‌ଇନ୍‌ଫେନଟ୍ରି ସୈନ୍ୟର କେଫଟେନ ଡି: ବାର୍ଡିଙ୍କର ଅଧୀନରେ ଆହୁରି ଅନେକ ସୈନ୍ୟ ପଠାଇ ଦେଲେ । ତତ୍‌ପରେ ମେଜର ଫୁଇଣ୍ଡାମ ୫ମ ମେଡ୍ରାସ ଇନ୍ ଫେନଟ୍ରି ସୈନ୍ୟ ଓ କେପ୍‌ଟେନ୍ ଉଇଲ୍ ଉଅନ ମେଡ୍ରାସ ଆର୍ଟିଲେରି ସୈନ୍ୟ ଓ କେପ୍‌ଟେନ ଉଡ୍ ନାଗପୁରରୁ ନାଗପୁର ଇର୍‌ରେଗୁଲର୍ ହର୍ସ ସୈନ୍ୟ ଧରି ସମ୍ବଲପୁରକୁ ଧସାଇ ପଡ଼ିଲେ । ଏ ସଙ୍ଗେ ୨ ସ୍ମମ ଗଡ ବଟେଲିଅନର ୫୦ ଜଣ ସୈନ୍ୟ ମିଶିଲେ । ସମସ୍ତେ ଏକତ୍ର ହୋଇ ଝାଁର ଘାଟି ଆକ୍ରମଣ କଲେ । ଉଭୟ ପକ୍ଷର ଘୋର ଯୁଦ୍ଧ ହେଲା । ଉଭୟ ପକ୍ଷରୁ ଅନେକ ଲୋକ ମଲେ । ସୁରେନ୍ଦ୍ର ସାଏଙ୍କ ଭାଇ ଛବିଲ ସାଏ ମାରି ପଡିଲେ । କେପ୍‌ଟେନ ଉଡ୍ ସାହେବଙ୍କ ହାତରେ ଗୋଟିଏ ସୁତୀକ୍ଷ୍ଣ ଶର ବିଦ୍ଧ ହେବାରୁ ସାହେବ ମହୋଦୟ ଅଧିକ କଷ୍ଟ

ପାଇଲେ । ସୁରେନ୍ଦ୍ର ସାଏ ଦୁର୍ଗ ରକ୍ଷାଭାର ଉଦନ୍ତ ସାଏ ହସ୍ତରେ ଦେଇ ସେଠାରୁ ମଧ୍ୟ ଲୁଚି ପଳାଇ ଗଲେ । ମେଜର ବେଟ୍ସ ଅନେକ ସୈନ୍ୟ ସାହାଯ୍ୟରେ ଦୁର୍ଗର ଭାଙ୍ଗୁକି ଅସ୍ତ୍ର ଶସ୍ତ୍ର ଗୋଲା ବାରୁଦ ଖାଦ୍ୟ ସାମଗ୍ରୀ ପତ୍ର କଲେ । ଓ କୁଲବୁଗ ଗ୍ରାମକୁ ନଷ୍ଟ କରଦେଲେ । ଗୌନ୍ତ୍ୟାକୁ ଧରି ଅଣି ରାଜ ବଦ୍ରୋହି ଅପରାଧୀ ବୋଲି ଫାସି-ଦେଲେ । ବିଦ୍ରୋହିଦଳଙ୍କୁ ଧରି ହେଲା ନାହିଁ । ସେମାନେ ଏଣେତେଣେ ଲୁଚି ପଳାଇ ଯାଇ ସିଂଘର ଘାଟିରେ ଅଶ୍ରୟ ନେଇ ବିଦ୍ରୋହ କଲେ । କେପଟେନ୍ ସେକ୍ସ ପିଅର ଦଳେ ସୈନ୍ୟ ନେଇ ବଳପୂର୍ବକ ଧସାଇ ପଶିଲେ । ସେ ସଙ୍ଗେ୨ କେପ୍ଟେନ୍ ଉଡ ବ୍ରିଜ ମଧ୍ୟ କେତେ ସୈନ୍ୟ ନେଇ ଧସାଇ ପଶିଲେ । କିନ୍ତୁ ବିଦ୍ରୋହିମାନଙ୍କ ଗୋଲାରେ ସେ ମୃତ ହେବାରୁ ସୈନ୍ୟ ମାନେ ଭୟ ବିହ୍ୱଳ ହୋଇ ପଳାୟନ କଲେ । ରାମଗଡ ବେଟେଲି ଅନର ଦୁଇ ଜଣ ସିପାହୀ ଶବ ଉଦ୍ଧାର କଲା ସମୟରେ ଅଘାତ ପ୍ରାପ୍ତ ହେବାରୁ ପଳାଇ ଅସିଲେ । ଦୁଇ ଦିନ ପରେ ମିଃ ଏନ୍ ସାଇନ୍ ସ୍କୁଲେ ବିଶାଳ ସୈନ୍ୟ ନେଇ ସେହି ସ୍ଥାନକୁ ଅକ୍ରମଣକାରୀ ବିଦ୍ରୋହିମାନଙ୍କୁ ଦୂରକୁ ତଡି ଦେଇ ମିଃ ଉଡ୍‌ବ୍ରିଜଙ୍କ ଶବ ଉଦ୍ଧାର କଲେ । ଅନନ୍ତର ସେ ସୈନ୍ୟମାନଙ୍କୁ ତିନି ଦଳକରି ତିନି ଦିଗରୁ ପାହାଡ଼ ଅକ୍ରମଣ କରି ଅନେକ ବିଦ୍ରୋହିମାନଙ୍କୁ ମାରି ଦେଲେ ଓ ଅନେକଙ୍କୁ ବନ୍ଦ କଲେ । ବନ୍ଦମାନଙ୍କ ମଧ୍ୟରେ ଅନେକ ଜମିଦାର ଥିଲେ । ସେମାନଙ୍କ ଇଲାକାମାନ ଯପ୍ତ କରାଗଲା । ସୁରେନ୍ଦ୍ର ସାଏ କେଉଁ ଅଡ଼େ ଲୁଚି ତାହାର ଗଲା ତହିଁର କିଛି ପତା ମିଳିଲା ନାହିଁ । ତାହାର ପିଷ୍ଟରେ

ଗୁରୁବର୍ଷ ପର୍ଯ୍ୟନ୍ତ ସୈନ୍ୟ ଇତସ୍ତତଃ ପଠାଇ ଖୋଜାଗଲା କିନ୍ତୁ କାହିଁ ତାହାର ସନ୍ଧାନ ମିଳିଲା ନାହିଁ । କାରଣ ସେ ରାଜ୍ୟର ଲୋକମାନଙ୍କ ମନରେ ଭୟ ଜାତ କରାଇଦେଇ ଥିଲା । ଅକସ୍ମାତ୍ ଯଦି କୌଣସି ବ୍ୟକ୍ତି ତାହାର ସମ୍ବନ୍ଧରେ ବ୍ରିଟିଶ ସରକାରଙ୍କଠାରେ କିଛି କହୁଥିଲା ତେବେ ତାହାର ଘର ଦ୍ୱାର ପୋଡ଼ାଇ ଏବଂ ୨ ସେହି ଗ୍ରାମସୁଦ୍ଧା ପୋଡ଼ାଇ ଦେଉଥିଲା । ଏହି ଭୟରେ ତାହା ସମ୍ବନ୍ଧରେ କେହି କିଛି କହି ପାରୁ ନଥିଲେ ।

ଏହା ଦେଖି ଇଂରେଜ ଗଭର୍ଣ୍ଣମେଣ୍ଟ ଘୋଷଣା କଲେ "ଯେଉଁ ବ୍ୟକ୍ତି ଏହାର ସନ୍ଧାନ ଦେବ ତାକୁ ବହୁତ ଟଙ୍କା ପୁରସ୍କାର ଦିଆଯିବ" । ତଥାପି କିଛି ହେଲାନାହିଁ । କିଛି-ଦିନ ପରେ ମେଜର ଇମ୍ପେ ସାହେବ ଓଡ଼ିଶା କମିଶନରଙ୍କର ଅଧୀନରେ ୧୮୬୧ ଖ୍ରୀ:ଅ:ରୁ ସମ୍ବଲପୁର ରହିଲା । ସେ ସୁରେନ୍ଦ୍ର ସାଏ ତାହାର ପୁତ୍ର ମିତ୍ର ଭାନୁସାଏ ଓ ଭାଇ ଉଦନ୍ତସାଏ ଛଡ଼ା ଅବଶିଷ୍ଟ ନେତାମାନଙ୍କୁ ଧରି କ୍ଷମା ଦେଇଥିଲେ । ଏହାର ଫଳରେ ବିଦ୍ରୋହୀମାନେ ସୁରେନ୍ଦ୍ରସାଏର ପକ୍ଷ ପରିତ୍ୟାଗ କରି ଇଂରେଜ ପକ୍ଷ ଗ୍ରହଣ କରିଥିଲେ । ସୁରେନ୍ଦ୍ରସାଏର କେତେକଣ ଅତି ବିଶ୍ୱାସୀ ଜମିଦାର—ଯଥା—ଘୋଷ ଜମି-ଦାରୀର ହାତୀସିଂହ ଓ ତାଙ୍କର ଭାଇ କୁଞ୍ଜଲସିଂହ, ଲକ୍ଷଣ ପୁରର ଜମିଦାର ବଳଭଦ୍ର ଦାଉ କମଳସିଂହ ଦାଉ ଓ ଖଗେଶ୍ୱର ଦାଉ ଆଦି କେତେକ କହିଲେ ଯେ ସୁରେନ୍ଦ୍ରସାଏଙ୍କୁ ସମ୍ବଲପୁରରେ ରାଜା ନକଲେ ଆମ୍ଭେମାନେ ଅଧୀନତା ସ୍ୱୀକାର କରିବୁ ନାହିଁ । ଏହା ଶୁଣି ଚିଫ କମିଶନର ସାହେବ କହିଲେ ସେ ଯଦି ଧରାଦିଏ ତେବେ ତାକୁ ରାଜାରୂପରେ ଗ୍ରହଣ କରା-ଯିବ ଓ ତାହାର ସମସ୍ତ ଦୋଷ ମାଫ କରାଯିବ । ଅନନ୍ତର

ସୁରେନ୍ଦ୍ର ସାଏ ୧୮୬୨ ଖ୍ରୀ:ଅ:ରେ ଅସ୍ତ୍ର ସମର୍ପଣ କଲେ । ଏହି ହେତୁରୁ କମଳ ସିଂହଙ୍କର ଦଳକୁ ଟ ୫୦୦୯ ପୁରସ୍କାର ଦିଆଗଲା । ଅନ୍ୟର ମଧ୍ୟ ଯେଉଁମାନେ ଏହି ସୁରେନ୍ଦ୍ର ସାଏର ଅସ୍ତ୍ର ସମର୍ପଣରେ ଯୋଗ ଦେଇଥିଲେ ସେମାନଙ୍କୁ ଗ୍ରାମମାନ ମଧ୍ୟ ପୁରସ୍କାର ଦିଆଗଲା । ରାଜ୍ୟ କେତେଦିନ ପାଇଁ ଶାନ୍ତିରେ ରହିଲା ।

ସନ ୧୮୬୩ ଖ୍ରୀ:ଅ:ରେ ରାଜ୍ୟ ଶାସନ ସମ୍ପର୍କୀୟ ଏକ ନୂତନ ଭାବ ଉଠିଲା । ଅଳ୍ପଦିନ ହେଲା ସମ୍ବଲପୁର କଟକ ବିଭାଗରୁ ଅନ୍ତର କରାଯାଇ ମଧ୍ୟ ପ୍ରଦେଶ ବିଭାଗରେ ଲଗା-ଗଲା । ମି, ଧାର, ଥର, ଟେମ୍ପଲ୍ ଚିଫ କମିସନର ମଧ୍ୟ ପ୍ରଦେଶରୁ ଆସି ସମ୍ବଲପୁରରେ ରହିଲେ । ତେଣୁ ସମ୍ବଲପୁର ଜିଲ୍ଲାର ଭୂମ୍ୟଧିକାରୀ ବ୍ରାହ୍ମଣମାନେ ଓ ପ୍ରଧାନ ୨ ଲୋକମାନେ ଗୋଟିଏ ଅଭିଯୋଗ ଦରଖାସ୍ତ ଚିଫ୍‌କମିସନରଙ୍କଠାରେ ଅର୍ପଣ କଲେ, ତହିଁରେ ଏହା ଲେଖା ହୋଇଥିଲା ଯେ ଷ୍ଟାମ୍ପ ଟେକ୍ସ ନିୟମ ଜାରି ହୋଇଥିବାରୁ ସେମାନେ ବହୁତ କଷ୍ଟ ପାଉ-ଅଛନ୍ତି । ଅଧିକ ମଧ୍ୟ ସୁରେନ୍ଦ୍ର ସାଏଙ୍କୁ ରାଜା ନ କରିବାରୁ କେତେ ଜମିଦାର ଡୁଙ୍ଗୁରମାନଙ୍କରେ ରହି ପୂର୍ବପରି ଲୁଣ୍ଠନ କରି ଅଶାନ୍ତି କରୁଅଛନ୍ତି । ଯଦି ସୁରେନ୍ଦ୍ର ସାଏଙ୍କୁ ରାଜା କରାଯାଏ ତେବେ ସେମାନେ ଏପରି ଅଶାନ୍ତି ଜାତ କରିବେ ନାହିଁ ବା ଏପରି ଲୁଟପାଟ କରିବେ ନାହିଁ । ତାଙ୍କୁ ରାଜା କରି ଇଂରେଜ ଗଭର୍ଣ୍ଣମେଣ୍ଟ ଅଧିକ ମାଲଗୁଜାରି ବଢ଼ାଇଲେ ମଧ୍ୟ ଲୋକମାନେ ଦେବାକୁ କୁଣ୍ଠିତ ହେବେ ନାହିଁ । ଏହି ଦର-ଖାସ୍ତର ମୂଲ୍ୟ କିଛି ହେଲା ନାହିଁ । ତେଣୁ କରି ଲୋକମାନେ ଅଧିନାୟକମାନଙ୍କର ଅଧୀନରେ ରହି ପ୍ରକାଶ କଲେ ଯେ ସୁରେନ୍ଦ୍ରସାଏଙ୍କୁ ରାଜା ନ କରିବା ପର୍ଯ୍ୟନ୍ତ ସେମାନେ କୌଣସି

ମନେତ ଶାନ୍ତରେ ରହି ପାରିବେନାହିଁ । ଏପରି କହି ପୂର୍ବପରି ଲୁଟପାଟ, ଘରପୋଡ଼ି, ମଣିଷମାରିବା ଆଦି କାର୍ଯ୍ୟ କରିବାକୁ ଲାଗିଲେ । ୬।୭ ଦିନ ମଧ୍ୟରେ ୧୫।୨୦ ଖଣ୍ଡ ଗ୍ରାମ ପୋଡ଼ାଇ ଦିଆଗଲା ସ୍ଥାନେ ୨ ଡ଼କାୟତି ଆରମ୍ଭ ହେଲା । ଦୁର୍ଭିକ୍ଷରେ ସମ୍ବଲପୁର ଜିଲ୍ଲା ହାହା କରିବାକୁ ଲାଗିଲା । ବିଦ୍ରୋହୀ ଦଳ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କୁ ଲେଖି ପଠାଇଲେ "ସୁରେନ୍ଦ୍ର ସାଏ ୧୮୬୨ ଖ୍ରୀ:ଅ:ରେ ଯେଉଁ ଅସ୍ତ୍ର ସମର୍ପଣ କରିଥିଲେ ତାହା ବୃଥା ଅଟେ । ସେ ସମ୍ବଲପୁର ରାଜ୍ୟ ପ୍ରାପ୍ତିର ଆକାଂକ୍ଷାରୁ ଏକ ମୁହୂର୍ତ୍ତ ସୁଦ୍ଧା ବର୍ଜିତ ନୁହନ୍ତି ।"ତାହାଙ୍କର ଇଚ୍ଛା କୌଣସି ମତେ ପୂର୍ଣ୍ଣ ନହେଲେ ରାଜ୍ୟ କଦାପି ସ୍ଥିର ହେବନାହିଁ"। ଏହି ସମୟରେ ସନ ୧୮୬୩ ଖ୍ରୀ:ଅ:ରେ ମେଜର ଇମ୍ପେସାହେବ ସମ୍ବଲପୁରରେ ପରଲୋକ ଗମନକଲେ । ଏହା ଦେଖି ଗଭର୍ଣ୍ଣମେଣ୍ଟ କେତେଜଣ ଡ଼େପୁଟି କମିସନର ଓ ଇଉରୋପିଅନ ଅଫିସରଙ୍କୁ ସମ୍ବଲପୁର ପଠାଇଲେ । ସେମାନେ ସୁରେନ୍ଦ୍ରସାଏ ଓ ତାହାର କେତେଜଣ ଅନୁକୂଳୀ ଲୋକଙ୍କୁ ଧରିଆଣି ବିପଦଜନକ ରାଜକୀୟ ଅପରାଧ ବୋଲି ଗଣ୍ୟକରି କଏଦକଲେ । ତାପରେ ଡ଼କାୟତି ବନ୍ଦହେଲା । ଓ ରାଜ୍ୟରେ ପୁନର୍ବାର ଶାନ୍ତି ବିରାଜିତ ହେଲା । ଜେଲରେ ଉମୈଲର ଲୋକନାଥ ପଣ୍ଡା ଓ ଅର୍ଜୀର ମୃତ୍ୟୁଞ୍ଜୟ ପାଣିଗ୍ରାହୀ ମୃତ ହେଲେ । ପଦମନ ଗୁରୁ ଅପିଲରେ ମୁକ୍ତପାଇ ସମ୍ବଲପୁରକୁ ଆସିଲେ । ଜେଲଖାନାରେ କିଛିଦିନ ରହିଲା ଉତ୍ତାରୁ ସୁରେନ୍ଦ୍ର ସାଏ ଓ ଉଦନ୍ତ ସାଏଙ୍କୁ ରାଇପୁରରେ ରହିବା ସର୍ତ୍ତରେ ଜେଲରୁ ମୁକ୍ତ-କରି ଦିଆଗଲା । ରାଇପୁରରେ ଉଦନ୍ତ ସାଏର ମୃତ୍ୟୁହେଲା । ସୁରେନ୍ଦ୍ର ସାଏ ଅନ୍ଧହେଲେ । ସୁରେନ୍ଦ୍ର ସାଏର ପୁଅ ମିତ୍ର ଭାନୁସାଏଙ୍କୁ ସଦା ଚରଣରେ ରହିବାକୁ ତାହାର ଶ୍ୱଶୁର ବଣାଇ

ରାଜାଙ୍କ ଜୀବନକାଳରେ ଜେଲରୁ ମୁକ୍ତ କରି ଦିଆଗଲା । ତିନି-ଜଣ ସାଏ ଫେରିଯାଇ ଖିଣ୍ଡାରେ ରହି ପାରିବାକୁ ଇଣ୍ଡିଆ ଗଭର୍ଣ୍ଣମେଣ୍ଟ ଆଦେଶ ପ୍ରଦାନ କଲେ ।



## ଶାସନ ସମ୍ପର୍କୀୟ ପରିବର୍ତ୍ତନ ।

ସମ୍ବଲପୁର ଜିଲ୍ଲା ରାଜ୍ୟ ଶାସନ ସମ୍ପର୍କରେ ଯେତେ ଥର ବଦଳି ଅଛି ଅନ୍ୟ ଅଳ୍ପ ଜିଲ୍ଲା ସେତେ ଥର ବଦଳି ଥିବ । ସନ ୧୮୧୭ ଖ୍ରୀ: ଅ: ରେ ମରହଟ୍ଟାମାନେ ଏହି ଜିଲ୍ଲାକୁ ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କୁ ସମର୍ପଣ କଲେ । ସେ ସମୟରେ ଏହି ରାଜ୍ୟ ସମ୍ବଲପୁର ରାଜାଙ୍କ ପ୍ରତ୍ୟକ୍ଷ ଶାସନାଧୀନରେ ଥିଲା । ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ ହାତରେ କେବଳ ସାମାନ୍ୟ ଅଧିକାର ଥିଲା । ଏବେ ତହିଁପରେ ଶେଷ ରାଜାଙ୍କର ରାଜପଦ ପ୍ରାପ୍ତ ହେବାରୁ ଅର୍ଥାତ୍ ୧୮୩୩ ଖ୍ରୀଷ୍ଟାବ୍ଦରେ ଏହି ଷ୍ଟେଟ ଗଭର୍ଣ୍ଣର ଜେନେରେଲଙ୍କ ଦକ୍ଷିଣ ପଶ୍ଚିମ ଦିଗସ୍ଥ ଇଲାକା ମାନଙ୍କର ଏଜେଣ୍ଟଙ୍କ ଅଧୀନରେ ରଖା ଗଲା । କୋହ୍ଲମାନେ ୧୮୩୧ ଓ ୧୮୩୨ ଖ୍ରୀ: ଅ: ରେ ବିଦ୍ରୋହ କରିବାରୁ ସେମାନଙ୍କୁ ଦମନ କରିବା ନିମନ୍ତେ ଏହି ଏଜେନ୍ସି ୧୮୩୩ ଖ୍ରୀ: ଅ: ର ୧୩ ଆଇନ ଅନୁସାରେ ସ୍ଥାପନ କରା ଯାଇ ଥିଲା । ପ୍ରଥମରେ ଏହି ଏଜେନ୍ସି ଷ୍ଟେଟ ନାଗପୁର କମିଶନର ଅଧିକାର ଭୁକ୍ତ ଥିଲା । କିନ୍ତୁ ତହିଁର ପରେ ସମ୍ବଲପୁର ଜିଲ୍ଲା ଓ ତହିଁର ନିକଟସ୍ଥ ଅନ୍ୟାନ୍ୟ ଗଡ଼ଜାତ ଷ୍ଟେଟମାନ ଏହି ଏଜେନ୍ସିରେ ମିଶି ଗଲା । ସନ ୧୮୪୯ ଖ୍ରୀ: ଅ: ରେ ସମ୍ବଲପୁର ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ ପ୍ରତ୍ୟକ୍ଷ ଶାସନାଧୀନରେ ରହିଲା । ଏବଂ ଦକ୍ଷିଣ ପଶ୍ଚିମ ବିଭାଗର ଏଜେଣ୍ଟଙ୍କର ପ୍ରିନ୍‌ସିପାଲ ଅସିଷ୍ଟାଣ୍ଟଙ୍କ ଦ୍ୱାରା ଶାସିତ ହେଲା । ଏହି ପ୍ରିନ୍‌ସିପାଲ

ଏସିଷ୍ଟେଣ୍ଟଙ୍କ ହେଡ୍‌କ୍ୱାର୍ଟର ସ୍ଥାନ ହେଲା । ଏହି ବନ୍ଦୋବସ୍ତ ୧୮୬୦ ଖ୍ରୀ: ଅ: ପର୍ଯ୍ୟନ୍ତ ରହିଲା । କେବଳ ଅଫିସରଙ୍କର ଉପାଧି ପରିବର୍ତ୍ତନ କରି ଯାଇ ନାଗପୁର କମିସନର ବୋଲି ରଖା ହେଲା । ଏବଂ ତାଙ୍କର ଏସିଷ୍ଟେଣ୍ଟଙ୍କର ଉପାଧି ଡିପୁଟି ଅର ଏସିଷ୍ଟେଣ୍ଟ କମିସନର ହେଲା । ସନ ୧୮୬୦ ଖ୍ରୀ: ଅ: ରେ ବେଙ୍ଗଲ ଓ ଓଡିଶା ଡିଭିଜନ ସଙ୍ଗେ ସମ୍ବଲପୁରକୁ ମିଶାଗଲା । ଏବଂ ସନ ୧୮୬୨ ଖ୍ରୀ: ଅ: ର ୩୦ ଏପ୍ରିଲ୍‌ରେ ଏକ ନୋଟିଫିକେସନ୍ ଦ୍ୱାରା ଏହା ଓଡିଶାରୁ ମଧ୍ୟପ୍ରଦେଶକୁ ପରିବର୍ତ୍ତନ କରାଗଲା । ୧୯୦୫ ଖ୍ରୀ: ଅ: ଅକ୍ଟୋବର ମାସରେ ମଧ୍ୟପ୍ରଦେଶରୁ ପୁଣି ବେଙ୍ଗଲକୁ ପରି-ବର୍ତ୍ତନ କରା ଗଲା । ଗତ କେତେ ବର୍ଷ ପର୍ଯ୍ୟନ୍ତ ଏହାର ଓ ଅନାନ୍ୟ ଜିଲ୍ଲାମାନଙ୍କ ମଧ୍ୟରେ ଜାତୀୟ ଭାଷାର ପାର୍ଥକ୍ୟ ହେତୁରୁ ଶାସନ ସମ୍ପର୍କରେ ବିଶେଷ ଅସୁବିଧା ଅନୁଭବ କରିବାକୁ ହେଉଥିଲା । ତେଣୁ ଚିଫ୍ କମିସନର ୧୮୯୧ ଖ୍ରୀ: ଅ: ରେ ମଧ୍ୟପ୍ରଦେଶରୁ ଏହି ଜିଲ୍ଲାକୁ ସମ୍ପୂର୍ଣ୍ଣ ପୃଥକ ରଖିବାକୁ ରିପୋର୍ଟ କରି ଥିଲେ ।

ଇଣ୍ଡିଆ ଗଭର୍ଣ୍ଣମେଣ୍ଟ ସେ ସମୟରେ ତାଙ୍କର ଅନୁରୋଧ ରକ୍ଷା କରି ନ ପାରିଲେହେଁ ୧୮୯୫ ଖ୍ରୀ: ଅ: ପର୍ଯ୍ୟନ୍ତ ଏହା ବନ୍ଦ ରଖିବାକୁ ବାଧ୍ୟ ହେଲେ । କାରଣ ତାହା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । ସମ୍ବଲପୁର ଅଦାଲତରେ ଓଡିଆ ଭାଷା ରଖିବାକୁ ମଧ୍ୟ ବାଧ୍ୟ ହେଲେ । ବେଙ୍ଗଲର ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର ସାର ଏଣ୍ଡ୍ରୁ ଫ୍ରେଜର କେ: ସି: ଏସ୍: ଅଇ ୧୯୦୫ ଖ୍ରୀ: ଅ: ରେ ସମ୍ବଲପୁରକୁ ପରିଦର୍ଶନ କରିବା ନିମନ୍ତେ ଅସି ଇଣ୍ଡିଆ ଗଭର୍ଣ୍ଣମେଣ୍ଟଙ୍କୁ ରିପୋର୍ଟ କଲେ । ସେହି ରିପୋର୍ଟରେ ସେ ଏହା ଉଲ୍ଲେଖ କରିଥିଲେ ଯେ ମଧ୍ୟପ୍ରଦେଶର ଅନ୍ୟାନ୍ୟ ଓଡିଆ ଭାଷା କୌଣସି ଅଂଶରେ

କଥିତ ହୁଏନାହିଁ କିମ୍ବା ଏହି ଭାଷା କେହି ଜାଣନ୍ତି ନାହିଁ । ଏହି ହେତୁରୁ ଏଠାକୁ ଯେଉଁ ଅଫିସର ଆସନ୍ତି ତାଙ୍କୁ ପ୍ରଥମରେ ଏହି ଭାଷା ଶିକ୍ଷା କରିବାକୁ ପଡ଼ୁଅଛି । ଅଧିକନ୍ତୁ ମଧ୍ୟ ଏହି ଦେଶର ପଲ୍ଲି ଗ୍ରାମବାସୀ ଲୋକମାନେ କିମ୍ବା ଗଡ଼ଜାତ ବାସି ମାନେ ଭଲ ଭାବରେ କେହି ହିନ୍ଦି ଭାଷା କହି ପାରନ୍ତି ନାହିଁ କିମ୍ବା ବୁଝି ପାରନ୍ତି ନାହିଁ । ଏଣୁ ଅଦାଲତର ଅଫିସରମାନଙ୍କ ପକ୍ଷରେ ବିଶେଷ ଅସୁବିଧା ହେଉଅଛି । ଏଣୁ ଏଠାକର ପ୍ରଚଳିତ ଭାଷା ଅନୁସାରେ ଅଦାଲତରେ ମଧ୍ୟ ହିନ୍ଦି ଭାଷା ଚଳା ନ ଯାଇ ଓଡ଼ିଆ ଭାଷା ଚଳା ଯିବା ଉଚିତ ଓ ଏଠାକର କ୍ଲାର୍କ ଶ୍ରେଣୀର ଲୋକମାନଙ୍କୁ ମଧ୍ୟ ଅନ୍ୟ ସ୍ଥାନକୁ ପରିବର୍ତ୍ତନ କରି ହୁଏ ନାହିଁ । ଯଦି ସେପରି କରି ନ ଯାଏ ଅଦାଲତ ଚଳାଇବା ଦୁଷ୍କର । ଇଣ୍ଡିଆ ଗଭର୍ଣ୍ଣମେଣ୍ଟ ଏହି ରିପୋର୍ଟ ଅନୁଯାୟୀ ଅଦାଲତରେ ଓଡ଼ିଆ ଭାଷା ଚଳାଇବାକୁ ମଂଜୁର କଲେ । ସେହିଦିନଠାରୁ ଅଦାଲତରେ ଓଡ଼ିଆ ଭାଷା ଚଳି ଆସୁଅଛି ।

ମଧ୍ୟପ୍ରଦେଶରୁ ସମ୍ବଲପୁର ଜିଲ୍ଲାକୁ ଓଡ଼ିଶା ସଙ୍ଗେ ମିଶାଇ ଦେଇ ବେଙ୍ଗଲ ନିୟମ ଅନୁସାରେ ଆଇନ ଆଦି ଚଳାଗଲା । ସେ ସମୟରେ ପୂର୍ବ ଓ ପଶ୍ଚିମ ନାମରେ ବଙ୍ଗ ଦୁଇଭାଗରେ ବିଭକ୍ତ ହୋଇଗଲା । ପରିଶେଷରେ ଭାରତ ସମ୍ରାଟ ପଞ୍ଚମ ଜର୍ଜ୍ଜ ସନ ୧୯୧୨ ଖ୍ରୀ: ଅ: ରେ ଦିଲ୍ଲୀ ରାଜସିଂହାସନରେ ଅଭିଷିକ୍ତ ହୋଇ ପୂର୍ବ ଓ ପଶ୍ଚିମ ବଙ୍ଗକୁ ଏକତ୍ର କରି ଗୋଟିଏ ପ୍ରଭିନ୍ସ ଓ ବିହାର ଓଡ଼ିଶାକୁ ଏକତ୍ର କରି ଗୋଟିଏ ପ୍ରଭିନ୍ସ କଲେ । ଏହି ପରବର୍ତ୍ତୀ ପ୍ରଭିନ୍ସରେ ସମ୍ବଲପୁର ଓ ଗଡ଼ଜାତମାନ ମିଶି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହୋଇଅଛି ଓ ସ୍ୱତନ୍ତ୍ର ଗଭର୍ଣ୍ଣରଙ୍କ ଦ୍ୱାରା ଶାସିତ ହେଉଅଛି ।

ସମ୍ପୂର୍ଣ୍ଣ ।

# ଶୁଦ୍ଧିପତ୍ର ।

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|
| ଶିଷତ | ଶିକ୍ଷିତ | ·৵ | ୧୮ |
| ଗଡ୍ୟାଥିବାରୁ | ଗଢ୍ୟଥିବାରୁ | ।৵ | ୪ |
| ମଟକ୍ର | ମାଟକ୍ର | ।৵ | ୧୨ |
| ବଭଲ କାଳନ | ବଭଲକାଳୋନ | ୳/ | ୧୩ |
| ନଗର ବାସୀଙ୍କ | ନଗରବାସିଙ୍କ | ୳/ | ୧୪ |
| ନଗ | ନୂଗ | ୫ | ୧୨ |
| କୋମଳ | କୋଶଳ | ୫ | ୨୪ |
| କେହ୍ଵାର | କେହ୍ବାର | ୧୭ | ୧୬ |
| ରଜ | ରଜା | ୧୯ | ୬ |
| ବଦୌହ | ବଦ୍ରୋହ | ୧୯ | ୬ |
| ଖ୍ରୀଃ ପୂଃ ର | ଖ୍ରୀଃ ପୂଃ ଅଃ ର | ୨୦ | ୬ |
| ବ୍ୟବସାୟୀର | ବ୍ୟବସାୟିର | ୨୦ | ୨୧ |
| ଭୁସ୍ଂପଡ଼ା | ଭୁସ୍ଂପଢ଼ା | ୨୮ | ୧୩ |
| ରଜାଙ୍କ | ରଜାଙ୍କୁ | ୩୦ | ୫ |
| Ruind | Ruined | ୩୦ | ୧୩ |
| ଗଡ଼ବାସୀମାନଙ୍କ | ଗଡ଼ବାସିମାନଙ୍କ | ୩୦ | ୧୭ |
| ଖ୍ରୀଃ ପୂଃ ଅଃ ର | ଖ୍ରୀଃ ପୂଃ ଅଃ ରୁ | ୩୨ | ୧୫ |
| କେଶଳ | କୋଶଳ | ୩୨ | ୧୭ |
| ବ୍ରାହ୍ମନୀ | ବ୍ରାହ୍ମଣୀ | ୩୨ | ୨୦ |
| ନୂତତ | ନୂତନ | ୩୫ | ୨୨ |
| ଶାମନ | ଶାସନ | ୪୧ | ୧୦ |

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|
| ଦ୍ୱାସ | ଦ୍ୱାସ | ୪୬ | ୧୨ |
| ଶିବଗୁପ୍ର | ଶିବଗୁପ୍ତ | ୫୬ | ୧୧ |
| ପ୍ରସ୍ତୁ | ପ୍ରାସ୍ତୁ | ୫୬ | ୨୦ |
| ଉପଧି | ଉପାଧି | ୫୮ | ୩ |
| ବଲଙ୍ଗିର | ବଲଙ୍ଗିର | ୫୮ | ୧୧ |
| ବଳଜଡ଼ | ଜଳଜଡ଼ | ୬୦ | ୨୧ |
| ବ୍ରାହ୍ମଙ୍କ | ବ୍ରାହ୍ମଣଙ୍କୁ | ୬୦ | ୨୨ |
| ମୁରବାହାର | ମୁରବାହାଲ | ୬୧ | ୫ |
| ମଣ୍ଡଳ | (ମଣ୍ଡଳ) | ୬୧ | ୧୧ |
| ୮୧୩ ର | ୮୩୩ରୁ | ୬୪ | ୨୩ |
| ଅଣ | ଆଣି | ୭୪ | ୧୦ |
| ଗୌନ୍ୟ | ଗୌନ୍ୟା | ୭୪ | ୧୧ |
| ଘାଇବର | ଘାଇବାରୁ | ୮୪ | ୩୧ |
| (ପ୍ରଥମ) ସାମନ୍ତ | Omit. | ୮୭ | ୧୧ |
| ବଦଳ | ବଢଳ | ୮୮ | ୮ |
| ରମାଇର | ରମାଇ | ୯୨ | ୧ |
| ଦ୍ୱାର | ଦ୍ୱାର | ୧୦୨ | ୩ |
| ଭ୍ରମ | ଭ୍ରମଣ | ୧୧୫ | ୧୧ |
| ମୃତ୍ୟୁ | ମୃତ | ୧୩୧ | ୧୪ |
| ସତତ୍ୱପକାର | ସତତ୍ୱପକାଶ | ୧୩୧ | ୪ |
| ସଣ୍ଡା | ରଣ୍ଡା | ୧୪୦ | ୭ |

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ଧାଡ଼ି |
|---|---|---|---|
| ମୃଘୁ | ମୃତ | ୧୪୩ | ୧୦ |
| ହବାନ୍ଧଘରେ | ହବାନ୍ଧଦରେ | ୧୪୮ | ୧୪ |
| ସିଂହଙ୍କୁ | ସିଂହଦେବଙ୍କୁ | ୧୫୩ | ୧୨ |
| ବସ୍ତ୍ରବ୍ରଜ ସିଂହ | ବସ୍ତ୍ରବ୍ରଜ ସିଂହ ଦେବ | ୧୫୩ | ୨୫ |
| ରଘୁବ୍ରଜ ସିଂହ | ରଘୁବ୍ରଜ ସିଂହ ଦେବ | ୧୫୪ | ୧ |
| କାଳନ୍ଦ୍ର ସିଂହ | କାଳାନ୍ଦ୍ର ସିଂହ ଦେବ | ୧୫୪ | ୧ |
| ମହୀନ୍ଦ୍ର ସିଂହ | ମହୀନ୍ଦ୍ର ସିଂହ ଦେବ | ୧୫୪ | ୧ |
| ଖାଡରେନ୍ଦ୍ର ସିଂହ | ଖାଡରେନ୍ଦ୍ର ସିଂହ ଦେବ | ୧୫୪ | ୨ |
| ଦଳଗଞ୍ଜନ ସିଂହ | ଦଳଗଞ୍ଜନ ସିଂହ ଦେବ | ୧୫୪ | ୨ |
| ଏସିଷ୍ଟେଣ୍ଟ ପୋଲିସ ଇନ୍ସପେକ୍ଟର | ଏଡସିନେଲ୍ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ | ୧୫୭ | ୬ |
| ୧୨-୨-୧୯୨୪ | ୧୬-୧-୧୯୨୪ | ୧୫୮ | ୧୪ |
| ତନ୍ଦୁଜାଳନ | ତାନ୍ଦୁଜାଳନ | ୧୫୯ | ୨ |
| ଶଜ୍ୟା | ଶଯ୍ୟା | ୧୬୫ | ୨୦ |
| ବଡରାଧି | ବଡରାଧୀ | ୧୬୭ | ୧୬ |
| Sanitorinum | Sanitarium | ୧୭୨ | ୨୫ |
| ପାଟରାଟମେଣ୍ଟ | ପାଟ୍ରେମେଣ୍ଟ | ୧୭୮ | ୧୨ |
| ପୁରବାସୀମାନେ | ପୁରବାସିମାନେ | ୧୮୧ | ୨୫ |
| ତାଙ୍କ ପୁତ୍ର ଷ୍ଟୁର ସହିତ ଅଜିତ ସିଂହଙ୍କୁ | ତାଙ୍କ ପୁତ୍ର ଅଜିତ ସିଂହଙ୍କୁ ଷ୍ଟୁରସହିତ | ୧୮୫ | ୧୬ |
| ସାକ୍ଷୀ ଗୋପିନାଥ | ସାକ୍ଷୀ ଗୋପୀନାଥ | ୧୮୯ | ୮ |

